ଏମ୍. ଇଲିନ୍
ୱାଇ. ସେଗାଲ୍

# ମଣିଷ କିପରି ମହାବଳୀ ହେଲା



•ରାଦୁଗା• ପ୍ରକାଶନ. ମସ୍କୋ

ଭୂତତ୍ତ୍ୱର ତୃତୀୟ ସ୍ତରୀୟ ଯୁଗ

ଭୂତତ୍ତ୍ୱର ଚତୁର୍ଥ ସ୍ତରୀୟ
ପରବର୍ତ୍ତୀ କାଳ

ସାଂପ୍ରତିକ

ତୃତୀୟ ସ୍ତରର ମଧ୍ୟଭାଗ

ପ୍ଲିଓସ୍ଟୋସିନ୍

ପ୍ରାୟ ୩୫୦ ୦୦ ୦୦୦ ବର୍ଷ ପୂର୍ବେ

୨୫୦ ୦୦ ୦୦୦ ବର୍ଷ ପୂର୍ବେ

୧୫୦ ୦୦ ୦୦୦ ବର୍ଷ ପୂର୍ବେ

୫୦ ୦୦ ୦୦୦ ବର୍ଷ ପୂର୍ବେ



ପ୍ରିଓପିଥେକସ୍ | ପ୍ରୋକନ୍‌ସଲ | ଡ୍ରିଓପିଥେକସ୍ | ଓରିଓପିଥେକସ୍ | ରାମାପିଥେକସ୍ | ଅଷ୍ଟ୍ରାଲୋପିଥେକସ୍ ଆଫ୍ରିକାବାସୀ | ପ୍ରକାଣ୍ଡ ଅଷ୍ଟ୍ରାଲୋପିଥେକସ୍ | ଉନ୍ନତ ଅଷ୍ଟ୍ରାଲୋପିଥେକସ୍

ମିଖାଇଲ୍ ଇଲିନ୍ (୧୮୯୫ – ୧୯୫୩) ହେଉଛନ୍ତି ସୋଭିଏତ୍ ବୈଜ୍ଞାନିକ— ସୃଜନଶୀଳ ସାହିତ୍ୟର ଅନ୍ୟତମ ପ୍ରତିଷ୍ଠାତା । ୧୯୪୦ ମସିହାରେ ସେ ରଚନା କରିଥିଲେ "ମଣିଷ କିପରି ମହାବଳୀ ହେଲ" ପୁସ୍ତକଟି । ଏହି କାର୍ଯ୍ୟରେ ତାଙ୍କ ସହିତ ସହଯୋଗ କରିଥିଲେ ତାଙ୍କର ସହଧର୍ମିଣୀ ଏଲେନା ସେଗାଲ୍ । ସବୁଠି ଏହି ପୁସ୍ତକଟି ବିପୁଳ ସମାଦର ଲାଭ କରିଛି । ଏହି ସାଫଲ୍ୟ ପ୍ରମାଣ କରିଦେଇଛି ଯେ, ଜଟିଳ ବିଷୟବସ୍ତୁକୁ ସହଜ ଏବଂ ସୁବୋଧ୍ୟ ଭାବେ ଲେଖିବାରେ ଏହି ଲେଖକ ଏବଂ ଲେଖିକାଙ୍କର କେତେ ଅସାଧାରଣ କ୍ଷମତା ରହିଛି । ଇତି ମଧ୍ୟରେ ବୈଜ୍ଞାନିକ ଏବଂ ପ୍ରତ୍ନତତ୍ତ୍ୱବିତ୍‌ମାନେ ଅନେକ ଜିନିଷ ଆବିଷ୍କାର କରିଛନ୍ତି । ଏହି ଲେଖକ ଲେଖିକାଙ୍କ ଦ୍ୱାରା ପ୍ରସ୍ତାବିତ କେତେକ ଆନୁମାନିକ କଥା ମଧ୍ୟ ଆଉ ସଂଗତିଶୀଳ ମନେ ହୁଏ ନାହିଁ, କିନ୍ତୁ ତା'ସତ୍ତ୍ୱେ ଏହି ପୁସ୍ତକଟି ନିର୍ଭରଯୋଗ୍ୟ, ତଥ୍ୟମୂଳକ ଏବଂ ଜ୍ଞାନ ଦୃଷ୍ଟିରୁ ଆଗ୍ରହପ୍ରଦ ହୋଇ ରହିଯାଇଛି । ଏହା ମାନବ ଇତିହାସ ଏବଂ ସଂସ୍କୃତିର ଉଦ୍‌ଭବର ଏକ ସତ୍ୟନିଷ୍ଠ ଚିତ୍ର ପ୍ରଦାନ କରେ ।

ଏମ୍. ଇଲିନ୍ • ୱାଇ. ସେଗାଲ୍

# ମଣିଷ କିପରି ମହାବଳୀ ହେଲା

---



• ରାଦୁଗା • ପ୍ରକାଶନ
ମସ୍କୋ

ଅନୁବାଦ — ବୈଷ୍ଣବ ଚରଣ ପରିଡ଼ା

М. Ильин, Е. Сегал
КАК ЧЕЛОВЕК СТАЛ ВЕЛИКАНОМ
*на языке ория*

M. ILYIN, E. SEGAL
HOW MAN BECAME A GIANT
*in Oriya*



ସୋଭିଏତ୍ ୟୁନିଅନ୍‌ରେ ମୁଦ୍ରିତ

ସ୍କୁଲ ପିଲଙ୍କ ପାଇଁ

ISBN 5-05-000266-4

## ସୂଚୀପତ୍ର :

ଏହିସବୁ ବିଷୟବସ୍ତୁକୁ ନେଇ ଏକ ପୁସ୍ତକ ରଚନା କରିବାକୁ ମାକ୍‌ସିମ୍ ଗୋର୍କି ପ୍ରଥମେ ପରାମର୍ଶ ଦେଇଥିଲେ । ସେ କହିଥିଲେ : "ମୁଁ ନିଜେ ଲେଖିଲେ, କେମିତି ଆରମ୍ଭ କରିଥାନ୍ତି ଜାଣିଛ ? ଏ ସୀମାହୀନ ବିଶ୍ୱ ବ୍ରହ୍ମାଣ୍ଡ... ଅଗଣିତ ତାରକା, ନୀହାରିକା ମଣ୍ଡଳ କଥା ଚିନ୍ତାକର । ସେଇସବୁ ବିଶାଳ ନୀହାରିକା ମଧ୍ୟସ୍ଥ ଗୋଟିକରେ ସୂର୍ଯ୍ୟର ଆବିର୍ଭାବ ଘଟିଲା । ଗ୍ରହମାନେ ସୂର୍ଯ୍ୟଠାରୁ ବିଚ୍ଛିନ୍ନ ହୋଇଗଲେ । କୌଣସି ଏକ କ୍ଷୁଦ୍ର ଗ୍ରହରେ, ବସ୍ତୁରେ ଜୀବନ ଦେଖା ଦେଲା । ସେ ଜୀବନ ନିଜ ସଂପର୍କରେ ସଚେତନ ହୋଇ ଉଠିଲା । ତା'ପରେ ଦେଖା ଦେଲା ମଣିଷ..."

୧୯୩୬ ମସିହାରେ ଏହି ପୁସ୍ତକଟିର ଲେଖକ ଦ୍ୱୟ ସେମାନଙ୍କ ରଚନା କାର୍ଯ୍ୟ ଆରମ୍ଭ କରିଥିଲେ । ମଣିଷ କିପରି ସୃଷ୍ଟି ହେଲା, କେମିତି ସେ କାମ କରିବାକୁ ଏବଂ ଚିନ୍ତା କରିବାକୁ ଶିଖିଲା, କେମିତି ନିଆଁ ଜାଳିଲା, ଲୁହା କେମିତି ତରଳେଇଲା, ପ୍ରକୃତିକୁ କେମିତି ଜୟ କଲା, ଏ ଜଗତକୁ କେମିତି ବୁଝିଲା ଏବଂ ତାକୁ ନୂଆ କରି ତିଆରି କଲା... ଆଦି ବିଷୟ ଏହି ପୁସ୍ତକରେ ବର୍ଣ୍ଣିତ ହୋଇଛି ।

# ମହାବଳୀ ମଣିଷ ।

ଆମ ଏହି ପୃଥିବୀରେ ଦୈତ୍ୟ ଭଳି ଏକ ମହା ଶକ୍ତିଶାଳୀ ପ୍ରାଣୀ ଅଛି ।

ତା ହାତରେ ଏତେ ବଳ ଯେ, ସେ ଗୋଟେ ଗୋଟେ ରେଳଗାଡ଼ିକୁ ଉପରକୁ ଟେକି ଦେଇ ପାରେ ।

ତା ଗୋଡ଼ ଦୁଇଟା ଏମିତି ଯେ, ସେ ଦିନକରେ ହଜାର ହଜାର ମାଇଲ ଦୂରକୁ ଯାଇ ପାରେ ।

ତା ଡେଣାଗୁଡ଼ାକ ଏପରି ଯେ, ସେ ମେଘ ଉପରକୁ ଉଡ଼ି ଯାଇ ପାରେ, ଯେଉଁଠିକି କୌଣସି ଚଢ଼େଇ କେବେ ଉଡ଼ି ପାରି ନାହିଁ ।

ତା'ର ଡେଣାଗୁଡ଼ାକ ଯେକୌଣସି ମାଛର ଡେଣାଠାରୁ ଅନେକ ଶକ୍ତିଶାଳୀ ।

ତା'ର ଆଖିରେ ସେ ଅଦୃଶ୍ୟ ଜିନିଷକୁ ବି ଦେଖି ପାରେ, କାନରେ ସେ ପୃଥିବୀର ଆରପାରିର ଶବ୍ଦକୁ ବି ଶୁଣି ପାରେ ।

ତା'ର ଏତେ ଶକ୍ତି ଯେ, ସେ ପର୍ବତ ଭିତରେ ସୁଡ଼ଙ୍ଗ ଖୋଳି ଯିବା ଆସିବା କରେ ଏବଂ ମଝି ବାଟରେ ଜଳ ପ୍ରପାତକୁ ଅଟକେଇ ଦେଇ ପାରେ ।

ସେ ଆମ ଏ ପୃଥିବୀର ରୂପକୁ ବଦଳାଇ ଦେଉଛି । ନୂଆ ନୂଆ ଜଙ୍ଗଲ ତିଆରି କରୁଛି, ଗୋଟେ ସମୁଦ୍ର ସହିତ ଆଉ ଗୋଟେ ସମୁଦ୍ରକୁ ଯୋଡ଼ି ଦେଉଛି, ମରୁଭୂମିରେ ପାଣି ମଡ଼ାଇ ତାକୁ ଶସ୍ୟଶ୍ୟାମଳା କରି ଦେଉଛି ।

ଏହି ଶକ୍ତିଶାଳୀ ପ୍ରାଣୀଟି ତେବେ କିଏ ?

ମଣିଷ ।

କିନ୍ତୁ, ସେ ଏତେ ବିରାଟ ହେଲା କେମିତି ? ଏ ପୃଥିବୀର ମାଲିକ ବା କେମିତି ସେ ହୋଇ ପାରିଲା ?

ଏ ବହିଟିରେ ସେସବୁ କଥା ଲେଖା ହୋଇଛି ।

# ପ୍ରଥମ ଅଧ୍ୟାୟ

## ଅଦେଖା ପିଞ୍ଜୁରି ।

ଦିନ ଥିଲା, ଯେତେବେଳେ ମଣିଷ ଏତେ ବିରାଟ ଶକ୍ତିଶାଳୀ ନଥିଲା । ସେ ଥିଲା ଭାରି ଛୋଟ, ଏକେବାରେ ବାମନ ଭଳି । ପ୍ରକୃତି ଉପରେ ତା'ର କୌଣସି ପ୍ରଭୁତ୍ୱ ନଥିଲା, ସେ ଥିଲା ତା'ର ଦାସାନୁଦାସ ।

ପ୍ରକୃତି ଉପରେ ତା'ର କୌଣସି ହାକିମ ଚଳୁ ନଥିଲା । ବଣର ପଶୁ ପରି ବା ଆକାଶର ଚଢ଼େଇ ପରି ତା'ର ଟିକିଏ ହେଲେ ସ୍ୱାଧୀନତା ନଥିଲା ।

କଥାରେ ଅଛି—ପକ୍ଷୀ ପରି ସ୍ୱାଧୀନ ।

କିନ୍ତୁ, ପକ୍ଷୀ କ'ଣ ସତରେ ସ୍ୱାଧୀନ ?

ତା'ର ଡେଣା ଅଛି ସତ । ସେ ଡେଣା ସାହାଯ୍ୟରେ ସେ ପାହାଡ଼ ପର୍ବତ, ବଣ ସମୁଦ୍ର ପାର ହୋଇ ଯେଣେ ଇଚ୍ଛା ତେଣେ ଯାଇ ପାରେ । ଶରତ ଋତୁରେ ପକ୍ଷୀମାନେ ଦକ୍ଷିଣ ଅଞ୍ଚଳକୁ ଉଡ଼ିଗଲା ବେଳେ ଆମେ ସେମାନଙ୍କ ପ୍ରତି କେତେ ଈର୍ଷା ନକରୁ ! ଉଜ୍ଜ୍ୱଳ ଆକାଶରେ ଅନେକ ଉଚ୍ଚରେ ସେମାନେ ଡେଣା ଝାଡ଼ି ଝାଡ଼ି ଉଡ଼ି ଯାଆନ୍ତି । ଲୋକେ ଉପରକୁ ଚାହିଁ ଆଶ୍ଚର୍ଯ୍ୟରେ କହନ୍ତି, "ହେଇ, ଦେଖ ପକ୍ଷୀମାନଙ୍କୁ ! ସେମାନେ ଯେଣେ ଇଚ୍ଛା ତେଣେ ଉଡ଼ି ଯାଇ ପାରୁଛନ୍ତି !"

କିନ୍ତୁ, କଥାଟା କ'ଣ ସତ ? ପକ୍ଷୀମାନେ କ'ଣ ଖୁସି ମୁତାବକ ହଜାର ହଜାର ମାଇଲ ଉଡ଼ି ଯାଇ ପାରନ୍ତି ? ନା, ସେମାନେ ଖୁସିରେ ଏତେ ଦୂରକୁ ଯାଆନ୍ତି ନାହିଁ । ଦରକାର ପଡ଼ିବାରୁ ସେମାନେ ଏତେ ଦୂରକୁ ଉଡ଼ି ଯାଆନ୍ତି । ହଜାର ହଜାର ବର୍ଷ ଧରି ବଂଶ ପରମ୍ପରା କ୍ରମେ ବଞ୍ଚିବା ପାଇଁ ସେମାନେ ସଂଗ୍ରାମ କରି ଆସିଛନ୍ତି ଏବଂ ସେଇ ସଂଗ୍ରାମ ମଧ୍ୟରୁ ଗୋଟିଏ ସ୍ଥାନରୁ ଅନ୍ୟ ଏକ ସ୍ଥାନକୁ ଉଡ଼ି ପଳାଇ ଯିବାର ଏହି ଅଭ୍ୟାସଟି ସୃଷ୍ଟି ହୋଇଛି ।

ପକ୍ଷୀମାନେ ତ ଗୋଟିଏ ଜାଗାରୁ ଅନ୍ୟ ଜାଗାକୁ ଉଡ଼ି ଯାଇ ପାରନ୍ତି, କିନ୍ତୁ ଆଶ୍ଚର୍ଯ୍ୟର କଥା, ପୃଥିବୀର ସବୁଠି ସବୁ ରକମର ପକ୍ଷୀ ଦେଖିବାକୁ ମିଳେ ନାହିଁ ।

ତାହା ଯଦି ହୋଇଥାନ୍ତା, ତେବେ ଆମ ଦେଶର ଉତ୍ତରାଞ୍ଚଳରେ ଯେଉଁସବୁ ପାଇନ୍ ଆଉ ବାର୍ଚ୍ଚ ଗଛର ବଣ ଅଛି ସେସବୁଥିରେ ତ ସୁନ୍ଦର ସୁନ୍ଦର ଶୁଆ ସ୍ୱତକ ପକ୍ଷୀସବୁ ଭର୍ତ୍ତି ହୋଇଥାନ୍ତେ । କିନ୍ତୁ, ସେପରି ତ ଦେଖିବାକୁ ମିଳେ ନା କି

ମିଳିବେ ବି ନାହିଁ । କାରଣ, ପକ୍ଷୀମାନେ ଯେତେ ସ୍ୱାଧୀନ ମନେ ହୁଅନ୍ତି, ପ୍ରକୃତରେ ସେତେ ସ୍ୱାଧୀନ ନୁହନ୍ତି । ପ୍ରତ୍ୟେକ ପକ୍ଷୀ ପାଇଁ ଏ ପୃଥିବୀରେ ଅଲଗା ଅଲଗା ବାସସ୍ଥାନ ଅଛି । କିଏ ବଣ ଜଙ୍ଗଲରେ ବାସ କରେ ତ ଆଉ କିଏ ଗଛବୃଛହୀନ ସମତଳ ଅଞ୍ଚଳରେ ବାସ କରେ । କୌଣସି କୌଣସି ପକ୍ଷୀ ସମୁଦ୍ର କୂଳରେ ବାସ କରନ୍ତି ।

ତୁମେମାନେ ଉଗଲ ପକ୍ଷୀ କଥା ଜାଣିଥିବ । କହିଲ ଉଗ୍ଲ, ତା ଡେଣା କେଡ଼େ ଶକ୍ତିଶାଳୀ ହୋଇଥିବ ! କିନ୍ତୁ ତା ସତ୍ତ୍ୱେ ମଧ୍ୟ ସେ ଆଖି ପାଉ ନଥିବା ଯେକୌଣସି ସୀମାକୁ ଡେଇଁ, ଯେଉଁଠି ପାରି ସେଠି ମନଇଚ୍ଛା ବସା ବାନ୍ଧି ପାରେ ନାହିଁ । କୌଣସି ସୁନେଲୀ ଉଗଲ କେବେ କୌଣସି ଗଛବୃଛ ନଥିବା, ଖୋଲା ସମତଳ ଭୂଇଁରେ ତା'ର ଏକ ବିରାଟ ବସା ତିଆରି କରେନା । ଅନ୍ୟ ଦିଗରେ, ସମତଳ ଭୂଇଁରେ ରହୁଥିବା କୌଣସି ଉଗଲ ପକ୍ଷୀ ଯାଇ ଜଙ୍ଗଲ ମଧ୍ୟରେ ବସା ବାନ୍ଧେ ନାହିଁ ।

ଜଙ୍ଗଲ ଆଉ ସମତଳ ଭୂଇଁ ମଧ୍ୟରେ ଏକ ଅଦେଖା ପାଚିରୀ ଯେମିତି ବାଧା ହୋଇ ଛିଡ଼ା ହୋଇଛି । ସେ ବାଧାଟିକୁ କୌଣସି ପଶୁ ପକ୍ଷୀ ଅତିକ୍ରମ କରି ଯାଇ ପାରୁ ନାହାନ୍ତି ।

ତୁମେମାନେ କେବେ ଜଙ୍ଗଲରେ ବାସ କରୁଥିବା ବଣକୁକୁଡ଼ା, କାଠ ବିରେଇ ଏବଂ ବଣୁଆ ଗୁଣ୍ଡୁଚିମୂଷାଙ୍କୁ ସମତଳ ଅଞ୍ଚଳରେ ଦେଖିବାକୁ ପାଇବ ନାହିଁ । ସେଇ ଭଳି ସମତଳ ଅଞ୍ଚଳରେ ବାସ କରୁଥିବା ଗାତୁଆମୂଷା କିମ୍ବା ବାଲିମୂଷା ଜଙ୍ଗଲରେ ଦେଖିବାକୁ ମିଳେନା ।

ଏହା ଛଡ଼ା ପ୍ରତିଟି ଜଙ୍ଗଲ ଆଉ ସମତଳ ଅଞ୍ଚଳ ମଧ୍ୟ ଛୋଟ ଛୋଟ ଅନେକ ପାଚିରୀ ଦ୍ୱାରା ବିଭକ୍ତ, ଯିଏକି ସେସବୁକୁ ଛୋଟ ଛୋଟ ଦୁନିଆରେ ଭାଗ ଭାଗ କରି ଦେଇଛି ।

## ଜଙ୍ଗଲରେ ବୁଲିଲା ବେଳେ ।

ବଣ ଜଙ୍ଗଲରେ ବୁଲିଲା ବେଳେ ତୁମକୁ ସେଭଳି ଅଦେଖା ପାଚିରୀସବୁ ପାରି ହେବାକୁ ପଡ଼ିବ । ଗଛକୁ ଚଢ଼ିଲେ ତୁମକୁ ଅନେକ ବାଧାକୁ ଏଡ଼େଇ ଏଡ଼େଇ ଉପରକୁ ଉଠିବାକୁ ହେବ । ଜଙ୍ଗଲଟା ମନେ ହେବ ଗୋଟାଏ ବିରାଟ କୋଠା ପରି – ଅନେକ ବଖରା ଆଉ ମହଲରେ ସେଟା ଯେମିତି ବିଭକ୍ତ । ତମ ଆଖିରେ ହୁଏତ ସେସବୁ ପଡ଼ିବ ନାହିଁ, କିନ୍ତୁ ପ୍ରକୃତରେ ସେସବୁ ସେଥିରେ ରହିଛି ।





ଜଙ୍ଗଲର ଦୁଇଟି ବାସିନ୍ଦା – କ୍ରସବିଲ୍ ଓ କାଠହଣା ।

ଉଦାହରଣ ସ୍ୱରୂପ, ତୁମେ ଦେଖିବାକୁ ପାଇବ, ଦେବଦାରୁ ଗଛସବୁ ପାଇନ୍ ଗଛକୁ ବାଟ ଛାଡ଼ି ଦେଇଛି । ପାଇନ୍ ଗଛସବୁ ଅନ୍ୟ ଗଛମାନଙ୍କ ଅପେକ୍ଷା ଅନେକ ସ୍ଥାନରେ ଅନେକ ଡେଙ୍ଗା ଡେଙ୍ଗା । ବୁଲୁ ବୁଲୁ ତମକୁ ଲାଗିବ ତମେ ଯେମିତି ଏକ ଗାଲିଚ୍ଚ ଉପରେ ଯାଉଛ । ସେ ଗାଲିଚ୍ଚ ଆମ ଘରର ଗାଲିଚ୍ଚ ନୁହେଁ – ଶିଉଳି ବିଛା ଗାଲିଚ୍ଚ । ଆଉ କିଛି ବାଟ ଗଲ ପରେ ଦେଖିବ, ମାଟିସବୁ ସବୁଜ ଘାସ ବା ସଫେଦ ଶିଉଳିରେ ଢଙ୍କା ।

ସହରରେ ବାସ କରୁଥିବା କୌଣସି ଲୋକ ଯଦି ଜଙ୍ଗଲକୁ ଦିନକ ପାଇଁ ଯାଇଥିବ ସେ କହିବ, ମୁଁ ଏକ ଜଙ୍ଗଲକୁ ଯାଇଥିଲି । କିନ୍ତୁ ଜଙ୍ଗଲରେ ବାସ କରୁଥିବା ଲୋକକୁ ଯଦି ପଚାରୁ, ସେ କହିବ, ଏଠି ଗୋଟାଏ ଜଙ୍ଗଲ ନୁହେଁ, ଚାରିଟା ଜଙ୍ଗଲ ଅଛି । ସନ୍ତସନ୍ତିଆ ଫାଙ୍କା ଜାଗାରେ ଦେବଦାରୁ – କୁଞ୍ଜ, ତଳେ ତା'ର ମଚ ମଚ କରୁଥିବା ଶିଉଳିର ମୋଟା ଗାଲିଚ୍ଚ । ଆହୁରି ଆଗେଇ ଗଲେ ଦେଖିବ ବାଲିଆ ଗଡ଼ାଣି । ଉପରେ ତା'ର ସବୁଜ ଶିଉଳି ପାଇନ୍ ଗଛର ଝାଡ଼ – ଘେରିଆଡ଼େ ଅନେକ ରକମର କୋଳି ଗଛର ବୁଦା । ଆହୁରି ଉପରକୁ ଟିକେ ଉଠି ଗଲେ ବାଲି କୁଦଗୁଡ଼ିକ ଉପରେ ଦେଖିବ ସଫେଦ ଶିଉଳି ପାଇନ୍ ଗଛର ଝାଡ଼ ।

ତା'ପରେ ଆଉ କିଛି ଆଗକୁ ଗ୍ଲଲିଲେ ଆଖିରେ ପଡ଼ିବ ସନ୍ତସନ୍ତିଆ ଜାଗା — ପାଇନ୍ ଗଛ ତଳେ ମାଟିକୁ ଢାଙ୍କି ମାଡ଼ି ଯାଇଛି ଘାସସବୁ ।

ଇତି ମଧ୍ୟରେ ତୁମେ ଜଙ୍ଗଲର ତିନୋଟି ପାଚିରୀ ପାର ହୋଇ ଗଲଣି । ଏହି ପାଚିରୀ ତିନୋଟି ଜଙ୍ଗଲକୁ ଗ୍ଲରୋଟି ଭାଗରେ ଭାଗ ଭାଗ କରି ଦେଇଛି । ତମେ କିନ୍ତୁ ସେସବୁକୁ ମୋଟେ ଲକ୍ଷ୍ୟ କରି ପାରିନ ।

ସହରର ଘରଗୁଡ଼ିକ ଆଗରେ ନାଁ ଲେଖା ପଟାସବୁ ଲଗା ହୋଇଥାଏ । ସେଇ ଭଳି ଯଦି ଜଙ୍ଗଲରେ ଲଗା ହୋଇଥାନ୍ତା, ତେବେ ଏ ଦେବଦାରୁ ଜଙ୍ଗଲରେ ତୁମେ ଦେଖିଥାନ୍ତ ଏହି ନାମଗୁଡ଼ିକୁ : ଶ୍ରୀ କ୍ରସ୍‌ବିଲ (ଏକ ପ୍ରକାର ପକ୍ଷୀ), ଶ୍ରୀ ସିସ୍‌କିନ୍ (ଏକ ଗାଉଣା ଚଢ଼େଇ), ଶ୍ରୀ କିଂଲେଟ୍ (ସୁନା ଭଳି ମୁକୁଟ ଥିବା ପକ୍ଷୀ ବିଶେଷ), ତିନି ଆଙ୍ଗୁଳିଆ ଶ୍ରୀ କାଠହଣା । ଘଞ୍ଚ ପତ୍ର ଥିବା ଜଙ୍ଗଲରେ ତୁମେ ଦେଖିବାକୁ ପାଇବ ନିମ୍ନଲିଖିତ ନାଁଗୁଡ଼ିକୁ : ଶ୍ରୀ ସବୁଜ କାଠହଣା, ଶ୍ରୀମତୀ ସୁନାମୁହାଁ (ଏକ ଗାଉଣା ଚଢ଼େଇ), କୁମାରୀ ନୀଳ ଟିଟ୍ (ଏକ କୁନି ଚଢ଼େଇ), ଶ୍ରୀ ମାଛଖିଆ, ଶ୍ରୀମତୀ ଚିପ୍‌ଷ୍ଟପ୍ (ଏକ ଗାଉଣା ଚଢ଼େଇ), ଶ୍ରୀମତୀ ମଙ୍କ ବାର୍ଡ, ଶ୍ରୀ କଳାଟୋପିଆ, ଶ୍ରୀ କଳା କାଠହଣା ଏବଂ ଆହୁରି ଅନେକ ।

ବଡ଼ ବଡ଼ କୋଠାସବୁ ଯେମିତି ଏକାଧିକ ମହଲରେ ଭାଗ ଭାଗ ହୋଇଥାଏ, ସେଇ ଜଙ୍ଗଲର ମଧ୍ୟ ବିଭିନ୍ନ ମହଲ ଥାଏ ।

ପାଇନ୍ ଗଛର ଜଙ୍ଗଲ, ପ୍ରାୟ ଦୋମହଲା କିମ୍ବା ଖୁବ୍ ବେଶି ହେଲେ ତିନି ମହଲ ହୋଇଥାଏ । ଏକ ମହଲରେ ଥାଏ ଘାସ ଆଉ ଶିଉଳି । ଦୁଇ ମହଲରେ ଥାଏ ଛୋଟ ଛୋଟ ଗୁଳ୍ମ ଆଉ ବୁଦା । ସବା ଉପର ମହଲରେ ରହେ ପାଇନ୍ ଗଛ ।

ଓକ୍ ବୋଲି ଗୋଟାଏ ପ୍ରକାରର ଗଛ ଅଛି । ଓକ୍ ଜଙ୍ଗଲଟା ସାତ ମହଲ ପର୍ଯ୍ୟନ୍ତ ହୋଇ ଥାଏ । ସବା ଉପର ମହଲ, ଅର୍ଥାତ୍ ସାତ ମହଲଟି ଓକ୍ ଗଛ, ଆସ୍ ଗଛ, ଲିଣ୍ଡେନ୍ ଏବଂ ମାପ୍ଲସ୍ ଗଛର ଶିଖରକୁ ନେଇ ଗଢ଼ା ହୋଇଥାଏ । ଆକାଶର ଅନେକ ଉପରକୁ ସେମାନେ ମୁଣ୍ଡ ଟେକି ଛିଡ଼ା ହୋଇଥାନ୍ତି । ଗ୍ରୀଷ୍ମ କାଳରେ ସେସବୁର ସବୁଜ ପତ୍ର ଏବଂ ହେମନ୍ତରେ ହଳଦୀ-ଲାଲ ପତ୍ରସବୁ ଜଙ୍ଗଲ ଉପରେ ସବୁଜ ଏବଂ ହଳଦୀ-ଲାଲ ଛାତ ତିଆରି କରି ଦିଅନ୍ତି । ଓକ୍ ଗଛର ମଝି ପର୍ଯ୍ୟନ୍ତ ଉଠି ଯାଇଥାଏ ପାହାଡ଼ିଆ ଆସ୍, ଜଙ୍ଗଲୀ ଆତ ଆଉ ପିଅର ଗଛଗୁଡ଼ିକର ମଥା ।

ଏସବୁର ତଳକୁ ଥାଏ ଛୋଟ ଛୋଟ ଗଛର ଝାଡ଼ — ନାନା ରକମର କୋଳି

ଗଛ, ହଥଧର୍ଷ, ବେଲ ଗଛ, ଆଦି । ଏହିସବୁ ଝାଡ଼ ତଳେ ଥାଏ ଫୁଲ ଆଉ ଘାସ । ଏସବୁ ମଧ୍ୟ ମହଲ ମହଲରେ ଭାଗ ହୋଇଥାଏ । ଅନ୍ୟସବୁ ଫୁଲ ଉପରେ ଚହଟି ଉଠୁଥାଏ ନୀଳ ବେଲଫୁଲ । ସେସବୁର ତଳକୁ ଫୁଟୁଥାଏ ପାହାଡ଼ିଆ କଇଁ ଏବଂ କାଓ-ହୋଇଟ୍ ଫୁଲସବୁ । ଏକ ମହଲରେ, ଅର୍ଥାତ୍ ମାଟିକୁ ଲଗିକି ଥାଏ ଭାଓଲେଟ୍ ଫୁଲ ଏବଂ ବଣୁଆ ଷ୍ଟ୍ରବେରି ଗଛସବୁ । ଏସବୁ ବଢ଼ି ଥାନ୍ତି ପତ୍ରବିଛା ବଣର ଶିଉଳି ଉପରେ ।

ମାଟିତଳ ମହଲଟି ହେଉଛି ବଣର ଭଣ୍ଡାର ଘର । ସେଥିରେ ଆମେ ଦେଖିବାକୁ ପାଇବା ଗଛବୃଛର ଚେର ମୂଳ ଏବଂ ଫୁଲସବୁ ।

ପାଇନ୍ କିମ୍ବା ଅନ୍ୟାନ୍ୟ ପତ୍ରଭରା ଜଙ୍ଗଲର ପ୍ରତ୍ୟେକଟି ମହଲରେ ଥାନ୍ତି ସେସବୁର ବାସିନ୍ଦାମାନେ । ବାଜପକ୍ଷୀ ସବୁଠାରୁ ଉପର ମହଲଟିରେ ତା'ର ବସା ବାନ୍ଧି ଥାଏ । ତା ତଳକୁ ଟିକେ ଖୋଲଆସିଆ ଜାଗାରେ ରହେ କାଠହଣା ଆଉ ତା'ର ପରିବାର । ତା ତଳକୁ, ଅର୍ଥାତ୍ ପାଞ୍ଚ ମହଲରେ ରହନ୍ତି ଯେତେକ ଗୀତ ଗାଇବା ପକ୍ଷୀ । ଏକ ମହଲରେ ରହେ ବଣକୁକୁଡ଼ା । ସେ ମାଟି ଉପରେ ବୁଲଚଲ କରେ । ଏକ ମହଲ ତଳେ ମାଟି ଭିତରେ ଗାତ ଆଉ ଘର ତିଆରି କରି ରହିଥାଏ ଗାଡୁଆମୂଷା ।

ଏହି ବିରାଟ ଘରଟିରେ ବହୁ ପ୍ରକାରର ବଖରା ଅଛି । ସବା ଉପର ମହଲର ବଖରାଗୁଡ଼ିକରେ ଖୁବ୍ ଆଲୁଅ ଆଉ ପବନ । ତଳ ମହଲଟି କିନ୍ତୁ ଅନ୍ଧାର ଆଉ ସତସତିଆ । ଏହି ମହଲର ବଖରାଗୁଡ଼ିକରେ କେବଳ ଗ୍ରୀଷ୍ମ ଦିନରେ ରହି ହୁଏ । ସବୁ ଋତୁରେ ବ୍ୟବହାର କଲା ଭଳି ଗରମ ବଖରାସବୁ ମଧ୍ୟ ସେଥିରେ ରହିଛି ।

ମାଟିରେ ଥିବା ଗାତଗୁଡ଼ିକ ରହିବା ପାଇଁ ବେଶ୍ ଗରମ । ବୈଜ୍ଞାନିକମାନେ ତଳକୁ ପାଞ୍ଚ ଫୁଟ ପର୍ଯ୍ୟନ୍ତ ଯାଇଥିବା ଗାତର ଉତ୍ତାପ କେତେ ମାପି ଦେଖିଛନ୍ତି । ଶୀତ କାଳରେ, ବାହାରେ ଉତ୍ତାପ $-୧୮^{\circ}$ ଥିଲା ବେଳେ ଏଭଳି ଗାତ ମଧ୍ୟରେ ଉତ୍ତାପ ଥାଏ $+୮^{\circ}$ ।

ଗଛର କାଣ୍ଡ ଆଉ ଡାଳଗୁଡ଼ିକ ଭାରି ଥଣ୍ଡା । ଶୀତ କାଳରେ ସେଠାରେ କୌଣସି ଜନ୍ତୁ ରହିଲେ ଜମାଟ ବାନ୍ଧିଯିବ । ଗରମ ସମୟରେ ସେସବୁ ଜାଗା କିନ୍ତୁ ଖୁବ୍ ଆରାମ । ଏହିସବୁ ଜାଗାରେ, ବିଶେଷ କରି, ପେଚା ଆଉ ବାଦୁଡ଼ିମାନେ ରହନ୍ତି । ରାତିରେ ସେମାନେ କାମକୁ ବାହାରି ଯାଆନ୍ତି ଏବଂ ଦିନଯାକ ଅନ୍ଧାରୁଆ ଜାଗାରେ ଝୁଲି ପଡ଼ି କଟେଇ ଦିଅନ୍ତି ।

ଗୋଟିଏ ଘର ମନକୁ ନପାଇଲେ ଲୋକେ ଘର ବଦଳାନ୍ତି, ଗୋଟିଏ ମହଲାରୁ ଆଉ ଗୋଟିଏ ମହଲାକୁ ଯାଆନ୍ତି । କିନ୍ତୁ ଜଙ୍ଗଲରେ ସେ କଥା ମୋଟେ ସମ୍ଭବ ନୁହେଁ ।

ବଣକୁକୁଡ଼ା କେବେହେଲେ ତା'ର ସେଇ ଥଣ୍ଡା ଅନ୍ଧାର ଘରକୁ ଛାଡ଼ି ଉପରର ଆଲୁଅ ପବନପୂର୍ଣ୍ଣ ଘରକୁ ଯିବ ନାହିଁ । ସେଇ ଭଳି, ବାଜପକ୍ଷୀ ତା'ର ଉପର ତାଘର ଆଲୁଅ ପବନ ଛାଡ଼ି ଗଛ ତଳେ ବସା ବାନ୍ଧିବାକୁ ଆସିବ ନାହିଁ । କାରଣ ସେ ଆଲୁଅ ଆଉ ପବନକୁ ଭଲପାଏ ।

## ବଣର କଇଦୀ ।

ତୁମେମାନେ ଜାଣିଛ ଗୁଣ୍ଡୁଚିମୂଷା ବଣରେ ରହେ । ମନେ କର ଗୁଣ୍ଡୁଚିମୂଷା ଠିକ୍ କଲା ତା ଘର ବଦଳେଇବ । ସେ ଯାଇ ଗାତୁଆମୂଷାକୁ କହିଲା ତୁ ମୋ ଘରକୁ ଗ୍ଲଲି ଆ, ମୁଁ ତୋ ଘରକୁ ଯିବି । ଗାତୁଆମୂଷା କିନ୍ତୁ ଯିବ ନାହିଁ । ଗାତୁଆମୂଷା ରହେ ସମତଳ ତୃଣ ଭୂଇଁରେ କିମ୍ବା ମରୁ ଭୂଇଁରେ ।

ଗୁଣ୍ଡୁଚିମୂଷାର ଘରଟି ଗଛର ଅନେକ ଉପରେ, କାଣ୍ଡ କିମ୍ବା ଡାଳ ଉପରେ । ଗାତୁଆମୂଷାର ଘରଟି ମାଟି ତଳେ ଗାତ ମଧ୍ୟରେ ।

ଗାତୁଆମୂଷାଟି ଯଦି ଗୁଣ୍ଡୁଚିମୂଷାର ଘରେ ଯାଇ ରହେ, ତେବେ ତାକୁ ଗଛରେ ଚଢ଼ିଚଢ଼ି ଯିବାକୁ ହେବ । କିନ୍ତୁ ସେ କଥା ସେ କରି ପାରିବ ନାହିଁ, କାରଣ ତା'ର ନଖଗୁଡ଼ିକ ଗଛକୁ ଚଢ଼ିଲା ଭଳି ନୁହେଁ ।

ଅନ୍ୟ ଦିଗରେ, ଗୁଣ୍ଡୁଚିମୂଷା କେବେହେଲେ ମାଟି ତଳେ ରହି ପାରିବ ନାହିଁ । ଗଛ ଉପରେ ବାସ କରିବାରେ ସେ ଅଭ୍ୟସ୍ତ ।

ତା'ର ଲାଞ୍ଜ ଆଉ ନଖକୁ ଦେଖିଲେ ସେ କେଉଁଠି ରହେ, ଅନୁମାନ କରି ହୁଏ ।

ଗୁଣ୍ଡୁଚିମୂଷାର ନଖଗୁଡ଼ିକ ଏପରି ଭାବେ ତିଆରି ଯେ, ସେ ସହଜରେ ଗଛ ଡାଳରେ ଚଢ଼ି ପାରେ, କୋଳି ଗଛରୁ କୋଳି ଆଉ ପାଇନ୍ ଗଛରୁ ପାଇନ୍ ମଞ୍ଜି ତୋଳି ପାରେ । ଲାଞ୍ଜଟା ତା'ର ଆକାଶଛତା ବା ପାରାଚୁଟ ପରି । ଗୋଟାଏ ଡାଳରୁ ଆଉ ଗୋଟାଏ ଡାଳକୁ ଡେଇଁଲା ବେଳେ ସେଟା ତାକୁ ସାହାଯ୍ୟ କରିଥାଏ । ତା'ଛଡ଼ା ଶାଳିଆପତନି ତାକୁ ଧରିବା ପାଇଁ ଆକ୍ରମଣ କଲା ବେଳେ ଡେଇଁ ଖସି ପଳାଇବା ପାଇଁ ଲାଞ୍ଜଟା ତାକୁ ବହୁତ କାମ ଦେଉଥାଏ ।

କିନ୍ତୁ ସମତଳ ତୃଣ ଭୂଇଁରେ ରହୁଥିବା ଗାତୁଆମୂଷାର ନଖଗୁଡ଼ିକ ସଂପୂର୍ଣ୍ଣ

ଅଇଗା, ଲଞ୍ଜଟା ତା'ର ଗୁଣ୍ଡୁଚିମୂଷା ଭଳି ମୋଟେ ନୁହଁ । କାରଣ ତୃଣଭୂମିରେ ତ ବଣ ବୁଦା ନଥାଏ – କୌଣସି ବିପଦ ଆସିଲେ ଗାତୁଆମୂଷା ସେସବୁ ମଧ୍ୟରେ ଯାଇ ଲୁଚିଯିବ । ସେଠି ନିଜକୁ ବଞ୍ଚାଇବାର ଉପାୟ ହେଉଛି ଦୌଡ଼ି ପଳାଇ ଯାଇ କୁଆଡ଼େ ଲୁଚିଯିବା ବା ମାଟି ଭିତର ଗାତ ଭିତରକୁ ପଶିଯିବା । ଗାତୁଆମୂଷା ତାହାହିଁ କରିଥାଏ । ଯେତେବେଳେ କୌଣସି ପେଚ୍ଚ ବା ଇଗଲ-ପେଚ୍ଚ ତାକୁ ଧରିବା ପାଇଁ ମୁଣ୍ଡ ଉପରେ ଆସି ଚକର କାଟି ଉଡ଼େ ସେ ଖୁବ୍ ଜୋରରେ ଦୌଡ଼ି ପଳାଇ ଯାଇ ତା'ର ଗାତ ଭିତରେ ଲୁଚି ଯାଏ । ତେଣ କରି ତା'ର ନଖଗୁଡ଼ିକ ଏପରି ହୋଇଥାଏ । ତା'ର ପଛ ଗୋଡ଼ ଦୁଇଟି ଆଗ ଗୋଡ଼ ଦୁଇଟି ଅପେକ୍ଷା ଟିକେ ଲମ୍ବା । ପଛ ଗୋଡ଼ ଦୁଇଟିରେ ଠେସ ଦେଇ ସେ ଆଗକୁ ଡିଏଁ ଏବଂ ଆଗ ଗୋଡ଼ ଦୁଇଟିରେ ମାଟି ଖୋଳି ଗାତ ଖୋଳେ । ଶତ୍ରୁ ହାତରୁ ବଞ୍ଚିବା ପାଇଁ ସେ ଏହିସବୁ ଗାତରେ ଲୁଚି ଥାଏ । ଗ୍ରୀଷ୍ମ ଦିନେ ଗରମରୁ ଏବଂ ଶୀତ ଦିନେ ଶୀତରୁ ରକ୍ଷା ପାଇବା ପାଇଁ ସେ ଗାତରେ ରହେ ।

ତା ଲଞ୍ଜଟା ତାହେଲେ ତାକୁ କେମିତି ସାହାଯ୍ୟ କରେ ? ଗାତୁଆମୂଷାର ଲଞ୍ଜଟା ସବୁଠୁ ବେଶି ସାହାଯ୍ୟ କରେ ତା'ର ଗୋଡ଼କୁ । ଏହି ଛୋଟ ଜୀବଟି ଯେତେବେଳେ ତା ପଛ ଗୋଡ଼ ଦୁଇଟିରେ ବସିପଡ଼ି ଏଣିକି ତେଣିକି ଚାହେଁ, ଲଞ୍ଜଟି ତାକୁ ଖୁବ୍ ସାହାଯ୍ୟ କରେ । ସେତେବେଳେ ସେଟା ଗୋଟିଏ ଗୋଡ଼ ଭଳି କାମ କରେ । ତା'ଛଡ଼ା ସେ ଯେତେବେଳେ ଡେଇଁ ଡେଇଁକା ଯାଏ, ଲଞ୍ଜଟି ତା'ର ନୌକାର ମଙ୍ଗଧରା ବାଡ଼ି ଭଳି କାମ ଦିଏ । ଏଭଳି ଗୋଟାଏ ଲଞ୍ଜ ନଥିଲେ ଗାତୁଆମୂଷା ଡେଇଁଲ ବେଳେ ପ୍ରତିଥର ଶୁନଚିତ୍ ମାରି ପଡ଼ି ଯାଆନ୍ତା ମାଟି ଉପରେ ।

ତେଣୁ, ଗୁଣ୍ଡୁଚିମୂଷା ଆଉ ଗାତୁଆମୂଷା ଯଦି ନିଜ ନିଜ ମଧ୍ୟରେ ଘର ବଦଳ କରନ୍ତି ଜଙ୍ଗଲ ଆଉ ତୃଣ ଭୂମିକୁ ଅଦଳ ବଦଳ କରିବାକୁ ପଡ଼ିବ । ତା'ଛଡ଼ା ସେମାନଙ୍କୁ ପରସ୍ପର ମଧ୍ୟରେ ଲଞ୍ଜ ମଧ୍ୟ ବଦଳେଇବାକୁ ହେବ ।

ଠିକ୍ ଏହି ଭାବେ ଯଦି ବଣ ଆଉ ସମତଳ ଭୂଇଁର ଅନ୍ୟାନ୍ୟ ବାସିନ୍ଦାମାନଙ୍କ କଥା ବିଗ୍ଭର କରିବା, ତାହେଲେ ଦେଖିବା ଯେ, ସେମାନେ ସମସ୍ତେ ଆପଣା ଆପଣା କାଗାରେ, ଅଦେଖା ଶିକୁଳିରେ ବନ୍ଧା ହୋଇ ରହିଛନ୍ତି । ସେ ଶିକୁଳିକି ଛିଡ଼ାଇବା ମୋଟେ ସହଜ ନୁହେଁ ।

ବଣକୁକୁଡ଼ା ରହେ ଜଙ୍ଗଲର ଏକ ମହଲରେ । କାରଣ ତା'ର ପ୍ରିୟ ଖାଦ୍ୟ ଜିନିଷ ଥାଏ ମାଟି ତଳେ ଗାତ ଭିତରେ । ତା ଥଣ୍ଟା ତେଣୁ ଲମ୍ବା । ସେ ଏଇ ଲମ୍ବା ଥଣ୍ଟରେ ମାଟି ପୋକକୁ ଟାଣି ଆଣେ । ଗଛରେ ରହିଲେ ସେ କ'ଣ କରିବ

ସେ କଥା ଟିକେ ଭାବ ତ ! ତେଣୁ ଗଛରେ ତମେ ବଣକୁକୁଡ଼ା ଦେଖିବାକୁ ପାଇବ ନାହିଁ ।

ସେଇ ଭଳି ମାଟି ଉପରେ ଚିତିରି ମିଚିରିଆ ପରବାଲ କାଠହଣା ଚଢ଼େଇକୁ ତମେ ଦେଖିବାକୁ ପାଇବ ନି । ଦିନ ସାରା ସେ ଫାର ଗଛ ବା ବାର୍ଚ୍ଚ ଗଛର ଗଣ୍ଡିକୁ ଥଣ୍ଟରେ ହାଣିବାରେ ଲଗିଥାଏ ।

କାହିଁକି ସେ ହାଣୁଥାଏ ? କ'ଣ ତା'ର ଦରକାର ?

ଫାର ଗଛରୁ ବକଳା ଖଣ୍ଡେ ଛଡ଼େଇ ନେଇ ଦେଖ । ସେଇ ବକଳା ତଳେ କାଣ୍ଡର ଗ୍ଭରି ପାଖରେ ଅଙ୍କା ବଙ୍କା ଗାରସବୁ ପଡ଼ିଥାଏ । ଫାର ଗଛରେ ରହୁଥିବା ଏକ ପ୍ରକାର ପୋକ କାଠକୁ କାଟି ସେମିତି କରିଥାନ୍ତି । ସେସବୁ ଗାର କିଛି ବାଟ ଯାଇ ମିଳାଇ ଯାଇ ଥାଏ ଏକ ଗାତରେ । ସେଇ ଗାତରେ ପୋକ ଅଣ୍ଡା ଦେଇଥାଏ ଏବଂ ଅଣ୍ଡାଗୁଡ଼ିକରୁ ଛୋଟ ଛୋଟ ପହଣା ବାହାରି ବଡ଼ ବଡ଼ ପୋକରେ ପରିଣତ ହୁଅନ୍ତି । ଏହି ପୋକ ସବୁ ରହନ୍ତି ଫାର ଗଛରେ । କାଠହଣା ଏହି ପୋକକୁ ଖାଇ ବଞ୍ଚେ । କାଠହଣା ତା'ର ଲମ୍ବା ମୁନିଆ ଥଣ୍ଟରେ ଫାରଗଛର ବକଳାକୁ ଫୁଟେଇ ଦିଏ । ତୁମେ ହୁଏତ ଜାଣି ନଥିବ ଯେ, କାଠହଣାର ଜିଭଟା କେତେ ଲମ୍ବା ! କାଠହଣାର ଜିଭଟା ସତରେ ଲମ୍ବା । ସେ ସେଇ ଲମ୍ବା ଜିଭ ଦେଇ ଅଙ୍କା ବଙ୍କା ଗାତ ଭିତରୁ ପୋକଛୁଆଗୁଡ଼ାକୁ ଟାଣି ଆଣେ ।

ଆମେ ଏଥର ପାଇଲେ ଫାର ଗଛ, ଫାର ଗଛରେ ରହୁଥିବା ପୋକ ଏବଂ କାଠହଣା—ଏ ତିନିହେଁ ମିଶି ଏକ ଶିକୁଳି ।

ଏହି ଶିକୁଳିଟି କାଠହଣାକୁ ଫାର ଗଛ ସହିତ ଏବଂ ଫାରଗଛକୁ ବଣ ସହିତ ବାନ୍ଧିଛି । ଏବଂ ଏହି ଶିକୁଳିଟି ପରି ବହୁ ଶିକୁଳି ରହିଛି ।

ଗଛରୁ କେବଳ ଗୋଟିଏ ରକମର ପୋକ ଖାଦ୍ୟ ସଂଗ୍ରହ କରନ୍ତି ନାହିଁ ଆହୁରି ଅନେକ ପୋକ ଏବଂ ସେମାନଙ୍କ ଛୁଆ ସେଥିରୁ ଖାଦ୍ୟ ଖାଇ ବଞ୍ଚନ୍ତି । ତା'ଛଡ଼ା ଶୀତ ଋତୁରେ କାଠହଣା ପାଇନ୍ ଗଛରୁ ମଞ୍ଜିସବୁକୁ ଖୁବ୍ କୌଶଳର ସହିତ ଛଡ଼େଇକି ଖାଏ । ପାଇନ୍ ଗଛର ଡାଳ ଫାଙ୍କରେ ସେ ଗୁଞ୍ଜି ଦେଇଥାଏ ପାଇନ୍ ଫଳର ଖୋସାଗୁଡ଼ିକୁ । ପାଇନ୍ ଗଛର କାଣ୍ଡକୁ ଥଣ୍ଟରେ ଖୋଳି ସେ ତିଆରି କରେ ତା ପରିବାର ପାଇଁ ବସା । କାଠହଣାର ଲାଞ୍ଜଟା ଶକ୍ତ ଏବଂ ସେ ଲାଞ୍ଜ ଆଉ ମୁନିଆ ନଖ ସାହାଯ୍ୟରେ ଗଛର ଉପର ତଳକୁ ସହଜରେ ଯିବା ଆସିବା କରି ପାରେ । ତାହେଲେ କାଠହଣାକୁ ଯଦି କୁହାଯାଏ, ତୁ ଗଛରେ ନରହି ଆଉ କୁଆଡ଼େ ଯାଇ ରହ, ସେ କ'ଣ ରହି ପାରିବ ?

ଆମେ ଦେଖିଲେ, କାଠହଣା ଆଉ ଗୁଣ୍ଡୁଚିମୂଷା କେବଳ ଜଙ୍ଗଲରେ ବାସ କରନ୍ତି ନାହିଁ, ସେମାନେ ହେଉଛନ୍ତି ଜଙ୍ଗଲର ଜଇଦୀ ।

## ମାଛ କେମିତି କୂଳକୁ ଆସିଲା ।

ଅନେକ ଛୋଟ ଛୋଟ ଦୁନିଆକୁ ନେଇ ଆମର ବଡ଼ ଦୁନିଆଟା ତିଆରି । ମୁଁ ଯେଉଁ ବଣ କଥା କହିଲି, ସିଏ ହେଉଛି ଗୋଟିଏ ଛୋଟିଆ ଦୁନିଆ ।

ପୃଥିବୀରେ କେବଳ ବଣ ଜଙ୍ଗଲ ନାହିଁ । ସେଥିରେ ଅଛି ପାହାଡ଼, ପର୍ବତ, ସମୁଦ୍ର, ମରୁଭୂମି ଆଉ କେତେ କ'ଣ ?

ପ୍ରତିଟି ପର୍ବତରେ ମଧ୍ୟ ଛୋଟ ଛୋଟ ଦୁନିଆ ରହିଛି । ଅଦେଖା ପାଚିରୀ ଦ୍ୱାରା ସେସବୁ ଦୁନିଆ ବିଭକ୍ତ ।

ପ୍ରତିଟି ସମୁଦ୍ର ତଳେ ମଧ୍ୟ ଅନେକ ସ୍ତର ରହିଛି । ତମେ ସେସବୁକୁ ଆଖିରେ ଦେଖି ପାରିବ ନାହିଁ ।

ପ୍ରଥମ ସ୍ତରଟିରେ, ଯେଉଁଠି ଜୁଆର ଆସି କୂଳ ଦେହରେ ବାଡ଼େଇ ହୁଏ, ସେଠି ରହନ୍ତି ଶାମୁକା, କଂକଡ଼ା ଆଦି । ସେମାନେ ଏ ମାଟିରେ ରହିବାରେ ଏତେ ଅଭ୍ୟସ୍ତ ଯେ, ପବନ ଝଡ଼ ତୋଫାନ ବି ତାଙ୍କୁ ଦୂରକୁ ଫିଙ୍ଗି ଦେଇ ପାରେ ନାହିଁ ।

ଆହୁରି ତଳକୁ ଗଲେ ସୂର୍ଯ୍ୟ କିରଣରେ ଚକ୍ ଚକ୍ କରୁଥିବା ପାଣିରେ ଦେଖିବ ନାନା ରଙ୍ଗର ମାଛ । ପାଣି ଭିତରେ ଥିବା ସବୁଜ ଆଉ ଧୂସର ଗୁଳ୍ମ ଭିତରେ ସେସବୁ ଖେଳୁଥାନ୍ତି । କାଚ ଭଳି ସ୍ୱଚ୍ଛ ଜେଲିଫିସ୍ ବୋଲି ଏକ ପ୍ରକାର ମାଛ ମଧ୍ୟ ସେଠାରେ ଭାସୁଥାନ୍ତି । ଏକେବାରେ ତଳେ ଷ୍ଟାର ମାଛସବୁ ଆସ୍ତେ ଆସ୍ତେ ସାପେଇ ସାପେଇ ଯିବା ଆସିବା କରୁଥାନ୍ତି । ସମୁଦ୍ର ତଳେ ଥିବା ମାଟିରେ ନାନା ରକମର ଅଦ୍ଭୁତ ଜୀବସବୁ ରହନ୍ତି । ସେସବୁ ଗଛ ଭଳି ଗତିହୀନ, ଏଣିକି ତେଣିକି ଯାଇ ପାରନ୍ତି ନାହିଁ । ସେମାନଙ୍କୁ ଖାଦ୍ୟ ଖୋଜିବାକୁ ପଡ଼େ ନାହିଁ । ଖାଦ୍ୟ ଆସି ବଳେ ବଳେ ସେମାନଙ୍କ ପାଟିରେ ପଶିଯାଏ । ସେସବୁ ହେଉଛନ୍ତି ସିଇ ଆସିଡିଆ ନାମକ ପ୍ରାଣୀ, ଦୋମୁହାଁ ମାଠିଆ ଭଳି ଦେଖିବାକୁ । ପାଣି ସହିତ ଛୋଟ ଛୋଟ ଜୀବକୁ ଏମାନେ ପେଟ ଭିତରକୁ ଟାଣି ନିଅନ୍ତି । ସେସବୁ ହେଉଛନ୍ତି ଏମାନଙ୍କର ଖାଦ୍ୟ । ଉଜ୍ଜ୍ୱଳ ରଙ୍ଗର ଅନେମୋନେସ୍ ନାମକ ଜୀବଟି ମାଛ ଖାଇ ବଞ୍ଚେ । ମାଛମାନେ ତା ପାଖ ଦେଇ ପହଁରି ପହଁରି ଗଲା ବେଳେ ସେ ତା'ର ଶୁଣ୍ଢରେ ଧରି ପକାଏ । ଶୁଣ୍ଢଗୁଡ଼ିକ ଫୁଲପାଖୁଡ଼ା ଭଳି ଦେଖିବାକୁ ।

ସମୁଦ୍ରର ସବା ତଳେ ଅଛି ସଂପୂର୍ଣ୍ଣ ଭିନ୍ନ ଏକ ଦୁନିଆ । ସେଠି ରାତି ଦିନ କେବେ ହୁଏ ନାହିଁ । ବଡ଼ ଉଦାସ ଲାଗେ ସେଠି । ଆଲୋକ ସେଠିକି ଯାଇ ପାରେ ନା, ଫଳରେ କୌଣସି କ୍ଷୁଦ୍ର ଶିଉଳି ବି ସେଠି ନଥାଏ ।

ସମୁଦ୍ରର ସବା ତଳ ଦେଶକୁ ସମୁଦ୍ର ଶଯ୍ୟା ବୋଲି କହନ୍ତି । ଏହା ଏକ ଅନ୍ଧକାରମୟ ମଶାଣି ଭଳି ଲାଗେ । ସେଠାରେ ମଧ୍ୟ ଜୀବଜନ୍ତୁ ଏବଂ ଗଛମାନେ ରହିଛନ୍ତି । ସେମାନେ ଉପରୁ ତଳକୁ ଛାଣି ହୋଇ ଯାଇଥାନ୍ତି ।

ଦଶଗୋଡ଼ିଆ ଜନ୍ତୁଙ୍କସବୁ ପଙ୍କ ଦିହରେ ସେଠି ବୁଲୁଥାନ୍ତି । ସେମାନଙ୍କ ଶୁଣ୍ଢସବୁ ଖୁବ୍ ଲମ୍ବା ଲମ୍ବା । ଫାଳୁଆ ଫାଳୁଆ ମୁହଁ ଥିବା ମାଛସବୁ ସେଠି ଅନ୍ଧାରରେ ପହଁରୁଥାନ୍ତି । ସେସବୁ ମଧ୍ୟରୁ ଅନେକଙ୍କର ଆଖି ନଥାଏ । ଆଉ କେତେକଙ୍କର ଦୂରବୀକ୍ଷଣ ଯନ୍ତ୍ର ଭଳି ଦିଇଟା ଲେଖାଏଁ ଆଖି । ଆଉ ଏକ ରକମର ମାଛ ସେଠାରେ ରହନ୍ତି, ସେମାନଙ୍କ ଦିହରୁ ଆଲୁଅ ବାହାରେ । ଜାହାଜର କାଚସବୁ ଦେଇ ଭିତରର ଆଲୁଅ ଆସିଲା ବେଳେ ଜାହାଜଟି ଯେମିତି ଦିଶେ ସେସବୁ ସେଇଭଳି ଦିଶନ୍ତି । ଆଉ କେତେକ ମାଛ ସେଠାରେ ରହନ୍ତି, ସେମାନଙ୍କ ମୁଣ୍ଡରେ ଏକ ପ୍ରକାର ଶିଙ୍ଗ ଥାଏ ଏବଂ ସେ ଶିଙ୍ଗରୁ ଆଲୁଅ ବାହାରୁଥାଏ ।

ଆମ ଏ ଦୁନିଆ ସହିତ ଏ ଅଜବ୍ ଦୁନିଆଟା କେତେ ତଫାତ୍ କହତ !

କିନ୍ତୁ, ଶୁଖିଲା ଭୂଇଁଠାରୁ ସମୁଦ୍ର କୂଳେ କୂଳେ ଥିବା ଅଗହୀରିଆ ଜଳା ଜମିଟା ମଧ୍ୟ ଖୁବ୍ ଅଲଗା । ଏ ଦୁଇଟି ଅଞ୍ଚଳ କେବଳ ଗୋଟିଏ ରେଖା ଦ୍ୱାରା – ବେଳା ଭୂଇଁ ଦ୍ୱାରା ବିଭକ୍ତ ।

ଏ ଦୁଇଟି ଏଲାକାର ବାସିନ୍ଦାମାନେ କ'ଣ ଗୋଟିକୁ ଛାଡ଼ି ଅନ୍ୟଟିକୁ ଯାଇ ପାରିବେ ? ମାଛ କ'ଣ ସମୁଦ୍ରକୁ ଛାଡ଼ି ଶୁଖିଲା ଭୂଇଁରେ ରହିବ ?

ଏ କଥା କେବେ ସମ୍ଭବ ନୁହେଁ । ପାଣିକୁ ଛାଡ଼ି ମାଛ ବଞ୍ଚି ପାରେ ନାହିଁ । ଶୁଖିଲା ମାଟିରେ ରହିବାକୁ ହେଲେ ତା'ର ଗାଲିସୀ ପରିବର୍ତ୍ତେ ଫୁସ୍‌ଫୁସ୍ ଦରକାର, ଡେଣା ପରିବର୍ତ୍ତେ ଗୋଡ଼ ଦରକାର । ମାଛ କେବଳ ସେତିକିବେଳେ ଶୁଖିଲା ମାଟିରେ ଆସି ରହି ପାରିବ, ଯେତେବେଳେ ସେ ମାଛ ହୋଇ ଆଉ ରହିବ ନାହିଁ ।

କିନ୍ତୁ ମାଛ କ'ଣ ଅନ୍ୟ କିଛି ହୋଇ ପାରିବ ?

ତମେ ଯଦି ଏହି ପ୍ରଶ୍ନଟି ଜଣେ ବୈଜ୍ଞାନିକଙ୍କୁ ପଚାରିବ, ସେ କହିବେ, ହଁ ହୋଇ ପାରିବ । କୋଟି କୋଟି ବର୍ଷ ଆଗେ କେତେକ ଜାତିର ମାଛ କୂଳ ଉପରକୁ ଉଠି ଆସିଥିଲେ । ତା'ପରେ ସେମାନେ ଆଉ ମାଛ ହୋଇ ରହିଲେ

ନାହିଁ । ପାଣିରୁ ମାଟି ଉପରକୁ ଆସିବା ପାଇଁ ସେମାନଙ୍କୁ ଦିନେ ଦୁଇ ଦିନ ବା ବର୍ଷେ ଦିବର୍ଷ ଲାଗି ନଥିଲା, ଲାଗିଥିଲା କୋଟି କୋଟି ବର୍ଷ ।

ଅଷ୍ଟ୍ରେଲିଆ ମହାଦେଶରେ କେତେକ ନଦୀ କ୍ରମଶଃ ପୂରା ଶୁଖି ଗଲେଣି । ସେସବୁ ନଦୀରେ ଏକ ପ୍ରକାରର ଶିଙ୍ଗ ଥିବା ମାଛ ଦେଖିବାକୁ ମିଳେ । ସେ ମାଛର ପହଁରା ବୁଡ଼ୁଲାଟା ଫୁସ୍ ଫୁସ୍ ଭଳି ଦେଖା ଯାଏ । ଗ୍ରୀଷ୍ମ ଦିନେ ପାଣି ଯେତେବେଳେ ଶୁଖି ଯାଇ ନଈରେ କେବଳ ପଙ୍କୁଆ ପାଣିତକ ରହେ, ଅନ୍ୟ ମାଛସବୁ ମରି ଯାଆନ୍ତି ଏବଂ ପଚିକି ଗନ୍ଧାନ୍ତି । କିନ୍ତୁ ସେ ଶିଙ୍ଗୀ ମାଛ ମରେ ନାହିଁ । କାରଣ ତା'ର ଗାଲିସୀ ଛଡ଼ା ଥାଏ ଫୁସ୍‌ଫୁସ୍ । ତା'ର ନିଶ୍ୱାସ ନେବାକୁ ଦରକାର ପଡ଼ିଲେ, ସେ ତା ମୁଣ୍ଡଟାକୁ ପାଣି ଉପରକୁ ଟେକି ଦିଏ ।

ଆଫ୍ରିକା ଏବଂ ଦକ୍ଷିଣ ଆମେରିକାରେ ଆଉ କେତେକ ମାଛ ଦେଖିବାକୁ ମିଳନ୍ତି, ସେମାନଙ୍କର ପାଣି ଦରକାର ପଡ଼େ ନାହିଁ । ସେମାନେ ଖରା ଦିନେ ପଙ୍କ ଭିତରକୁ ପଶି ଯାଆନ୍ତି ଏବଂ ହଲଚଲ ନହୋଇ ମୋଡ଼ିମାଡ଼ି ହୋଇ ରହିଯାଆନ୍ତି । ସେମାନେ ନିଶ୍ୱାସ ପ୍ରଶ୍ୱାସ ନିଅନ୍ତି ଫୁସ୍‌ଫୁସ୍ ସାହାଯ୍ୟରେ । ବର୍ଷା ଋତୁ ଆସିଲେ ଯାଇ ସେମାନେ ପାଣିକୁ ଆସନ୍ତି ।

ଏଥିରୁ ଜଣାଯାଉଛି, ମାଛମାନଙ୍କର ମଧ୍ୟ ଫୁସ୍‌ଫୁସ୍ ଅଛି ।

କିନ୍ତୁ ସେମାନଙ୍କର ଗୋଡ଼ ଅଛି କି ? ହଁ, ଗୋଡ଼ ମଧ୍ୟ ଅଛି । ଏ କଥା ପ୍ରମାଣ କରିବା ପାଇଁ କେତେକ ଉଦାହରଣ ମଧ୍ୟ ରହିଛି । ଗ୍ରୀଷ୍ମ ମଣ୍ଡଳରେ କେତେକ କାଦୁଅଡିଆଁ ମାଛ ଦେଖିବାକୁ ମିଳନ୍ତି । ସେମାନେ କୂଳରେ କେବଳ ଡେଇଁ ଡେଇଁକା ଯାଆନ୍ତି ନାହିଁ, ଗଛ ଉପରକୁ ମଧ୍ୟ ଚଢ଼ି ପାରନ୍ତି । ସେମାନଙ୍କ ଡେଣା ଯୋଡ଼ାକ ଗୋଡ଼ର କାମ କରିଥାଏ ।

ମାଛ ପାଣିରୁ ଆସି ମାଟି ଉପରେ ବାସ କରିଥିଲା, ଏହାର ଜ୍ୱଳନ୍ତ ପ୍ରମାଣ ହେଉଛି ଏହିସବୁ ଆଶ୍ଚର୍ଯ୍ୟ ଧରଣର ଜୀବଗୁଡ଼ିକ । କିନ୍ତୁ ଏହା ଯେ ବାସ୍ତବରେ ଘଟିଥିଲା, ସେ କଥା ଆମେ କେମିତି କହି ପାରିବା ?

ପୃଥିବୀରୁ ଯେଉଁସବୁ ଜୀବ ଲୋପ ପାଇ ଯାଇଛନ୍ତି, ସେମାନଙ୍କ ହାଡ଼କୁ ପରୀକ୍ଷା କରି ସେମାନଙ୍କ ସଂପର୍କରେ ଅନେକ କଥା ଜଣାଯାଇଛି । ପ୍ରତ୍ନତତ୍ତ୍ୱବିତ୍‌ମାନେ ସେଇଭଳି ହାଡ଼ ଜମା ହୋଇ ଥିବା କେତେକ ଜାଗାରୁ ଖୋଳି ଏଇଭଳି ଏକ ଜୀବର ହାଡ଼ ବାହାର କରିଥିଲେ, ଯିଏକି ମାଛ ଭଳି ଦେଖିବାକୁ । କିନ୍ତୁ ପ୍ରକୃତରେ ସେଟା ମାଛ ନୁହେଁ । ସେ ଥିଲା ଏକ ଉଭଯଚର ପ୍ରାଣୀ, ବେଙ୍ଗ ବା ଟ୍ରାଇଟନ୍ ଭଳି । ଜୀବଟିର ନାମ ଷ୍ଟେଗୋସେଫଲସ୍ । ମାଛ ଭଳି ତା'ର ଡେଣା ନଥିଲା, ଥିଲା ପାଞ୍ଚ ଆଙ୍ଗୁଳିଆ ଗୋଡ଼ସବୁ । ସେ ଯେତେବେଳେ କୂଳକୁ

ଆସୁଥିଲ, ଧୀରେ ଧୀରେ ଏହି ଗୋଡ଼ଗୁଡ଼ିକରେ ଗ୍ଭଲବୁଲ କରି ପାରୁଥିଲ ।

ଆମେ ଯେଉଁସବୁ ବେଙ୍ଗକୁ ଦେଖେ ସେମାନଙ୍କ କଥା ଧରାଯାଉ । ସେମାନେ ଯେତେବେଳେ ବେଙ୍ଗଫୁଲ ଭିତରୁ ଅଣ୍ଡା ଫୁଟାଇ ବାହାରି ଆସନ୍ତି, ସେତେବେଳେ ବେଙ୍ଗ ଛୁଆ ଆଉ ମାଛ ମଧ୍ୟରେ ଟିକିଏ ହେଲେ ତଫାତ୍ ନଥାଏ ।

ତେଣୁ, ଏଥିରୁ ଜଣାଯାଉଛି, କୋଟି କୋଟି ବର୍ଷ ପୂର୍ବେ ମାଛ ଜାତୀୟ କେତେକ ଜୀବ ସମୁଦ୍ର ଏବଂ ଶୁଖିଲ ଭୂମି ମଧ୍ୟରେ ଥିବା ପଡିବନ୍ଧକକୁ ଅତିକ୍ରମ କରି ଆସିଥିଲେ । କିନ୍ତୁ, ଏହି ଅତିକ୍ରମ କରିବାର ପ୍ରକ୍ରିୟା ମଧ୍ୟ ଦେଇ ସେମାନେ ବି ବଦଳି ଗଲେ । ଉଭୟଚର ପ୍ରାଣୀମାନଙ୍କର ପୂର୍ବପୁରୁଷମାନେ ଥିଲେ ମାଛ ଏବଂ ତା'ପରେ ସେମାନଙ୍କଠାରୁ ଜନ୍ମ ନେଲେ ସରୀସୃପମାନେ । ସରୀସୃପମାନେ ତା'ପରେ ହେଲେ ପକ୍ଷୀ ଏବଂ ସ୍ତନ୍ୟପାୟୀ ପ୍ରାଣୀ । ସେମାନଙ୍କ ମଧ୍ୟରୁ ଅନେକ ଆଉ ପାଣି ମଧ୍ୟକୁ ଫେରିଗଲେ ନାହିଁ ।

## ମୂକ ସାକ୍ଷୀମାନେ ।

କୋଟି କୋଟି ବର୍ଷ ଆଗେ ପୃଥିବୀ ପୃଷ୍ଠରେ ଜୀବସବୁ ସୃଷ୍ଟି ହୋଇଥିଲେ । ସେହି କାଳରୁ ସେମାନେ ପ୍ରଥମେ ଯେମିତି ଥିଲେ ସେଇମିତି ରହି ନାହାନ୍ତି । ଏହାର ପ୍ରମାଣ ଦିଏ ପଥର ପାଲଟି ଯାଇଥିବା ବହୁ ପ୍ରାଚୀନ ଜୀବମାନଙ୍କର ହାଡ଼ସବୁ ।

ତେବେ, କଥାଟା ହେଉଛି, ସେମାନଙ୍କର ଏପରି କାହିଁକି ପରିବର୍ତ୍ତନ ଘଟିଲ ?

ତୁମେ ହୁଏତ ଗ୍ଭର୍ଲସ୍ ଡାରଉଇନ୍‌ଙ୍କ ନାମ ଶୁଣିଥିବ । ସେ ଥିଲେ ଜଣେ ବଡ଼ ବୈଜ୍ଞାନିକ । ସେ ଜନ୍ମିଥିଲେ ଇଂଲଣ୍ଡରେ । ଜୀବମାନଙ୍କର ବିବର୍ତ୍ତନତତ୍ତ୍ୱ ନାମରେ ଏକ ତତ୍ତ୍ୱର ସେ ବିକାଶ ସାଧନ କରିଥିଲେ । ଡାରଉଇନ୍ ଏହି ତତ୍ତ୍ୱଟିକୁ ପ୍ରତିଷ୍ଠା କରିବା ପୂର୍ବରୁ ଜୀବମାନଙ୍କର କାହିଁକି ପରିବର୍ତ୍ତନ ଘଟିଲ ସେ କଥାଟା ଗୋଟାଏ ରହସ୍ୟ ଭଳି ରହିଥିଲ । ଡାରଉଇନ୍‌ଙ୍କ ପରେ ଦୁଇ ଜଣ ରୁଷ୍ ବୈଜ୍ଞାନିକ – ଭ୍ଲାଦିମିର୍ କୋଭାଲେଭ୍‌ସ୍କି ଏବଂ କେ.ତିମିରିୟାଜେଭ୍ ତାଙ୍କର ଏହି କାର୍ଯ୍ୟଟିକୁ ଆହୁରି ଆଗେଇ ନେଇଥିଲେ । ସେମାନଙ୍କର ବ୍ୟାପକ ଅନୁଧ୍ୟାନ କାର୍ଯ୍ୟ ସଂପୂର୍ଣ୍ଣ ହେଲ ପରେ ସେମାନେ ଏଭଳି ସବୁ ତଥ୍ୟ ପ୍ରଦାନ କଲେ, ଯେଉଁସବୁ ବିଷୟରେ ଆମର ଆଈମାମାନେ ପରିଷ୍କାର ଭାବେ ଆମକୁ କହି ନଥିଲେ ।

ପଟିଟି ଜୀବନ୍ତ ପ୍ରାଣୀ ଦୁନିଆରେ ଯେଉଁଠି ବାସ କରେ ଉକ୍ତ ସ୍ଥାନ, ତା'ର ଜଳବାୟୁ, ପରିବେଶ ସହିତ ସେ ନିଜକୁ ଖାପ ଖୁଆଇ ନେଇଥାଏ । କିନ୍ତୁ

ଏ ଦୁନିଆରେ ସବୁ କିଛି ବଦଳି ଯାଇଛି – ଗରମ ଜଳବାୟୁ ଶୀତଳ ଜଳବାୟୁରେ ପରିଣତ ହେଉଛି, ଏକଦା ଯେଉଁଠି ସମତଳ ଭୂଇଁ ଥିଲା ସେଠି ପର୍ବତ ଶ୍ରେଣୀ ମୁଣ୍ଡଟେକି ଉଠିଛି, ସମୁଦ୍ର ସମତଳ ଭୂଇଁ ପାଲଟି ଯାଇଛି, ପାଇନ୍ ଜଙ୍ଗଲ ସ୍ଥାନରେ ଦେଖା ଦେଇଛି ସବୁଜ ପତ୍ରଭରା ଜଙ୍ଗଲ।

ତାହେଲେ, ଚତୁର୍ପାର୍ଶ୍ୱସ୍ଥ ପ୍ରକୃତି ଯେତେବେଳେ ବଦଳି ଯାଏ, ସେତେବେଳେ ଜୀବନ୍ତ ପ୍ରାଣୀମାନଙ୍କର କ'ଣ ହୁଏ ?

ସେମାନଙ୍କର ମଧ୍ୟ ପରିବର୍ତ୍ତନ ଘଟେ ।

କିନ୍ତୁ ସେମାନଙ୍କର ପରିବର୍ତ୍ତନଟା କେମିତି ହେବ, ସେ କଥା ସେମାନେ ଠିକ୍ କରନ୍ତି ନାହିଁ । ହାତୀ କେବେହେଲେ ଦିନକରେ ଘାସ ପତ୍ର ଆଉ ଫଳ ଛାଡ଼ି ମାଂସ ଖାଇବ ନାହିଁ । ଭାଲୁ କେବେହେଲେ କହିବ ନାହିଁ ଯେ, "ମୋତେ ଖୁବ୍ ଗରମ ଲାଗୁଛି, ମୋ ଲୋମଗୁଡ଼ାକୁ କାଢ଼ି ନିଅ ।"

ଜୀବନ୍ତ ପ୍ରାଣୀମାନେ ସେମାନଙ୍କ ଇଚ୍ଛା ମୁତାବକ ବଦଳି ଯାଆନ୍ତି ନାହିଁ । ସେମାନେ ବାଧ୍ୟ ହୁଅନ୍ତି ନୂଆ ଖାଦ୍ୟ ଖାଇବାକୁ ଏବଂ ନୂଆ ପରିସ୍ଥିତି ଭିତରେ ବାସ କରିବାକୁ । ଏହା ଫଳରେ ସେମାନଙ୍କର ପରିବର୍ତ୍ତନ ଘଟେ । କିନ୍ତୁ ଏହି ପରିବର୍ତ୍ତନସବୁ ସବୁବେଳେ ସେମାନଙ୍କର ଭଲ ପାଇଁ ନୁହେଁ କି, ସେମାନଙ୍କର ଉପକାରୀ ନୁହେଁ ।

ଅନେକ ସମୟରେ ଜୀବଜନ୍ତୁ ବା ଗଛବୃକ୍ଷସବୁ ନୂଆ ପରିବେଶରେ ଦୁଃଖ କଷ୍ଟରେ ପଡ଼ି ଯାଆନ୍ତି । ତା'ର କାରଣ ହେଉଛି, ସେମାନଙ୍କ ପୂର୍ବପୁରୁଷଙ୍କ ଭଳି ସେମାନଙ୍କ ବଞ୍ଚିବା ପାଇଁ ଯାହା ଦରକାର ସେସବୁ ସେଠାରେ ମିଳେ ନାହିଁ ।

ସେମାନଙ୍କୁ ହୁଏତ ଭୋକରେ ରହିବାକୁ ପଡ଼େ, ଅତି ଶୀତରେ ସେମାନେ ଜମି ଯାଆନ୍ତି, ଅଥବା ଅତ୍ୟଧିକ ଗରମ ବା ଜଳାଭାବ ହେତୁ କଷ୍ଟ ଭୋଗନ୍ତି । ଅନେକ କ୍ଷେତ୍ରରେ ସେମାନଙ୍କ ଶତ୍ରୁମାନଙ୍କ ଦ୍ୱାରା ସହଜରେ ସେମାନେ ଶିକାର ପାଲଟନ୍ତି । ସେମାନଙ୍କ ସନ୍ତାନ ସନ୍ତତିମାନେ ଆହୁରି ବେଶି ରୁଗ୍ଣ ହୋଇ ଯାଆନ୍ତି, ଫଳରେ ନୂଆ ପରିସ୍ଥିତିରେ ନିଜକୁ ବଞ୍ଚାଇବାର କ୍ଷମତା ସେମାନଙ୍କର କମି ଆସେ । ଶେଷକୁ ସେମାନଙ୍କର ସମସ୍ତ ବଂଶଧରଙ୍କୁ ମୃତ୍ୟୁ ମୁଖରେ ପଡ଼ିବାକୁ ହୁଏ, ସେମାନେ ପରିବର୍ତ୍ତନକୁ ଗ୍ରହଣ କରି ପାରନ୍ତି ନାହିଁ ।

କିନ୍ତୁ କେତେକ କ୍ଷେତ୍ରରେ ଜୀବନ୍ତ ପ୍ରାଣୀମାନେ ମଧ୍ୟ ନିଜକୁ ପରିବର୍ତ୍ତନ କରେଇ ନିଅନ୍ତି, ଯେଉଁ ପରିବର୍ତ୍ତନଟା ସେମାନଙ୍କ ପକ୍ଷରେ କ୍ଷତିକାରକ ନହୋଇ ସହାୟକ ହୁଏ । ଅନୁକୂଳ ପରିସ୍ଥିତିରେ ସେହିସବୁ ସହାୟକ ପରିବର୍ତ୍ତନକୁ ପରବର୍ତ୍ତୀ

ବଂଶଧରମାନେ ଗ୍ରହଣ କରି ନିଅନ୍ତି, ସେମାନେ ନିଜକୁ ଠିକ କରନ୍ତି, ଶକ୍ତିଶାଳୀ ଏବଂ ଦୃଢ଼ କରି ନିଅନ୍ତି ।

କେତେକ କ୍ଷେତ୍ରରେ ନୂଆ ବଂଶଧରମାନେ ସେମାନଙ୍କ ପୂର୍ବପୁରୁଷମାନଙ୍କ ଭଳି ଦିଶନ୍ତି ନାହିଁ । ସେମାନଙ୍କ ସ୍ୱଭାବ ବଦଳି ଯାଇଥାଏ ଏବଂ ସେମାନଙ୍କ ପୂର୍ବପୁରୁଷମାନଙ୍କ ପକ୍ଷରେ ଯେଉଁ ପରିବେଶ କ୍ଷତିକାରକ ଥିଲା ସେଥିରେ ସେମାନେ ବଞ୍ଚିବାକୁ ସକ୍ଷମ ହୋଇ ଯାଆନ୍ତି । ନୂଆ ଜୀବନ ଧାରଣର ଅବସ୍ଥା ସହିତ ନିଜକୁ ସେମାନେ ଖାପ ଖୁଆଇ ନିଅନ୍ତି । ଏ କ୍ଷେତ୍ରରେ ଯେଉଁ ଜିନିଷଟି ଘଟେ, ତାକୁ କୁହାଯାଏ ପ୍ରକୃତି ଦ୍ୱାରା ନିର୍ବାଚନ – ଅର୍ଥାତ୍ ଯେଉଁସବୁ ପ୍ରାଣୀ ନୂଆ ଅବସ୍ଥା ସହିତ ଖାପ ଖୁଆଇ ପାରନ୍ତି ନାହିଁ ସେମାନେ ଲୋପ ପାଇ ଯାଆନ୍ତି ଏବଂ ଯେଉଁମାନେ ପାରନ୍ତି ସେମାନେ ବଞ୍ଚନ୍ତି ।

ଏ ସଂପର୍କରେ ବୈଜ୍ଞାନିକ ତିମିରିୟାଜେଭ୍ ଏକ ଉଦାହରଣ ଦେଇଥିଲେ : ଜେରୁଜେଲମରେ ଆର୍ଟିଗ୍ରେକ୍ ନାମକ ଏକ ଜାତୀୟ ଗଛକୁ ପର୍ବତରେ ଲଗା ଗଲା । ସମତଳ ଅଞ୍ଚଳରେ ହେଉଥିବା ଏହି ଗଛର ଗଣ୍ଡି ଲମ୍ବା ଏବଂ ପତ୍ରଗୁଡ଼ିକ ମୋଟା । କିନ୍ତୁ ପାର୍ବତ୍ୟ ଅଞ୍ଚଳରେ ଏହା ଏତେ ଛୋଟ ହେଲା ଯେ, ପତ୍ରସବୁ ତଳକୁ ଲଗି ଆସିଲା ।

ଏହି ପରିବର୍ତ୍ତନ ଘଟିଲା ଆର୍ଟିଗ୍ରେକ୍ ଗଛଟିର ନୂଆ ପରିବେଶ ହେତୁ । ପାର୍ବତ୍ୟ ଅଞ୍ଚଳର ମାଟି ଏବଂ ଜଳବାୟୁ ସମତଳ ଅଞ୍ଚଳଠାରୁ ଏକେବାରେ ଅଲଗା । ଏ କ୍ଷେତ୍ରରେ ପରିବର୍ତ୍ତନଟା ଥିଲା ଗଛଟି ପକ୍ଷରେ ଅନୁକୂଳ । କାରଣ ଏବେ ବରଫ କବଳରୁ ନିଜର ପତ୍ରଗୁଡ଼ିକୁ ଲୁଚେଇବା ଶୀତ କାଳର ଥଣ୍ଡା ପବନ ଆଉ ତୁଷାର ପାତରୁ ନିଜକୁ ରକ୍ଷା କରିବା ତା ପକ୍ଷରେ ସହଜ ହେଲା ।

ଜଳବାୟୁରେ ପରିବର୍ତ୍ତନ ହେତୁ ଜୀବନ୍ତ ପ୍ରାଣୀମାନଙ୍କ ସ୍ୱଭାବରେ ପରିବର୍ତ୍ତନ ଘଟିବାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ଏହି ଭଳି ଏକ ଉଦାହରଣ ହେଉଛି, ମାଛମାନଙ୍କର କ୍ରମଶଃ ଉଭୟଚର ପ୍ରାଣୀକୁ ପରିବର୍ତ୍ତନ ।

ଏହି ପ୍ରକ୍ରିୟାଟି ଘଟିଥିଲା ପ୍ରାଗୈତିହାସିକ ଅଗଭୀର ସମୁଦ୍ର ଆଉ ହ୍ରଦମାନଙ୍କରେ, ଯେଉଁମାନେ କ୍ରମଶଃ ଶୁଖି ଯାଇଥିଲେ । ଯେଉଁସବୁ ଜାତିର ମାଛ ନୂଆ ଜୀବନଧାରା ସହିତ ଖାପ ଖୁଆଇ ପାରିଲେ ନାହିଁ, ସେମାନେ ଲୋପ ପାଇବାକୁ ବସିଲେ । ଯେଉଁମାନେ ପାଣି ବିନା ଅଧିକ କାଳ ବଞ୍ଚିବାକୁ ଶିଖି ନେଲେ, ସେହିମାନେ ହିଁ କେବଳ ବଞ୍ଚିଲେ । ସେମାନେ ପଙ୍କ ମଧ୍ୟରେ ଲୁଚି ଗଲେ ବା ଡେଣାଗୁଡ଼ିକୁ

ଗୋଡ଼ ଭଳି ଚଳେଇ ନିକଟବର୍ତ୍ତୀ ଜଳାଧାରକୁ ଘୋଷାରି ଘୋଷାରି ହୋଇ ପଳେଇ ଗଲେ ।

ଶୁଖିଲା ଭୂଇଁରେ ସାହାଯ୍ୟ କଲା ଭଳି ଦେହର ପ୍ରତ୍ୟେକଟି ସାମାନ୍ୟ ପରିବର୍ତ୍ତନକୁ ପ୍ରକୃତି କାମରେ ଲଗାଇ ଥାଏ । ଏହିସବୁ ମାଛମାନଙ୍କ ଦେହରେ ପହଁରିବାରେ ସାହାଯ୍ୟ କରୁଥିବା ଥଳିଟି କ୍ରମଶଃ ପରିଣତ ହେଲା ଫୁସ୍‌ଫୁସ୍‌ରେ , ଡେଣା ଯୋଡ଼ିକ ଗୋଡ଼ରେ ପରିଣତ ହେବାକୁ ଲାଗିଲା ।

ଏହି ଭାବେ ପାଣିରେ ବାସ କରୁଥିବା କେତେକ ଜୀବ କ୍ରମେ କ୍ରମେ ମାଟି ଉପରର ଜୀବନ ସହିତ ଖାପ ଖୁଆଇ ନେଲେ ।

ପରିବର୍ତ୍ତନ ଫଳରେ ମାଛର ଡେଣା , ପହଁରିବା ଥଳି ଏବଂ ଦେହର ଗଠନ ନୂଆ ପରିବେଶ ଅନୁଯାୟୀ ପରିବର୍ତ୍ତିତ ହେଲା ।

ପ୍ରାକୃତିକ ନିର୍ବାଚନ କେବଳ ସେହିସବୁ ପରିବର୍ତ୍ତନକୁ ଧରି ରଖେ , ଯିଏକି ସହାୟକ ହୁଏ । ଯେଉଁଗୁଡ଼ିକ କ୍ଷତିକାରକ ସେସବୁକୁ ଲୋପ କରିଦିଏ ।

ବଂଶ ପରମ୍ପରା ସହାୟତାକାରୀ ପରିବର୍ତ୍ତନଗୁଡ଼ିକୁ ପରବର୍ତ୍ତୀ ବଂଶଧରମାନଙ୍କୁ ଦାନ କରେ , ସେସବୁକୁ ଠୁଳ ଏବଂ ଦୃଢ଼ କରେ ।

ଘୋଡ଼ାର ଇତିହାସ ଅଧ୍ୟୟନ କଲେ ଆହୁରି ଅନେକ କଥା ଜାଣି ହୁଏ । ବୈଜ୍ଞାନିକ ଭ୍ଲାଦିମିର୍ କୋଭାଲେଭ୍‌ସ୍କି ସେ ସଂପର୍କରେ ଯେଉଳି ଅନୁଧ୍ୟାନ କରିଥିଲେ ଆମକୁ ସେଇଭଳି କରିବାକୁ ହେବ ।

ଘୋଡ଼ା ଯେ ଏକ ଜାତୀୟ କ୍ଷୁଦ୍ର ପ୍ରାଣୀର ପରିବର୍ତ୍ତନ ଫଳରେ ସୃଷ୍ଟି ହୋଇଛି , ସେ କଥା ବିଶ୍ୱାସ କରି ହୁଏ ନାହିଁ । ଏହି କ୍ଷୁଦ୍ର ପ୍ରାଣୀଟି ନିଘଞ୍ଚ ଜଙ୍ଗଲ ମଧ୍ୟରେ ପଡ଼ିଥିବା ଗଛର ଗଣ୍ଡିକୁ ଗୁଳୁଣ୍ଡି ଗୁଳୁଣ୍ଡି ପାର ହୋଇ ଆସିଥିଲା । ସେତେବେଳେ ସେ ପ୍ରାଣୀଟିର ଘୋଡ଼ା ଭଳି ଖୁରା ନଥିଲା । ତା'ର ଛୋଟ ଛୋଟ ଗୋଡ଼ରେ ଥିଲା ପାଞ୍ଚନଖିଆ ଥାବା । ଏହା ଦ୍ୱାରା ସେ ଜଙ୍ଗଲର ଅସମତଳ ମାଟିକୁ ଠିକ୍ କରି ଧରି ପାରୁଥିଲା ।

କାଳକ୍ରମେ ବିରାଟ ଘଞ୍ଚ ଜଙ୍ଗଲସବୁ ପତଳା ହୋଇ ସମତଳ ଭୂଇଁରେ ପରିଣତ ହେବାକୁ ଲାଗିଲା । ଘୋଡ଼ାର ଜଙ୍ଗଲ ବାସିନ୍ଦା ପୂର୍ବପୁରୁଷମାନେ ଖୋଲା ସମତଳ ଅଞ୍ଚଳକୁ ଅନେକ ସମୟରେ ଆସୁଥିଲେ । ବିପଦ ଆପଦ ପଡ଼ିଲେ ଦେହ ଲୁଚାଇବା ପାଇଁ ଜଙ୍ଗଲ ଭଳିଆ ସ୍ଥାନ ସେଠାରେ ମିଳିଲା ନାହିଁ । ଖୁବ୍ ଜୋରରେ ଦୌଡ଼ି ପଳାଇ ଯିବାଟା ଥିଲା ଏକ ମାତ୍ର ଆତ୍ମରକ୍ଷାର ଉପାୟ । ଜଙ୍ଗଲରେ ଲୁଚକାଳି ଖେଳିଲା ଭଳି ବିପଦ ମୁହଁରୁ ବଞ୍ଚିବାର ଉପାୟଟା ଖୋଲା ସମତଳ ଭୂଇଁରେ ଆଉ କାମ ଦେଲା ନାହିଁ । ଫଳରେ ବହୁ ପ୍ରାଣୀ ଧରା ପଡ଼ିଯାଇ ମଲେ । କେବଳ

ଯେଉଁମାନଙ୍କର ଗୋଡ଼ ଲମ୍ବା ଏବଂ ଚଞ୍ଚଳ ଥିଲ ସେଇମାନେ ହିଂସ୍ର ଜନ୍ତୁଙ୍କ କବଳରୁ ବର୍ତ୍ତି ଗଲେ ।

ପୁଣି ଥରେ ପ୍ରକୃତି ଆରମ୍ଭ କରିଦେଲା ତା'ର ନିର୍ବାଚନ । ଯେଉଁସବୁ ପରିବର୍ତ୍ତନ ପ୍ରାଣୀଟି ପକ୍ଷରେ ଅଧିକ ବେଗରେ ଦୌଡ଼ିବାରେ ସହାୟକ ହୋଇଥିଲା ତାକୁ ରଖିଲା ଏବଂ ଯାହା ଦୌଡ଼ିବା ପକ୍ଷରେ ଦରକାରୀ ନଥିଲା ତାକୁ ପରିତ୍ୟାଗ କଲା ।

ଘୋଡ଼ାର ପୂର୍ବପୁରୁଷମାନଙ୍କର ଜୀବନର ବିଶ୍ଳେଷଣରୁ ଜଣାଯାଏ, ଖୁବ୍ ଦ୍ରୁତଗାମୀ ଜୀବଙ୍କ ପାଇଁ ଅଧିକ ଆଙ୍ଗୁଳିର ଦରକାର ପଡ଼େ ନାହିଁ । ଗୋଟିଏ ହେଲେ ଯଥେଷ୍ଟ, ସେ ଆଙ୍ଗୁଳିଟି ଶକ୍ତ ଏବଂ କଠିନ ହୋଇ ଥିବା ଦରକାର । ଏକଦା ତିନି ଆଙ୍ଗୁଳି ବିଶିଷ୍ଟ ଗୋଡ଼ଥିବା ପ୍ରାଣୀଟି, ଶେଷରେ ଏକ ଖୁରିଆ ଘୋଡ଼ାରେ ପରିଣତ ହେଲା । ଆମେ ଏବେ ଯେଉଁ ଘୋଡ଼ାସବୁକୁ ଦେଖୁଁ, ସେମାନଙ୍କର ଗୋଟିଏ ମାତ୍ର ଲମ୍ବା ଖୁରା ଅଛି ।

ଘୋଡ଼ା ତା'ର ଜଙ୍ଗଲ ବାସସ୍ଥାନ ପରିତ୍ୟାଗ କଲା ବେଳେ ତା'ର ଗୋଡ଼ଗୁଡ଼ିକରେ କେବଳ ପରିବର୍ତ୍ତନ ଘଟିଲା ନାହିଁ, ତା'ର ସମଗ୍ର ଦେହଟା ବଦଳି ଗଲା । ଦୃଷ୍ଟାନ୍ତ ସ୍ୱରୂପ ତା'ର ବେକ । ମନେ କର ଘୋଡ଼ାର ଗୋଡ଼ଗୁଡ଼ିକ ଲମ୍ବା ହେଲା ବେଳେ ତା'ର ବେକଟା ଯଦି ଛୋଟ ହୋଇ ରହି ଯାଇଥାନ୍ତା, ତେବେ କ'ଣ ହୁଅନ୍ତା ସେ କ୍ଷେତ୍ରରେ ତା'ର ଗୋଡ଼ ତଳେ ଥିବା ଘାସକୁ ତା'ର ମୁହଁ ପାଆନ୍ତା ନାହିଁ । କିନ୍ତୁ ସେଇଳି ହେଲା ନାହିଁ । ପ୍ରକୃତି ଛୋଟ ବେକବାଲା ଘୋଡ଼ାକୁ ପରିତ୍ୟାଗ କଲା ଯେମିତି ସେ ପରିତ୍ୟାଗ କରିଥିଲା ଛୋଟ ଗୋଡ଼ବାଲା ଘୋଡ଼ାକୁ ।

ଏତ ଗଲା ଗୋଡ଼ ଆଉ ବେକ କଥା । ଘୋଡ଼ାର ଦାନ୍ତ କଥା କ'ଣ ହେଲା ? ସେଗୁଡ଼ିକ ମଧ୍ୟ ବଦଳି ଗଲା । ସମତଳ ଅଞ୍ଚଳରେ ଘୋଡ଼ାକୁ ଖାଇବାକୁ ହେଲା ମୋଟା ଅନାବନା ଗଛ ଆଉ ପତ୍ର । ପ୍ରଥମେ ସେସବୁକୁ ସେ ଗ୍ରେବାଇ ଗିଳି ପକାଉ ଥିଲା । ଫଳରେ ତା ଦାନ୍ତଗୁଡ଼ିକରେ ମଧ୍ୟ ପରିବର୍ତ୍ତନ ଘଟିଲା । ଏବେ ଘୋଡ଼ାର ଅଛି ପେଷା ଭଳି ଦାନ୍ତ । ସେଥିରେ ସେ ଛଣକୁ ପେଷି ଦେଇ ଭଲି ଗ୍ରେବାଇ ପାରେ ।

ଘୋଡ଼ାର ଏହିସବୁ ଅଙ୍ଗ ପ୍ରତ୍ୟଙ୍ଗ, ଖୁରା, ଦାନ୍ତ ଆଉ ବେକର ପରିବର୍ତ୍ତନ ପାଇଁ ଲଗିଥିଲା ପ୍ରାୟ ୫ କୋଟି ବର୍ଷ । ଏବଂ ଏହି ସମୟ କାଳ ମଧ୍ୟରେ ପୃଥିବୀ ପୃଷ୍ଠରୁ ଅନେକ ପ୍ରାଣୀ ଲୋପ ପାଇ ଯାଇଥିଲେ ।

ଏହା ସତ୍ତ୍ୱେ ବି, ସମୁଦ୍ରଠାରୁ ଭୂଖଣ୍ଡକୁ, ଜଙ୍ଗଲଠାରୁ ସମତଳ ଭୂମିକୁ ଅଲଗା କରି ରଖିଥିବା ପ୍ରତିବନ୍ଧକଗୁଡ଼ିକ କିନ୍ତୁ ସ୍ଥାୟୀ ନୁହନ୍ତି । ଅନେକ ସମୁଦ୍ର ଶୁଖିଗଲେ କିମ୍ବା ଭୂପୃଷ୍ଠକୁ ବନ୍ୟାରେ ପ୍ଲାବିତ କରି ଦେଲେ । ସମତଳ ଭୂମି ବି ମରୁଭୂମିରେ

ପରିଣତ ହେଲ । ସମୁଦ୍ରରେ ରହୁଥିବା ପ୍ରାଣୀମାନେ ଘୋଷାରି ହୋଇ ପଳେଇ ଆସିଲେ ଶୁଖିଲ ମାଟି ଉପରକୁ । ଜଙ୍ଗଲ ବାସିନ୍ଦାମାନେ ସମତଳରେ ଆସି ବାସ କଲେ । କିନ୍ତୁ, ଗୋଟିଏ ପ୍ରାଣୀ ପକ୍ଷରେ ନିଜର ଛୋଟ ଦୁନିଆଟିକୁ ପରିତ୍ୟାଗ କରିବା, ପରିବେଶ ସହିତ ତାକୁ ବାନ୍ଧି ରଖିଥିବା ଶୃଙ୍ଖଳକୁ ଛିଡ଼ାଇବା କେତେ କଷ୍ଟକର! ସେସବୁ ଶୃଙ୍ଖଳକୁ ଛିଡ଼ାଇଲା ପରେ ବି ସେ ମୁକ୍ତ ହୋଇ ପାରେ ନାହିଁ ।

ସେ ଗୋଟିଏ ଅଦେଖା ପଞ୍ଜୁରିରୁ ମୁକ୍ତି ପାଇ ଆଉ ଏକ ଅଦେଖା ପଞ୍ଜୁରିରେ ଯାଇ ପଶେ । ଘୋଡ଼ା ଯେତେବେଳେ ଜଙ୍ଗଲ ପରିତ୍ୟାଗ କରି ସମତଳରେ ବାସ କଲା, ସେ ଆଉ ଜଙ୍ଗଲର ବାସିନ୍ଦା ହେଲା ନାହିଁ । ସେ ହେଲା ସମତଳ ଭୂଇଁର ବାସିନ୍ଦା । କେତେକ ମାଛ ଥରେ ପାଣି ଛାଡ଼ି ଶୁଖିଲା ମାଟି ଉପରେ ଆସି ବାସ କଲା ପରେ ଆଉ ସମୁଦ୍ରକୁ ଫେରିଲେନି । ସେମିତି କରିଥିଲେ ପୁଣି ତାଙ୍କୁ ପରିବର୍ତ୍ତିତ ହେବାକୁ ପଡ଼ିଥାନ୍ତା । ଠିକ୍ ଏହି କଥାଟି ଘଟିଥିଲା କେତେକ ସ୍ଥଳଜୀବୀ ପ୍ରାଣୀମାନଙ୍କ କ୍ଷେତ୍ରରେ, ଯେଉଁମାନେ ସମୁଦ୍ରରେ ଯାଇ ବାସ କରିଥିଲେ । ସେମାନଙ୍କ ଗୋଡ଼ଗୁଡ଼ିକ ଡେଣାରେ ପରିଣତ ହୋଇଥିଲା । ଉଦାହରଣ ସ୍ୱରୂପ, ତିମିମାଛକୁ 'ମାଛ ଭଳି' ହେବାକୁ ପଡ଼ିଥିଲା । ଯେଉଁମାନେ ତିମିମାଛର ଉପରି କଥା ଜାଣନ୍ତି ନାହିଁ, ସେମାନେ ତାକୁ ମାଛ ବୋଲି ମନେ କରନ୍ତି । ପ୍ରକୃତରେ ସେ ହେଉଛି ଏକ ସ୍ତନ୍ୟପ୍ରାୟୀ ପ୍ରାଣୀ ।

## ମୁକ୍ତି ପଥରେ ମଣିଷ ।

ଆମ ଏହି ପୃଥିବୀରେ ପ୍ରାୟ ଦଶ ଲକ୍ଷ ଜାତିର ଜୀବଜନ୍ତୁ ଅଛନ୍ତି । ସେମାନେ ସମସ୍ତେ ନିଜ ନିଜ ଦୁନିଆରେ ଆତଯାତ ହୁଅନ୍ତି, ଯିଏ ଯେଉଁ ଦୁନିଆଟି ସହିତ ନିଜକୁ ଖାପ ଖୁଆଇ ନେଇଛି ।

ଯେଉଁଠି ଗୋଟିଏ ଜାତିର ଜୀବ ଦେଖିବାକୁ ପାଏ ଅଦୃଶ୍ୟ ଅକ୍ଷରରେ ଲେଖା "ପ୍ରବେଶ ନିଷେଧ", ଅନ୍ୟ ଏକ ଜାତିର ଜୀବ ଦେଖେ ଅଦୃଶ୍ୟ ଅକ୍ଷରରେ ଲେଖା "ସ୍ୱାଗତ" ।

ମେରୁ ଅଞ୍ଚଳରେ ରହୁଥିବା ଭାଲୁକୁ ଯଦି ଜଙ୍ଗଲ ଭିତରେ ଆଣି ଛାଡ଼ି ଦେବ, ତେବେ ତା'ର କ'ଣ ହେବ, ଟିକେ ଭାବତ! ସେ ଅଣନିଶ୍ୱାସୀ ହୋଇ ମରିଯିବ, କାରଣ ତା ଦେହରେ ଥିବା ମେରୁ ଅଞ୍ଚଳର ଶୀତ ସହିଲା ଭଳି ଲୋମବାଲା ମୋଟା ଚମଡ଼ାକୁ ସେ ବାହାର କରି ପାରିବ ନାହିଁ । ସେଇ ଭଳି ଗ୍ରୀଷ୍ମ ମଣ୍ଡଳର ବାସିନ୍ଦା

ହାତୀକୁ ଯଦି ମେରୁ ଅଞ୍ଚଳରେ ନେଇ ରଖି ଦେବ ସେ ଅସ୍ୱାଭାବିକ ଭାବେ ବରଫରେ ଜମାଟ ବାନ୍ଧି ଯାଇ ମରିଯିବ । କାରଣ ସେ ତ ଗରମ ପାଣିରେ ଗାଧୋଇବା ଜୀବ, ତା ଦେହରେ ଲୁମଲଗା ମୋଟା ଚମଡ଼ା ଦରକାର ପଡ଼େନା ।

ପୃଥିବୀରେ କେବଳ ଗୋଟିଏ ଜାଗା ଅଛି, ଯେଉଁଠି ମରୁ ଅଞ୍ଚଳର ଭାଲୁ ହେଉଛି ହାତୀର ପଡ଼ିଶା । ସେଠି ତମେ ପୃଥିବୀର ସବୁ ଅଞ୍ଚଳର ଜୀବଜନ୍ତୁଙ୍କୁ ଦେଖିବାକୁ ପାଇବ । ସେଠି ସମତଳର ଜୀବମାନେ ଜଙ୍ଗଲର ଜୀବମାନଙ୍କଠାରୁ ୪ ହାତ ଦୂରରେ ଏବଂ ସେମାନଙ୍କ ପାଖକୁ ଲାଗି ପର୍ବତରେ ରହୁଥିବା ଜୀବଜନ୍ତୁମାନେ ରହୁଛନ୍ତି ।

ସେ ଜାଗାଟିର ନାମ ହେଉଛି ଚିଡ଼ିଆଖାନା ।

ଚିଡ଼ିଆଖାନାରେ ଦକ୍ଷିଣ ଆଫ୍ରିକା ପାଖରେ ଦେଖିବ ଅଷ୍ଟ୍ରେଲିଆକୁ । ଅଷ୍ଟ୍ରେଲିଆର କେଇ ହାତ ଦୂରରେ ଆମେରିକାକୁ । ପୃଥିବୀର ସ୍ୱରି ଆଡ଼ୁ ଜୀବଜନ୍ତୁଙ୍କୁ ଆଣି ସେଠାରେ ଠୁଳ କରାଯାଇଛି । କେହି ସେଠିକି କିନ୍ତୁ ଇଛା କରି ଆସିନି । ମଣିଷ ହିଁ ସେମାନଙ୍କୁ ଏକଜୁଟ କରିଛି ସେଠି ।

ସେ ସମସ୍ତଙ୍କୁ ଖୁସିରେ ରଖିବା ଯେ କେତେ କଷ୍ଟକର ଟିକେ ଚିନ୍ତା କରତ ! ପ୍ରତିଟି ଜୀବ ତା'ର ଛୋଟ ଦୁନିଆଟିରେ ରହିବାକୁ ଅଭ୍ୟସ୍ତ । ତେଣୁ ପ୍ରତ୍ୟେକଙ୍କ ପାଇଁ ସେମାନଙ୍କ ଛୋଟ ଦୁନିଆ ଭଳି ଅବସ୍ଥା ମଣିଷକୁ ଯୋଗାଇ ଦେବାକୁ ପଡ଼େ ।

ସମୁଦ୍ରରେ ଯାହାର ରହିବାର ଅଭ୍ୟାସ ତା ପାଇଁ ପୋଖରୀଟିଏ ଏବଂ ଯିଏ ମରୁଭୂମିରେ ରହେ ତା ପାଇଁ ବାଲିରେ ମରୁଭୂମି ଖଣ୍ଡେ ତିଆରି ହୋଇଛି ।



ଧଳା ଭାଲୁର ହାତୀ ସହିତ ଦେଖା କେବଳ ଚିଡ଼ିଆଖାନାରେ ।

ସେମାନଙ୍କୁ ଠିକ୍ ଭାବେ ଖାଇବା ପିଇବାକୁ ଦେବାକୁ ହୁଏ । କେହି ଯେମିତି କାହାକୁ ଖାଇ ନ ଯାଆନ୍ତି, ତା'ର ବ୍ୟବସ୍ଥା ହୋଇଛି । ମେରୁ ଭାଲୁର ଦରକାର ବରଫ ପାଣିରେ ଗାଧୋଇବା, ମାଙ୍କଡ଼ର ଦରକାର ଉଷ୍ଣତା । ସିଂହର ପ୍ରତିଦିନ କଞ୍ଚା ମାଂସ ନହେଲେ ନଚଳେ, ବାଜପକ୍ଷୀ ପାଇଁ ଡେଣା ମେଲଇବା ନିମିତ୍ତ ଜାଗା ଦରକାର ।

ମଣିଷ କୃତ୍ରିମ ଭାବେ ସମତଳ ଭୂମି, ଜଙ୍ଗଲ, ପର୍ବତ, ମରୁଭୂମି ଏବଂ ସମୁଦ୍ରର ପ୍ରାଣୀମାନଙ୍କୁ ଗୋଟିଏ ସ୍ଥାନରେ ଏକତ୍ର କରିଲେ ବେଳେ ସେମାନେ ଯେପରି ମରି ନଯାଆନ୍ତି ସେଥି ପାଇଁ କୃତ୍ରିମ ପରିବେଶ ଯୋଗାଇ ଦେଇଥାଏ ।

ତୁମେମାନେ ପଚାରି ପାର ମଣିଷ ନିଜେ କିଭଳି ଜୀବ : ସମତଳ ଭୂମିର ନା ଜଙ୍ଗଲର ବା ପର୍ବତର ?

ଯେଉଁ ମଣିଷ ଜଙ୍ଗଲରେ ରହେ ତାକୁ କ'ଣ ଜଙ୍ଗଲୀ ମଣିଷ ବୋଲି କହନ୍ତି ? ଆଉ ଯିଏ ଜଳାଭୂମିରେ ରହେ, ତାକୁ କ'ଣ "ପାଣି ମଣିଷ" ବୋଲି କୁହାଯାଏ ?

ନିଶ୍ଚୟ ତା ନୁହେଁ ।

କାରଣ ଯେଉଁ ମଣିଷ ଜଙ୍ଗଲରେ ରହେ ସେ ପୁଣି ସମତଳ ଭୂମିରେ ରହି ପାରେ । ଆଉ ଯିଏ ଜଳାଭୂମିରେ ରହେ ତାକୁ ଶୁଖିଲା ଜାଗାରେ ରହିବାକୁ କହିଲେ ସେ ଖୁସିରେ ଚାଲି ଆସେ ।

ମଣିଷ ସବୁ ସ୍ଥାନରେ ରହି ପାରେ । ପୃଥିବୀ ପୃଷ୍ଠରେ ଏପରି କୌଣସି ସ୍ଥାନ ନାହିଁ, ଯେଉଁଠି ତା ପାଇଁ ଅଦୃଶ୍ୟ ଅକ୍ଷରରେ ଲେଖା ହୋଇଛି : "ମଣିଷ ପାଇଁ ପ୍ରବେଶ ନିଷେଧ !" ମେରୁ ଅଞ୍ଚଳ ଆବିଷ୍କାରକାରୀମାନେ ବରଫ ଭେଳା ଉପରେ ବାସ କରନ୍ତି । ସେମାନଙ୍କୁ ଯଦି ଅବିଳମ୍ବେ ଅତି ଉତପ୍ତ ମରୁଭୂମିକୁ ଯିବା ପାଇଁ କୁହାଯାଏ, ସେମାନେ ଅକ୍ଳେଶରେ ଯାଇ ପାରିବେ ।

କୌଣସି ଲୋକ ଯଦି ତୃଣଭୂଇଁରୁ ଯାଇ ଜଙ୍ଗଲରେ ରହେ, କିମ୍ବା ଜଙ୍ଗଲରୁ ଯାଇ ସମତଳ ଭୂଇଁରେ ରହେ ସେଥି ପାଇଁ ତାକୁ ତା'ର ଗୋଡ଼, ହାତ ଏବଂ ଦାନ୍ତକୁ ବଦଳେଇବାକୁ ପଡ଼େନା । ସେଇ ଭଳି ତା ଦେହ ମୋଟା ବହଳ ଲୋମରେ ଆବୃତ ନୁହଁ ବୋଲି ସେ ଦକ୍ଷିଣ ମେରୁକୁ ଗଲେ ମଧ୍ୟ ମରିଯିବ ନାହିଁ ।

ଜନ୍ତୁମାନଙ୍କୁ ସେମାନଙ୍କ ଲୋମ ଥିବା ମୋଟା ଚମଡ଼ା ଯେମିତି ଶୀତରୁ ରକ୍ଷା କରେ, ମଣିଷ ଗୋଟେ ଲୋମକୋଟ୍ ଏବଂ ବୁଟ୍ ଜୋତା ପିନ୍ଧି ନିଜକୁ ରକ୍ଷା କରି ପାରେ ।

ଘୋଡ଼ାଠାରୁ ଆହୁରି ଅନେକ ଦ୍ରୁତ ଗତିରେ ଯିବାକୁ ମଣିଷ ଶିଖିଛି, କିନ୍ତୁ ସେଥି ପାଇଁ ତା ପାଦରୁ ଗୋଟିଏ ହେଲେ ଆଙ୍ଗୁଳି ତାକୁ ହରେଇବାକୁ ପଡ଼ିନି ।

ମଣିଷ ମାଛ ଅପେକ୍ଷା ଆହୁରି ଶୀଘ୍ର ପାଣିରେ ପହଁରି ଜାଣିଛି, ସେଥି ପାଇଁ ତାକୁ ତା'ର ଗୋଡ଼ ଆଉ ହାତ ବଦଳରେ ଡେଣା ଲଗାଇବାକୁ ପଡ଼ିନି ।

ସରୀସୃପମାନଙ୍କୁ ପକ୍ଷୀ ହେବା ପାଇଁ କୋଟି କୋଟି ବର୍ଷ ଲଗିଥିଲା । ଏହି ପରିବର୍ତ୍ତନ ପାଇଁ ସେମାନଙ୍କୁ ଅନେକ ମୂଲ୍ୟ ଦେବାକୁ ପଡ଼ିଥିଲା – ସେମାନଙ୍କ ଆଗ ଥାବାଗୁଡ଼ିକୁ ହରାଇବାକୁ ହେଲା । ଥାବା ଦୁଇଟି ପରିଣତ ହୋଇ ଥିଲା ଦୁଇଟି ଡେଣାରେ । ମଣିଷକୁ କିନ୍ତୁ ଉଡ଼ିବା ପାଇଁ ଲଗି ଥିଲା ମାତ୍ର ଶହେ ବର୍ଷ, ସେଥି ପାଇଁ ତାକୁ ତା'ର ହାତକୁ ହରାଇବାକୁ ପଡ଼ିନି ।

ଯେଉଁସବୁ ଅଦେଖା ପାଚିରୀ ଜୀବଜନ୍ତୁଙ୍କୁ କଇଦୀ କରି ରଖିଛି ସେସବୁକୁ ପାରି ହେବା ପାଇଁ ମଣିଷକୁ କିଛି ବଦଳେଇବାକୁ ପଡ଼େନା ।

ଯେଉଁଠି ନିଶ୍ୱାସ ନେବା ପାଇଁ ବାୟୁ ନାହିଁ ସେଠିକି ବି ମଣିଷ ଉଡ଼ି ଯାଇ ପାରେ ଏବଂ ପୁଣି ଅତୁଟ ସ୍ୱାସ୍ଥ୍ୟରେ ପୃଥିବୀକୁ ଫେରି ଆସେ ।

ସୋଭିଏତ୍ ମହାକାଶଯାତ୍ରୀମାନେ ପୂର୍ବବର୍ତ୍ତୀ ସମସ୍ତ ରେକର୍ଡ ଭଙ୍ଗ କରି ସର୍ବୋଚ୍ଚ ସ୍ଥାନକୁ ଉଠିଗଲେ, ସେମାନେ ଜୀବନର ସାଧାରଣ ମଥାନକୁ ଉପରକୁ ଉଠାଇ ଦେଲେ । ଜୀବଜନ୍ତୁ ପ୍ରାଣୀ ବାସ କରୁଥିବା ଦୁନିଆର ସୀମାକୁ ସେମାନେ ଟପି ଗଲେ ।

ଜନ୍ତୁ ଜାନୁଆର ଏବଂ ପକ୍ଷୀମାନେ ପ୍ରକୃତି ଉପରେ ସଂପୂର୍ଣ୍ଣ ନିର୍ଭରଶୀଳ । ଗଣିତରେ କୌଣସି ପ୍ରଶ୍ନର ଉତ୍ତର ସେ ପ୍ରଶ୍ନର ସର୍ତ୍ତ ଉପରେ ନିର୍ଭର କରେ । ପ୍ରକୃତିରେ ତାହାହିଁ ଘଟିଥାଏ । ପ୍ରତ୍ୟେକଟି ପ୍ରାଣୀ ହେଉଛି ଗୋଟିଏ ଗୋଟିଏ ପ୍ରଶ୍ନ, ସେ ପ୍ରଶ୍ନର ଉତ୍ତର ଜୀବନ ହିଁ ସମାଧାନ କରିଥାଏ । ସେସବୁ ପ୍ରଶ୍ନର ସର୍ତ୍ତ ହେଉଛି ନିର୍ଦ୍ଦିଷ୍ଟ ଜନ୍ତୁଟିର ଆବଶ୍ୟକୀୟ ଜୀବନ ଧାରଣର ଅବସ୍ଥା । କିନ୍ତୁ ପ୍ରଶ୍ନର ଉତ୍ତରଟା ହେଉଛି ଲମ୍ୱା – ନଖ, ଗୋଡ଼, ଡେଣା, ଅଣ୍ଡ, ଥାବା, ଅଭ୍ୟାସ, ବୈଶିଷ୍ଟ୍ୟ । ଉତ୍ତରଟା ନିର୍ଭର କରେ କେଉଁଠି ଏବଂ କେମିତି ସେ ପ୍ରାଣୀଟି ବାସ କରେ : ଲୁଣି ପାଣିରେ କି ସ୍ୱଚ୍ଛ ପାଣିରେ, ସ୍ଥଳ ଭାଗରେ କି ସମୁଦ୍ର କୂଳରେ ବା ସମୁଦ୍ର ଭିତରେ, ମହାସାଗରର ତଳ ଦେଶରେ କି ଉପରିଭାଗର ଠିକ୍ ତଳେ, ଉତ୍ତରରେ କି ଦକ୍ଷିଣରେ, ପର୍ବତ ଉପରେ କି ଉପତ୍ୟକାରେ, ପୃଥିବୀ ପୃଷ୍ଠରେ କି ଅଭ୍ୟନ୍ତରରେ, ତୃଣ ଭୂମିରେ କି ଜଙ୍ଗଲରେ ।

ଜୀବମାନେ ସଂପୂର୍ଣ୍ଣ ରୂପେ ପାରିପାର୍ଶ୍ୱିକ ଅବସ୍ଥା ଉପରେ ନିର୍ଭର କରନ୍ତି ।

ମଣିଷ କିନ୍ତୁ ତାକୁ ଖାପ ଖାଇଲା ଭଳି ପରିବେଶ ସୃଷ୍ଟି କରେ । ସେ ଅଧିକରୁ ଅଧିକ ପ୍ରକୃତି ହାତରୁ ତା'ର ସେ ସର୍ତ୍ତ ଲେଖା ବହିଟିକୁ ଛଡ଼େଇ ଆଣି ସେଇ ସବୁ ସର୍ତ୍ତକୁ କାଟି ଦେଉଛି, ଯେଉଁଗୁଡ଼ିକ ତାକୁ ଭଲ ଲାଗେ ନାହିଁ ।

ପ୍ରକୃତିର ବହିରେ ଲେଖା ଅଛି : "ମରୁଭୂମିରେ ପାଣି ନଥାଏ ।" ମଣିଷ ଏହି କଥାଟିକୁ କାଟି ଦିଏ, ଯେତେବେଳେ ମରୁଭୂମିରେ କେନାଲ ଖୋଳି ତାକୁ ଶସ୍ୟଶ୍ୟାମଳା କରେ ।

ପ୍ରକୃତି ବହିରେ ଲେଖା ଅଛି : "ଉତ୍ତରାଞ୍ଚଳର ମୃତ୍ତିକା ଅନୁର୍ବର ।" ମଣିଷ ତାକୁ ବଦଳେଇ ଦିଏ ସାର ପ୍ରୟୋଗ କରି । ବହୁ ବର୍ଷ ପର୍ଯ୍ୟନ୍ତ ବଞ୍ଚୁଥିବା ଖାଦ୍ୟୋପଯୋଗୀ ତୃଣ ଏବଂ ଶିମ୍ବଜାତୀୟ ଗଛ ଲଗେଇ ସେ ଭୂଇଁକୁ ଆମେ ଉର୍ବର କରିଥାଏଁ ।

ପ୍ରକୃତି ବହିରେ ଲେଖା ଅଛି : "ଶୀତ ଋତୁରେ ଥଣ୍ଡା ହୁଏ ଏବଂ ରାତିରେ ସବୁ କିଛିକୁ ଅନ୍ଧାର ଢାଙ୍କି ପକାଏ ।"

ମଣିଷ ଏ କଥାକୁ ଭ୍ରୂକ୍ଷେପ ନକରି ତା ଘରକୁ ଉଷୁମ ରଖେ ଏବଂ ରାତିକୁ ଆଲୋକମୟ କରିଦିଏ ।

ଆମେ ଅବିରାମ ଆମ ପାରିପାର୍ଶ୍ୱିକ ଅବସ୍ଥାକୁ ବଦଳେଇବାରେ ଲାଗିଛେ ।

ଆମ ଚତୁର୍ପାର୍ଶ୍ୱରେ ରହିଥିବା ଜଙ୍ଗଲସବୁ ପ୍ରଥମେ ଯେମିତି ଥିଲେ ସେଭଳି ଆଉ ନାହାନ୍ତି । ନୂଆ ନୂଆ ଗଛସବୁ ସେଠାରେ ଲଗା ଯାଇଛି ବା ଗଛବୃଛକୁ କାଟି ଜଙ୍ଗଲକୁ ସଫା କରି ଦିଆଯାଇଛି ।

ସୋଭିଏତ୍ ୟୁନିଅନ୍‌ର ସେ ନିର୍ଜନ ଉଦାସ ଷ୍ଟେପ୍ ଅଞ୍ଚଳ ଆଉ ନାହିଁ । ମଣିଷ ଆଜି ତାକୁ ଚାଷ କରି ଶସ୍ୟ ଉତ୍ପାଦନ କରୁଛି ।

ଆମର ଗଛବୃଛ, ଯଅ, ଗହମ, ଆମର ଆପେଲ ଆଉ ନାଶପାତି ଗଛସବୁ ପୂର୍ବର ସେହି ବଣୁଆ ଘାସ, ଫଳ ଭଳି ଏବେ ଦିଶେ ନାହିଁ, ଯିଏକି ଏକଦା ବଣରେ ଜନ୍ମ ନେଇଥିଲା ।

ଆମେ ଏବେ ଯେଉଁ "ଆପେଲଆଦି" ଆଉ "ମହୁଆ-ଆତ" ଖାଆନ୍ତି, ସେସବୁକୁ ତୁମେ କ'ଣ ପ୍ରାକୃତିକ ଜଙ୍ଗଲରେ ପାଇବ ? ଅଥବା ଅଧା ମିଠା ଚେରି ବା ଅଧା ବାର୍ଡଚେରି ଭଳି ଫଳ କ'ଣ ପ୍ରକୃତିରେ ମିଳେ ? ତା'ଛଡ଼ା, ବିଖ୍ୟାତ ରୁଷ୍ ବିଜ୍ଞାନୀ ଏବଂ କୃଷି ବିଶେଷଜ୍ଞ ଇଭାନ୍ ମିଚୁରିନ୍ ଯେଉଁସବୁ ଆଶ୍ଚର୍ଯ୍ୟ ରକମର ଫଳ ସୃଷ୍ଟି କରିଥିଲେ, ସେସବୁକୁ ବି ଜଙ୍ଗଲରେ ପାଇବ ନାହିଁ ।

ମିଚୁରିନ୍‌ଙ୍କ ଶିକ୍ଷାକୁ ଅନୁସରଣ କରି ଅନ୍ୟାନ୍ୟ ବିଜ୍ଞାନୀମାନେ ପ୍ରତ୍ୟକ୍ଷ ଭାବେ

ପ୍ରକୃତିର ପରିବର୍ତ୍ତନଶୀଳତା, ବଂଶାନୁଗତତା ଏବଂ ନିର୍ବାଚନକୁ ମଣିଷର ଉପକାର ଦିଗରେ ପରିଚାଳନା କରୁଛନ୍ତି ।

ଆଜିକାଲି ଆମର ଘୋଡ଼ା, ଗାଈ ଏବଂ ମେଣ୍ଢାମାନଙ୍କ ଭଳି ଗୃହପାଳିତ ପଶୁମାନେ ଆଉ ବଣ୍ୟ ହୋଇ ପାରିବେ ନାହିଁ । ମଣିଷ ସେମାନଙ୍କୁ ଲାଳନ ପାଳନ କରୁଛି, ବଢ଼ାଉଛି ।

ଅନେକ ସମୟରେ ମଣିଷ ବଣୁଆ ପଶୁଙ୍କର ଜୀବନର ଧାରାକୁ ପରିବର୍ତ୍ତନ କରି ଦେଇଥାଏ । କେତେକଙ୍କୁ ସେମାନଙ୍କ ଖାଦ୍ୟପେୟ ପାଇଁ ମଣିଷର ବାସ ସ୍ଥାନର ଅତି ନିକଟରେ ରଖା ଯାଇଛି । ଆଉ କେତେକ ନିଜକୁ ରକ୍ଷା କରିବା ପାଇଁ ମଣିଷଠାରୁ ଅନେକ ଦୂରକୁ, ଜଙ୍ଗଲକୁ ଫେରି ଯାଇଛନ୍ତି । ମଣିଷର ଆବିର୍ଭାବ ହେବା ପୂର୍ବରୁ ସେମାନଙ୍କ ପୂର୍ବପୁରୁଷମାନେ ସେଠାରେ କେବେ ବାସ କରୁ ନଥିଲେ ।

ସମୟ ଆସିବ, ପ୍ରକୃତ ଜଙ୍ଗଲ କ'ଣ ଦେଖିବା ପାଇଁ ତାକୁ ବିଶେଷ ସଂରକ୍ଷିତ ଜଙ୍ଗଲକୁ ଯିବାକୁ ପଡ଼ିବ । କାରଣ, ମଣିଷ ଏ ପୃଥିବୀ ପୃଷ୍ଠକୁ ବଦଳେଇ ଦେଉଛି ।

ଆମେ ଯେତେବେଳେ ସେଇ ସବୁ ସଂରକ୍ଷିତ ଜଙ୍ଗଲର ସୀମାରେଖାକୁ ଟାଣିବା, ଆମେ ପ୍ରକୃତିକୁ କହିବା : "ତୁ କେବଳ ଏଇଠି ରାଣୀ ହୋଇ ରାଜତ୍ୱ କର, ଏହାର ବାହାରକୁ ଆଉ ଯାଆନା ।"

କାରଣ, ମଣିଷ ପ୍ରକୃତି ଉପରେ ଅଧିକରୁ ଅଧିକ ଆଧିପତ୍ୟ ବିସ୍ତାର କରି ଚାଲିଛି ।

କିନ୍ତୁ ସବୁବେଳେ ଏମିତି ନଥିଲା ।

ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନେ ପୃଥିବୀର ଅନ୍ୟାନ୍ୟ ଜୀବଜନ୍ତୁଙ୍କ ଭଳି ପ୍ରକୃତିର ଦାସ ଥିଲେ ।

## ଆମର ପୂର୍ବପୁରୁଷଙ୍କ ସହିତ ଦେଖା ।

କୋଟି କୋଟି ବର୍ଷ ଆଗେ ଯେଉଁସବୁ ଜଙ୍ଗଲ ଥିଲା ଆଜିକାଲି ସେସବୁ ନାହିଁ । ସେତେବେଳର ଜଙ୍ଗଲରେ ଯେଉଁସବୁ ଗଛଲତା ଥିଲା ଏବଂ ସେଥିରେ ଯେଉଁସବୁ ପଶୁ ପକ୍ଷୀ ରହୁଥିଲେ, ସେସବୁ ଏବେକାର ବଣ ଜଙ୍ଗଲରେ ନାହାନ୍ତି ।

ସେଇସବୁ ପ୍ରାଗୈତିହାସିକ ଯୁଗର ଜଙ୍ଗଲରେ ବାର୍ଚ୍ଚ, ଲିଣ୍ଡେନ୍ ଏବଂ

ମାପ୍ଲ୍ ଗଛ ସବୁକୁ ଲଗି ମିର୍‌ଟିଲସ୍, ଲରେଲ ଏବଂ ମାଗ୍‌ନୋଲିଆ ଗଛସବୁ ବଢ଼ୁଥିଲେ । ଅଙ୍ଗୁର ଲତା ସବୁ କୋଳି ଗଛରେ ଲଟେଇ ଲଟେଇ ମାଡ଼ୁଥିଲେ ଏବଂ ଉଇଲେ ଗଛର ପଡ଼ିଶା ଥିଲେ କାମ୍ଫୋର ମିଠା ଗମ୍ ଗଛସବୁ ।

ସେତେବେଳର ଜଙ୍ଗଲରେ ଏତେ ବିରାଟ ବିରାଟ ଗଛ ଥିଲେ ଯେ, ଆଜିକାଲି ଯେଉଁ ବଡ଼ ବଡ଼ ଓକ୍ ଗଛସବୁ ଦେଖୁଛ, ସେସବୁ ସେମାନଙ୍କ ପାଖରେ ବାମନ ଭଳି ଦେଖା ଯାଉଥିଲେ ।

ଆଜିକାଲିର ବଣକୁ ଯଦି ଏକ ଘର ସହିତ ତୁଳନା କରିବ, ତେବେ ସେତେବେଳର ବଣ ସବୁ ଥିଲେ ଆକାଶଛୁଆଁ ଅଟ୍ଟାଳିକା ଭଳି ।

ସେଇସବୁ "ଆକାଶଛୁଆଁ ଅଟ୍ଟାଳିକା"ର ଉପର ମହଲ ଥିଲା ଆଲୋକମୟ ଏବଂ ଶବ୍ଦମୁଖର । ବଡ଼ ବଡ଼ ଫୁଲ ପେଣ୍ଡା ମଧ୍ୟରେ ନାନା ରଙ୍ଗର ସୁନ୍ଦର ପକ୍ଷୀସବୁ ଉଡ଼ି ଉଡ଼ି, ଡେଇଁ ଡେଇଁ, ଗୀତ ଗାଇ ଗାଇ ସମସ୍ତ ଜଙ୍ଗଲକୁ ଉଚ୍ଛୁଳାଇ ଦେଉଥିଲେ । ଗଛ ଡାଳରେ ଦୋଳି ଖେଳୁଥିଲେ ବାନର ପଲ ସବୁ ।

ତୁମେ ଦେଖିଥିବ, ନଈ ପାର ହେଲା ପରି ବାନର ଦଳ ସବୁ କେମିତି ଏଡାଳରୁ ସେଡାଳକୁ ଡେଇଁ ଡେଇଁ ଯାଆନ୍ତି । ମାମାନେ ପାଟିରେ ଫଳମୂଳ ଗ୍ରେବାଇ ବୁକୁ ଉପରେ ଜାକି ଧରିଥିବା ଛୁଆମାନଙ୍କୁ ଖୁଆନ୍ତି । ବଡ଼ ବଡ଼ ଛୁଆମାନେ ମା'ର ଗୋଡ଼କୁ ଧରି ଝୁଲୁଥାନ୍ତି । ଦଳର ମୁଖିଆ, ଅଧିକ ବଳୁଆ ଅନନ୍ତାଟା ଆଗରେ ଡିପେଇ ଡିପେଇ ଗ୍ଲେ ଏବଂ ଆଉସବୁ ଦଳବଳ ତା'ର ପଛେ ପଛେ ଗ୍ଲନ୍ତି ।

ଏହିସବୁ ବାନର ତେବେ କେଉଁ ଜାତିର ? ତୁମେମାନେ ଆଜିକାଲି ସେଭଳି ବାନରଙ୍କୁ ଚିଡ଼ିଆଖାନାରେ ଦେଖିବାକୁ ପାଇବନି ।

ଏହି ଧରଣର ବାନର ହେଉଛନ୍ତି ମଣିଷ, ଶିଂପାଞ୍ଜି ଏବଂ ଗରିଲା ପ୍ରଭୃତିଙ୍କର ପୂର୍ବପୁରୁଷ, ସେମାନଙ୍କଠୁଁ ଉପରି । ଆମେ ଏବେ ଆମର ସେହି ପ୍ରାଗୈତିହାସିକ ଯୁଗର ଜଙ୍ଗଲର ପୂର୍ବପୁରୁଷମାନଙ୍କୁ ଭେଟିବା ।

ସେମାନେ ସମସ୍ତେ ବଣର ଉପର ମହଲରେ ରହୁଥିଲେ । ଏ ଗଛରୁ ସେ ଗଛକୁ, ମାଟିଠାରୁ ଅନେକ ଉପରେ ସେମାନେ ଯିବା ଆସିବା କରୁଥିଲେ । ଡାଳଗୁଡ଼ାକ ତାଙ୍କୁ ଲାଗୁଥିଲା ପୋଲ, ଅଳିନ୍ଦ ବା ଗ୍ୟାଲେରି ଭଳି ।

ଜଙ୍ଗଲ ଥିଲା ସେମାନଙ୍କର ଘର । ଗଛ ଡାଳରେ ବାନ୍ଧିଥିବା ବଡ଼ ବଡ଼ ବସାରେ ସେମାନେ ଏକାଠି ରାତି ପୁହାଉଥିଲେ ।

ଜଙ୍ଗଲ ଥିଲା ସେମାନଙ୍କର ଦୁର୍ଗ ଭଳି । ସେଇ ଦୁର୍ଗର ଉପରି ଦେଶରେ, ଗଛ ଉପରେ ସେମାନେ ନିଜକୁ ଲୁଚାଇ ରଖୁଥିଲେ ସେମାନଙ୍କର ସବୁଠାରୁ ବଡ଼ ଶତ୍ରୁ, ଖଣ୍ଡାଦାନ୍ତିଆ ବାଘ କବଳରୁ ।

ଜଙ୍ଗଲ ଥିଲା ସେମାନଙ୍କର ଭଣ୍ଡାର ଘର । ଗଛସବୁର ଉପର ଡାଳମାନଙ୍କରେ ଝୁଲୁଥିବା ଫଳ ଏବଂ କୋଳି ଖାଇ ସେମାନେ ବଞ୍ଚୁଥିଲେ ।

ଜଙ୍ଗଲର ଛାତ ତଳେ ରହୁଥିବାରୁ ସେମାନେ ଜାଣିଥିଲେ ଗୋଟିଏ ଡାଳରୁ ଅନ୍ୟ ଡାଳକୁ କେମିତି ଝୁଲି ଝୁଲି ଯିବାକୁ ପଡ଼େ, ଗଛର ଗଣ୍ଡିକୁ ଧରି କିପରି ଚଢ଼ିବାକୁ ଆଉ ଓହ୍ଲାଇବାକୁ ହୁଏ । ଫଳ ତୋଳିବା ଏବଂ ମଞ୍ଜିକୁ ଫଟେଇ ଖସା ବାହାର କରିବାର ଉପାୟ ତାଙ୍କୁ ଜଣାଥିଲା । ସେଥି ପାଇଁ ସେମାନଙ୍କର ଥିଲା କ୍ଷିପ୍ର ଆଙ୍ଗୁଳି, ତୀକ୍ଷ୍ଣ ଆଖି ଆଉ ଶକ୍ତ ଦାନ୍ତ ।

ଆମର ଏହିସବୁ ପୂର୍ବପୁରୁଷମାନଙ୍କୁ ବଣର ବହୁ ଶୃଙ୍ଖଳ, କେବଳ ବଣର ନୁହେଁ, ସେଇ ଉପର ମହଲର ବହୁ ଶୃଙ୍ଖଳ ବାନ୍ଧି ରଖିଥିଲା । ତା ହେଲେ, ମଣିଷ ସେସବୁ ଶୃଙ୍ଖଳକୁ ଭାଙ୍ଗିଲା କିପରି ? କେବଳ ସେତିକି ନୁହେଁ, ବଣର ସେଇ ଜୀବମାନେ ସେମାନଙ୍କ ପଞ୍ଜୁରି ଛାଡ଼ି ସେମାନଙ୍କ ଘରର ପାଚିରୀ ବାହାରକୁ ଯିବାକୁ ସାହସ କଲେ କିପରି ?

# ଦ୍ୱିତୀୟ ଅଧ୍ୟାୟ

---

## ଆମ ନାୟକଙ୍କ ଗୋଷମା ଆଉ ଭାଇ ବିରାଦରଗଣ ।

ପୂର୍ବେ ଲେଖକମାନେ କୌଣସି ନାୟକର ଜୀବନୀ ଏବଂ ଦିଗ୍‌ବିଜୟ ବିଷୟରେ ଲେଖିବାକୁ ଗଲବେଳେ ସେ ବହିର ପ୍ରଥମ କେତୋଟି ଅଧ୍ୟାୟରେ ତା'ର ଆତ୍ମୀୟ କୁଟୁମ୍ବଙ୍କ ପୂର୍ବପୁରୁଷଙ୍କ ସଂପର୍କରେ ବିଶଦ ବର୍ଣ୍ଣନା ଦେଉଥିଲେ ।

ବହିର କେତୋଟି ପୃଷ୍ଠା ପଢ଼ିଲ ପରେ ପାଠକ ଜାଣି ପାରୁଥିଲେ, ନାୟକର ଗୋଷମା ତରୁଣୀ ଥିଲ ବେଳେ କେତେ ସୁନ୍ଦର ଗାଉନ ପିନ୍ଧୁଥିଲେ, ତା'ର ବିବାହର ମଙ୍ଗଳ ପାକ ଦିନ ତା ମା କି ସ୍ୱପ୍ନସବୁ ଦେଖୁଥିଲେ । ତା'ପରେ ଆରମ୍ଭ ହେଉଥିଲ ନାୟକଙ୍କ ବିଷୟରେ ବର୍ଣ୍ଣନା — ସେ କେମିତି ଜନ୍ମ ହେଲେ, ତାଙ୍କର ପ୍ରଥମ ଦାନ୍ତ ଉଠିଲ, ପ୍ରଥମ କିପରି କଥା କହିଲେ ଏବଂ କେମିତି ଚାଲିବାକୁ ଶିଖିଲେ, ଆଦି । ତା'ପରେ ଦଶଟା ଖଣ୍ଡ ଅଧ୍ୟାୟ ପରେ ଆରମ୍ଭ ହେଉଥିଲ ସେ କେମିତି ପାଠଶାଳାକୁ ଗଲେ । ପୁସ୍ତକର ଦ୍ୱିତୀୟ ଭାଗର ଶେଷରେ ନାୟକ ପ୍ରେମରେ ପଡ଼ୁଥିଲେ । ତୃତୀୟ ଖଣ୍ଡରେ, ବହୁ ଦୁଃସାହସିକ ଅଭିଯାନ ପରେ ନାୟକ ଶେଷକୁ ନାୟିକାଙ୍କର ପାଣିଗ୍ରହଣ କରୁଥିଲେ । କାହାଣୀଟି ସାଧାରଣତଃ ଶେଷ ହେଉଥିଲ ଏକ ଉପସଂହାର ଦେଇ । ସେତେବେଳକୁ ନାୟକ ବୃଦ୍ଧ ହୋଇ ଯାଇଥାନ୍ତି । ସିଏ ଏବଂ ତାଙ୍କର ପକ୍ୱକେଶୀ ସହଧର୍ମିଣୀ ସ୍ନେହଭରା ଦୃଷ୍ଟିରେ ଚାହିଁ ରହିଥାନ୍ତି ସେମାନଙ୍କର ଗୁଲୁଗୁଲିଆ ନାତିର ପ୍ରଥମ ଟଳମଳିଆ ଚାଲିକୁ ।

ଆମେ ମଧ୍ୟ ଏଠାରେ ମଣିଷ ବିଷୟ କହିବା ପୂର୍ବରୁ ତା'ର ଜୀବନୀ ଏବଂ ଦୁଃସାହସିକ କାର୍ଯ୍ୟକର୍ମ ବିଷୟରେ ବର୍ଣ୍ଣନା କରିବୁ । ତମର ସେହି ବିଖ୍ୟାତ ଔପନ୍ୟାସିକ ଯେମିତି ଲେଖିଥିଲେ ସେଇମିତି ଆମ ନାୟକଙ୍କର ପ୍ରାଚୀନ ପୂର୍ବପୁରୁଷ, ତା'ର ପରିବାର, ଜ୍ଞାତି କୁଟୁମ୍ବଙ୍କ ସଂପର୍କରେ କହିବୁ । ସେ ପ୍ରଥମେ କିପରି ପୃଥିବୀକୁ ଆସିଲ, ଚାଲି ଶିଖିଲ, କଥା କହିବାକୁ, ଭାବିବାକୁ ଏବଂ ସଂଗ୍ରାମ କରିବାକୁ ଶିଖିଲ — ତା'ର ସୁଖ ଦୁଃଖ ଆଉ ଜୟ ପରାଜୟ ବିଷୟରେ ବର୍ଣ୍ଣନା କରିବୁ । କିନ୍ତୁ ଆରମ୍ଭରୁ କହି ଦେବା ଦରକାର ଯେ, ବିଷୟଟା ବଡ଼ କଠିନ ।

ଆମ ନାୟକଙ୍କର "ଗୋଷମା"ଙ୍କ ବର୍ଣ୍ଣନାଟା ଆମେ କିପରି କରିବୁ ? ସେ "ଗୋଷମା" ହେଉଛି ସେଇ "ବୁଢ଼ୀ ବାନର", ଯିଏକି ଆମ ମଣିଷ ଜାତିର ଜନ୍ମଦାତ୍ରୀ । କୋଟି କୋଟି ବର୍ଷ ପୂର୍ବେ ସେ ମରି ଯାଇଛି, ତା ସଂପର୍କରେ ଆମେ ଏବେ କେମିତି ବର୍ଣ୍ଣନା କରିବୁ ? ତା'ର କୌଣସି ଚିତ୍ର ବି ଆମ ପାଖରେ ନାହିଁ, କି କେହି ମଧ୍ୟ ସେ ଚିତ୍ର ଆଙ୍କି ପାରିବ ନାହିଁ । ପୂର୍ବ ଅଧ୍ୟାୟରେ ବର୍ଣ୍ଣିତ ଆମର ସେହି ପ୍ରାଗୈତିହାସିକ ପୂର୍ବପୁରୁଷଙ୍କୁ ଆମେ କେବଳ ଭେଟି ପାରନ୍ତି ଏକ ମିଉଜିଅମ୍‌ରେ । କିନ୍ତୁ ସେଠି ବି ତା'ର ପୂରା ଚେହେରାଟି ଦେଖିବାକୁ ମିଳିବନି । କାରଣ ସେଠାରେ କେବଳ ତା'ର କେଇ ଖଣ୍ଡ ହାଡ଼, କେତୋଟି ଦାନ୍ତ ଥୁଆ ହୋଇଛି । ସେସବୁ ମିଳିଛି ଏସିଆ, ଆଫ୍ରିକା ଏବଂ ୟୁରୋପର ବିଭିନ୍ନ ଅଞ୍ଚଳରୁ ।

କିନ୍ତୁ ଏ କ୍ଷେତ୍ରରେ ତା'ର "ସଂପର୍କୀୟ ଭାଇ ଭଉଣୀମାନଙ୍କ" ସଂପର୍କରେ ଜାଣିବାଟା ଟିକେ ସହଜ ।

ମଣିଷ ତା'ର ପ୍ରାଗୈତିହାସିକ ଅତୀତର ଗ୍ରୀଷ୍ମ ମଣ୍ଡଳୀୟ ଜଙ୍ଗଲକୁ ପରିତ୍ୟାଗ କରି ସ୍ଥଳ ଭାଗରେ ଦୃଢ଼ ଭାବେ ଛିଡ଼ା ହେବାର ବହୁ ଯୁଗ ବିତିଗଲଣି । କିନ୍ତୁ ତା'ର ସେ ଘନିଷ୍ଠ ସଂପର୍କୀୟ ଭାଇ ଭଉଣୀମାନେ ଏବେ ବି ବଣର ପଶୁ ହୋଇ ରହିଯାଇଛନ୍ତି । ତା'ର ସେଇସବୁ ଭାଇ ଭଉଣୀ ହେଉଛନ୍ତି – ଗରିଲା, ଶିଂପାଞ୍ଜି, ଗିବନ ଏବଂ ଓରାଙ୍ଗ-ଉଟାନ ଭଳି ବଣ ମଣିଷ । ଏହିସବୁ ଅଭାଗା ସଂପର୍କୀୟମାନଙ୍କ ବିଷୟରେ ମନେ ପକାଇବାକୁ ମଧ୍ୟ ଆମକୁ ଭଲ ଲାଗେ ନାହିଁ । ସେମାନେ ଆମର ସଂପର୍କୀୟ ବୋଲି ମାନିବାକୁ ଅନେକ ବି ନାରାଜ । ମଣିଷ ଏବଂ ଶିଂପାଞ୍ଜିର ପ୍ରାଗୈତିହାସିକ ଗୋଷମା ହେଉଛି ଏକ ଓ ଅଭିନ୍ନ, ଏ କଥାଟା ଭାବିବାକୁ ଆଉ କେତେକ ପାପ ବୋଲି ମନେ କରନ୍ତି ।

କିନ୍ତୁ ସତ୍ୟକୁ କେହି ଲୁଚେଇ କି ରଖି ପାରେ ନାହିଁ । ଆମେ ଏ ପୁସ୍ତକର ପୃଷ୍ଠାଗୁଡ଼ିକୁ ଏପରି ସବୁ ତଥ୍ୟରେ ଭରି ଦେବା, ଯିଏକି ପ୍ରମାଣ କରିଦେବ ଯେ, ମଣିଷ ହେଉଛି ବାନରର ସଂପର୍କୀୟ । କିନ୍ତୁ ଏଭଳି ଏକ ଦୀର୍ଘ ଆଲୋଚନାରେ ବ୍ୟାପୃତ ନହୋଇ କିଏ ଯଦି ଚିଡ଼ିଆଖାନାର ସେହି ଶିଂପାଞ୍ଜି ଏବଂ ଓରାଙ୍ଗ-ଉଟାନକୁ ଦେଖେ ତେବେ ତା ମନରେ ବାନର ସହିତ ମଣିଷର ପାରିବାରିକ ସଂପର୍କ ମନେ ପଡ଼ିଯିବ ।

# ରୋଜା ଆଉ ରାଫେଲ ।

ଲେନିନ୍‌ଗ୍ରାଦ୍ ନିକଟବର୍ତ୍ତୀ କୋଲ୍‌ଟୁଶୀ (ଏବେ ପାଭ୍‌ଲଭ୍) ବୋଲି ଏକ ଗ୍ରାମରେ ରୁଷିଆର ବିଖ୍ୟାତ ବିଜ୍ଞାନୀ ପାଭ୍‌ଲଭ୍‌ଙ୍କର ଏକ ଗବେଷଣାଗାର ଅଛି । ସେଠାରେ ଦୁଇଟି ଶିଂପାଞ୍ଜିଙ୍କୁ ଆଣି ରଖା ଯାଇଥିଲା । ସେ ଦିହିଁଙ୍କର ନାମ ଥିଲା ରୋଜା ଆଉ ରାଫେଲ ।

ଲୋକେ ସେମାନଙ୍କ ହତଭାଗା ଜଙ୍ଗଲର ସଂପର୍କୀୟମାନଙ୍କ ପ୍ରତି ଖୁବ୍ ଦୟାଳୁ ନୁହନ୍ତି । ସେମାନଙ୍କୁ ସାଧାରଣତଃ ପଞ୍ଜୁରି ଭିତରେ ପୂରେଇ ଦିଅନ୍ତି । କିନ୍ତୁ ଏଥର ଆଫ୍ରିକାରୁ ଆସିଥିବା ପରିଦର୍ଶକମାନଙ୍କୁ ଆଦର ଅଭ୍ୟର୍ଥନା କରାଗଲା । ସେମାନଙ୍କୁ ଛାଡ଼ି ଦିଆଗଲା ଗୋଟାଏ ବଡ଼ ଘର – ଶୋଇବା, ଖାଇବା, ଗାଧୋଇବା, ଖେଳ – ସବୁ ପାଇଁ ଅଲଗା ଅଲଗା ଘର । ଶୋଇବା ଘରେ ଚମତ୍କାର ଦୁଇଟି ବିଛଣା ଆଉ ଟେବୁଲ । ଖାଇବା ଘର ଟେବୁଲଟି ଉପରେ ଧୋବ ଫରଫର୍ ଚାଦର । ପାଖ ଥାକଗୁଡ଼ିକରେ ଭଲ ଖାଦ୍ୟ ଦ୍ରବ୍ୟ ଭରପୂର ।

ଏହି ସୁନ୍ଦର ଘରକୁ ଦେଖି କେହି ମନେ କରିବ ନାହିଁ, ଏଥିରେ ବଣ ମଣିଷ ରହିବେ । ପ୍ଲେଟ୍‌ରେ ସେମାନଙ୍କୁ ଖାଇବାକୁ ଦିଆଗଲା ଏବଂ ପ୍ଲେଟ୍ ପାଖରେ ଚାମଚ ରଖି ଦିଆଗଲା । ରାତିରେ ସେମାନଙ୍କ ବିଛଣା ସଜାଡ଼ି ଦିଆଯାଏ । ସତ କହିଲେ, କିଛି ଦିନ ପାଇଁ ଅତିଥି ଦିହେଁ ତୁମ [ଆମ ଭଳି ଭଦ୍ରତାର ସହିତ କାମ] କଲେ ନାହିଁ । ଖାଇବା ସମୟରେ କେବେ କେବେ ଚାମଚକୁ ଫିଙ୍ଗି ଦେଇ ମୁହଁରେ ପ୍ଲେଟ୍ ଲଗେଇ ଝୋଳକୁ ପିଇ ଦେଲେ । ରାତିରେ ତକିଆ ଉପରେ ମୁଣ୍ଡ ନଦେଇ ମୁଣ୍ଡ ଉପରେ ତକିଆକୁ ଥୋଇ ଶୋଇ ପଡ଼ିଲେ ।

ତା ବୋଲି ଯେ, ସେମାନେ ମଣିଷ ପରି କିଛି କରି ପାରିଲେ ନାହିଁ, ତା ନୁହେଁ ।

ରୋଜା ଯେକୌଣସି ଗୃହିଣୀ ପରି ଚାବି ଦେଇ କାଚ ଆଲମାରିକୁ ଖୋଲି ପାରେ । ଘରର ଚାବିସବୁ ଅବଶ୍ୟ ଥାଏ ଘର ରଖୁଆଳ ହାତରେ । ରୋଜା ଯେ କେତେବେଳେ ପଛରୁ ଆସି ତା ପକେଟ୍‌ରୁ ହାତ ଗଳେଇ ଚାବି ବାହାର କରି ନିଏ, ସେ ତା'ର ଟେର୍ ପାଏ ନାହିଁ । ତା'ପରେ ସେ ଛୁକିନା ଦୌଡ଼ିଯାଏ ଫଳ ଥିବା ଆଲମାରି ପାଖକୁ । ଗୋଟାଏ ଚେୟାର ଉପରେ ବସି ପଡ଼ି ସେ ଠିକ୍ ଚାବିଟିକୁ ଲଗାଇ ଆଲମାରି ଭିତରକୁ ଚାହେଁ । ଆଲମାରି ଭିତରେ ଆପ୍ରିକଟ୍ ଉପରେ ପେଛାପେଛା ଅଙ୍ଗୁରକୁ ସେ ଦେଖି ପାରେ । ଚାବିଟିକୁ ଠିକ୍ ଆଡ଼କୁ ମୋଡ଼ି ଦେଇ ସେ ଆଲମାରିଟି ଖୋଲେ ଏବଂ ପେଛାଏ ଅଙ୍ଗୁର ବାହାର କରି ଆଣେ ।



ରାପେଲ (ବଣ ମଣିଷ) ଖାଉଛି ।



ରାପେଲ କାର୍ଯ୍ୟରତ ।



ରାପେଲ ଚିତ୍ର ଆଙ୍କୁଛି ।

ରାଫେଲ କଥା ଆମେ ଭୁଲି ଗଲେ ଚଳିବ ନାହିଁ । ପାଠ ପଢ଼ିଲା ବେଳେ ତା ଚେହେରାଟା ଦେଖିବାର କଥା । ତା'ର ତାଲିମ୍ ନେବାର ଜିନିଷଗୁଡ଼ିକ ମଧ୍ୟରେ ଥାଏ ଛୋଟ ବାଲ୍‌ଟିରେ ବାଲ୍‌ଟିଏ ଆପ୍ରିକଟ୍ ଏବଂ ବିଭିନ୍ନ ଆକାରର କେତୋଟି କାଠ ଖଣ୍ଡ । କିନ୍ତୁ ସେ କାଠଖଣ୍ଡଗୁଡ଼ିକ ପିଲମାନେ ଖେଳୁଥିବା କାଠଖଣ୍ଡଗୁଡ଼ିକ ଭଳି ନୁହେଁ । ରାଫେଲର କାଠଖଣ୍ଡସବୁ ଅନେକ ବଡ଼, ସବା ଛୋଟଟି ପାଦପୀଠ ଭଳି । ଆପ୍ରିକଟ୍ ଥିବା ବାଲ୍‌ଟିଟି ଉପରେ ଝୁଲୁଥାଏ । ରାଫେଲର ସମସ୍ୟାଟା ହେଉଛି, କେମିତି ସେ ଆପ୍ରିକଟ୍‌କୁ ଖାଇବ ।

ପ୍ରଥମେ ପ୍ରଥମେ ସେ ସମସ୍ୟାଟିକୁ ସମାଧାନ କରି ପାରିଲା ନାହିଁ ।

ଜଙ୍ଗଲରେ ଥିଲା ବେଳେ ଅନେକ ଉପରେ ଥିବା ଫଳକୁ ବି ସେ ଚଢ଼ିଯାଇ ତୋଳି ପାରୁଥିଲା । ଏଠାରେ କିନ୍ତୁ ଡାଳରେ ଫଳ ଝୁଲୁନି, ଝୁଲୁଛି ଆକାଶରେ । ତା ପାଖରେ ମାତ୍ର ସାତଟି କାଠଖଣ୍ଡ ଅଛି ଚଢ଼ିବା ପାଇଁ । ସବୁଠାରୁ ବଡ଼ ଖଣ୍ଡ ଉପରକୁ ଉଠିଲେ ବି ସେ ଫଳକୁ ତା ହାତ ପାଇବ ନାହିଁ ।

କାଠଖଣ୍ଡଗୁଡ଼ିକୁ ଏପଟ ସେପଟ କରି ଗଡ଼ାଇ ଗଡ଼ାଇ ରାଫେଲ ଗୋଟାଏ ନୂଆ ଜିନିଷ ଆବିଷ୍କାର କଲା । ଗୋଟିଏ କାଠ ଉପରେ ଆଉ ଗୋଟି କାଠକୁ ରଖି ପାରିଲେ ଫଳକୁ ହାତ ପାଇବା ସହଜ ହେବ । ଗୋଟାକ ପରେ ଗୋଟେ ଥୋଇ ପ୍ରଥମେ ତିନିଟିକୁ ନେଇ ଏବଂ ତା'ପରେ ଚାରିଟିକୁ ଶେଷରେ ପାଞ୍ଚଟିକୁ ନେଇ ସେ ଗୋଟାଏ ପିରାମିଡ୍ ତିଆରି କଲା । କିନ୍ତୁ କାମଟା ତା ପକ୍ଷରେ ଏତେ ସହଜ ନଥିଲା । କାହା ଉପରେ କେଉଁଟିକୁ ଥୋଇବାକୁ ହେବ ଜାଣିବା ଦରକାର । ତଳେ ସିନା ସବା ବଡ଼ଟାକୁ ଥୋଇ, ତା'ପରେ ତାଠୁଁ ଛୋଟ ଏବଂ ତା ଉପରେ ତାଠୁଁ ଛୋଟଟିକୁ ରଖି ସବା ଉପରେ ସବୁଠୁଁ ଛୋଟଟିକୁ ଥୋଇଲେ ପିରାମିଡ୍‌ଟି ଧସି ପଡ଼େ ନାହିଁ, କିନ୍ତୁ ରାଫେଲକୁ ଏତେ ପାଠ ମାଲୁମ ନଥିଲା ।

ସେ ଛୋଟଟି ଉପରେ ବଡ଼ଟିକୁ ଥୋଇ ତା ଉପରକୁ ଉଠିଗଲା କ୍ଷଣି ପିରାମିଡ୍‌ଟା ଦୋହଲି ପଡ଼ି ଯାଇଥାନ୍ତା । ରାଫେଲ ମଧ୍ୟ ପଡ଼ିଯାଇଥାନ୍ତା, କିନ୍ତୁ ଅନ୍ତତଃ ସେ ପଡ଼ି ନଥିଲା । କାରଣ ରାଫେଲ ହେଉଛି ମାଙ୍କଡ଼—ସେ ଚଞ୍ଚଳ ଏବଂ କ୍ଷିପ୍ର ।

ଶେଷକୁ ସମସ୍ୟାଟି ସମାଧାନ ହେଲା । ଛୋଟ ବଡ଼ କରି ସାତଟି ଯାକ କାଠକୁ ସେ ଥୋଇଲା । ଦେଖିଲେ ମନେ ହେଉଥିଲା ସେ ଯେମିତି ତା ଧିଅରେ ଲେଖାଗୁଡ଼ିକୁ ପଢ଼ିକି ସଜାଉଛି ।

ବାଲ୍‌ଟି ପାଖରେ ପହଞ୍ଚିଗଲା ପରେ ସେ ପିରାମିଡ୍ ଉପରେ ବସି ଆନନ୍ଦରେ ଖାଇବାକୁ ଲାଗିଲା ତା'ର କଷ୍ଟଲବ୍ଧ ଆପ୍ରିକଟ୍‌ଗୁଡ଼ିକୁ ।

ଆଉ କେଉଁ ପଶୁ କ'ଣ ମଣିଷ ଭଳି ଏମିତି ବ୍ୟବହାର କରି ପାରିବ ? କୌଣସି କୁକୁର କ'ଣ କାଠ ଖଣ୍ଡରେ ଏଭଳି ଏକ ପିରାମିଡ୍ ତିଆରି କରିବ ବୋଲି ଆମେ ଚିନ୍ତା କରି ପାରିବା ? କୁକୁର ତ କମ୍ ବୁଦ୍ଧିମାନ ଜୀବ ନୁହେଁ ।

ଯେଉଁମାନେ ରାଫାଇଙ୍କୁ କାମ କରିବା ଅବସ୍ଥାରେ ଦେଖିଛନ୍ତି, ତା'ର ମଣିଷ ସହିତ ସାମଞ୍ଜସ୍ୟ ଦେଖି ଆଶ୍ଚର୍ଯ୍ୟ ହୋଇ ଯାଇଛନ୍ତି । ସେ ଗୋଟାଏ କାଠଖଣ୍ଡକୁ କାନ୍ଧରେ ରଖି ପିରାମିଡ୍ ଉପରକୁ ଉଠିଯାଏ ଆଉ ଗୋଟାଏ ହାତରେ ଭରା ଦେଇ । କାଠଖଣ୍ଡଟି ଯଦି ଭୁଲ ହୋଇଥାଏ ତେବେ ସେଟାକୁ ତଳେ ପକାଇ ଦେଇ ତା ଉପରେ ବସି ପଡ଼େ ବଡ଼ ଚିନ୍ତାକୁଳ ମନରେ । କିଛି କ୍ଷଣ ବିଶ୍ରାମ ନେଇ ପରେ ସେ ପୁଣି କାମ ଆରମ୍ଭ କରିଦିଏ ତା'ର ଭୁଲ ସଂଶୋଧନ କରିବାକୁ ।

## ଶିଂପାଞ୍ଜି କ'ଣ ମଣିଷ ହୋଇ ପାରିବ ?

ଏହାହିଁ ଯଦି ଘଟି ପାରେ ତେବେ ଶିଂପାଞ୍ଜିକୁ କାହିଁକି ମଣିଷ ଭଳି ଚାଲିବାକୁ, କଥା କହିବାକୁ, ଚିନ୍ତା କରିବାକୁ ଏବଂ କାମ କରିବାକୁ ଶିକ୍ଷା ଦିଆ ଯିବ ନାହିଁ ?

ଅନେକ ବର୍ଷ ଆଗେ ଭ୍ଲାଦିମିର୍ ଦୁରୋଭ୍ ବୋଲି ଜଣେ ବିଖ୍ୟାତ ସର୍କସ ମାଷ୍ଟର ଥିଲେ । ଏହି କାର୍ଯ୍ୟଟିକୁ କରିବା ପାଇଁ ସେ ସ୍ୱପ୍ନ ଦେଖୁଥିଲେ । ସେ ତାଙ୍କର ଏକ ପୋଷା ଶିଂପାଞ୍ଜିକୁ ଅନେକ ମାସ ଧରି ତାଲିମ୍ ଦେଲେ । ଶିଂପାଞ୍ଜିଟିର ନାଁ ଥିଲା ମିମୁସ୍ । ମିମୁସ୍ ଖୁବ୍ ଭଲ ଛାତ୍ର ଭଳି ଚାମଚରେ ଖାଇଲା । ଟାଉଏଲ ବ୍ୟବହାର କଲା, ଚେୟାରରେ ବସିଲା । ଚାମଚରେ ଝୋଳ ପିଇଲା ବେଳେ ଟୋପାଏ ହେଲେ ଝୋଳ ଟେବୁଲ କନାରେ ପଡ଼ିଲା ନାହିଁ । ଏପରି କି ସ୍ଲେଜ୍ ଗାଡ଼ିର ଲଗାମ ଧରି ପାହାଡ଼ ତଳକୁ ସେ ଯାଇ ପାରୁଥିଲା ।

କିନ୍ତୁ ସେସବୁ ସତ୍ତ୍ୱେ ସେ ମଣିଷ ହୋଇ ପାରିଲା ନାହିଁ ।

କାହିଁକି ଯେ ସେ ମଣିଷ ହୋଇ ପାରିଲା ନାହିଁ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ମଣିଷ ଏବଂ ବଣ ମଣିଷର ପଥ କୋଟି କୋଟି ବର୍ଷ ଆଗେ ଅଲଗା ହୋଇ ଯାଇଛି । ମଣିଷର ପ୍ରାଗୈତିହାସିକ ପୂର୍ବପୁରୁଷମାନେ ବୃକ୍ଷ ଉପରୁ ତଳକୁ ଚାଲି ଆସିଥିଲେ । ତା'ପରେ ସିଧା ହୋଇ ଗୋଡ଼ରେ ଚାଲିବାକୁ ସେମାନେ ଶିଖିଲେ । ଏହା ଦ୍ୱାରା ସେମାନେ ହାତ ଦୁଇଟିକୁ କାମ କରିବା ପାଇଁ ମୁକ୍ତ କରି ପାରିଲେ । କିନ୍ତୁ ଶିଂପାଞ୍ଜିର ପୂର୍ବପୁରୁଷମାନେ ସେଇ ଭଳି ଚିରଦିନ ପାଇଁ ଗଛରେ ରହିଗଲେ ଏବଂ ଅଧିକରୁ ଅଧିକ ଗଛରେ ରହିବା ଜୀବନ ସହିତ ଖାପ ଖୁଆଇ ନେଲେ ।

ତେଣୁ କରି ଶିଂପାଞ୍ଜିର ଦେହର ଗଢ଼ଣ ମଣିଷ ଭଳି ହେଲା ନାହିଁ । ତା'ର ହାତ, ଗୋଡ଼, ଜିଭ ଏବଂ ମସ୍ତିଷ୍କ କେଉଁଟା ହେଲେ ମଣିଷ ଭଳି ନୁହେଁ ।

ଶିଂପାଞ୍ଜିର ହାତ ଅଙ୍କା ହୋଇଥିବା ଏକ ଛବିକୁ ଅନାଅ । ତା'ର ହାତଟା କେବେ ହେଲେ ମଣିଷ ଭଳି ନୁହେଁ । ତା'ର ବୁଢ଼ା ଆଙ୍ଗୁଳିଟା କାଣି ଆଙ୍ଗୁଳିଠାରୁ ଛୋଟ । ମଣିଷର ବୁଢ଼ା ଆଙ୍ଗୁଳି ଭଳି ଏହା ଅନ୍ୟ ଆଙ୍ଗୁଳିଗୁଡ଼ିକଠାରୁ ଦୂରଛଡ଼ା ନୁହେଁ । ଆମମାନଙ୍କ କ୍ଷେତ୍ରରେ ବୁଢ଼ା ଆଙ୍ଗୁଳିଟି ଅତୀବ ଦରକାରୀ । ପାଞ୍ଚ ଆଙ୍ଗୁଳି ଏକାଠି ମିଳି ପାଞ୍ଚ ଜଣ ଶ୍ରମିକ ପରି କାମ କରନ୍ତି । ଏହାକୁ କୁହାଯାଏ ହାତ ବୋଲି ବୁଢ଼ା ଆଙ୍ଗୁଳିଟି ଅନ୍ୟାନ୍ୟ ଯେକୌଣସି ଗୋଟିଏ ଆଙ୍ଗୁଳି ସହିତ ବା ସମସ୍ତଙ୍କ ସହିତ କାମ କରି ପାରେ । ତେଣୁ ମଣିଷ ତା ହାତ ଦ୍ୱାରା ଯେକୌଣସି ଜଟିଳ ଯନ୍ତ୍ରକୁ ଦକ୍ଷତାର ସହିତ ବ୍ୟବହାର କରି ଥାଏ ।

ଶିଂପାଞ୍ଜି ଗଛରୁ ଫଳ ତୋଳିଲା ବେଳେ, ଅନେକ ସମୟରେ ସେ ତାଳକୁ ହାତରେ ଧରେ ଏବଂ ତା'ପରେ ଗୋଡ଼ରେ ତୋଳେ । ମାଟି ଉପରେ ଚାଲିଲା ବେଳେ ତା'ର ହାତର ବଙ୍କା ଆଙ୍ଗୁଳିଗୁଡ଼ିକ ଉପରେ ଭରା ଦେଇ ଦେଇ ଯାଏ । ତା ଅର୍ଥ ଅନେକ ସମୟରେ ସେ ତା'ର ଗୋଡ଼କୁ ହାତ ଭଳି ଏବଂ ହାତକୁ ଗୋଡ଼ ଭଳି ବ୍ୟବହାର କରେ ।

ଯେଉଁସବୁ ପଶୁ-ତାଲିମଦେଲା ଲୋକେ ସେମାନଙ୍କ ଶିଂପାଞ୍ଜିକୁ ମଣିଷ କରିବାକୁ ଚାହାନ୍ତି ସେମାନେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ତଫାତ୍‌କୁ ଭୁଲି ଯାଆନ୍ତି । ସେ ତଫାତ୍‌ଟା ହାତ ଆଉ ଗୋଡ଼ର ତଫାତ୍ ନୁହଁ । ସେମାନେ ଭୁଲି ଯାଆନ୍ତି ଯେ, ଶିଂପାଞ୍ଜିର ମସ୍ତିଷ୍କ ମଣିଷ ଭଳି ବଡ଼ ନୁହେଁ କି ଏତେ ଉନ୍ନତ ମଧ୍ୟ ନୁହେଁ ।

ଇଭାନ୍ ପାଭ୍‌ଲଭ୍ ମଣିଷର ମସ୍ତିଷ୍କକୁ ପରୀକ୍ଷା ନିରୀକ୍ଷା କରିବାରେ ଅନେକ ବର୍ଷ ବିତାଇ ଥିଲେ । ସେ ମଧ୍ୟ ରୋଜା ଏବଂ ରାଫେଲର ବ୍ୟବହାର ବିଷୟରେ ଜାଣିବାକୁ ଖୁବ୍ ଆଗ୍ରହୀ ଥିଲେ । ଅନେକ ସମୟ ସେ ବିତଉଥିଲେ "ଶିଂପାଞ୍ଜି ଘରେ" – ସେମାନଙ୍କୁ ଅନେକ ନିକଟରୁ ନିରୀକ୍ଷଣ କରୁଥିଲେ । ସେମାନେ ବ୍ୟବହାର କରୁଥିଲେ ଖୁବ୍ ବୋକା ଭଳି । ଗୋଟିଏ କାମ ଆରମ୍ଭ କରିବାକୁ ଯାଇ ହଠାତ୍ ସେମାନେ ଅନ୍ୟମନସ୍କ ହୋଇ ଯାଆନ୍ତି । ତା'ପରେ ସେ କଥା ଭୁଲିଯାଇ ଆଉ ଗୋଟେ କିଛି ଆରମ୍ଭ କରି ଦିଅନ୍ତି ।

ରାଫେଲ ଏହି ଭାବେ ତା'ର ପିରାମିଡ୍ ନିର୍ମାଣ କରିବାରେ ବ୍ୟସ୍ତ ରହୁଥିଲା ବଡ଼ ଏକାଗ୍ର ଚିତ୍ତରେ । କିନ୍ତୁ ହଠାତ୍ ଯଦି ବଲ୍‌ଟାଏ ଆଗକୁ ତା'ର ଆସି ଯାଉଥିଲା ତେବେ ସେ କାଠଖଣ୍ଡଗୁଡ଼ିକ କଥା ଭୁଲିଯାଇ ତା'ର ସେ ଲମ୍ବା ଲୋମଶ ହାତରେ ବଲ୍ ଖେଳ ଆରମ୍ଭ କରି ଦେଉଥିଲା । ତା'ପରେ ଯେତେବେଳେ ଚଟାଣ ଉପରେ

ମାଛିଟାଏ ଘୂରୁଥିବାର ସେ ଦେଖୁଥିଲା , ସଙ୍ଗେ ସଙ୍ଗେ ସେ ବଲ୍ କଥା ଭୁଲିଯାଉଥିଲା ।

ରାପେଲର ଏହି ଚଞ୍ଚଳ ମତିକୁ ନିରୀକ୍ଷଣ କରୁ କରୁ ଥରେ ପାଭ୍‌ଲଭ୍ କହିଥିଲେ :

"ଏ କି ବିଭ୍ରାଟ !"

ହଁ , ବଣ ମଣିଷମାନଙ୍କର ବିଶୃଙ୍ଖଳ ଆଚରଣ ହେଉଛି ସେମାନଙ୍କ ମସ୍ତିଷ୍କର ବିଶୃଙ୍ଖଳ କ୍ରିୟାର ପ୍ରତିଫଳନ । ଏହା ମଣିଷ ମସ୍ତିଷ୍କର ଶୃଙ୍ଖଳାବଦ୍ଧ କ୍ରିୟା ଭଳି ନୁହେଁ । କିନ୍ତୁ ଶିଂପାଞ୍ଜି କମ୍ ବୁଦ୍ଧିମାନ ନୁହେଁ । ଏହା ଜଙ୍ଗଲ ଏବଂ ତା'ର ଛୋଟ ଦୁନିଆଟି ସହିତ ନିଜକୁ ଭଲ ଭାବେ ଖାପ ଖୁଆଇ ନେଇଛି , ଯେଉଁ ଦୁନିଆ ସହିତ ସେ ଅସଂଖ୍ୟ ଅଦେଖା ଶୃଙ୍ଖଳରେ ବନ୍ଧା ।

ଥରେ ଜଣେ ଫଟୋ ଉଠାଳି କ୍ୟାମେରା ଧରି ଭୋଜା ଏବଂ ରାପେଲ ରହୁଥିବା ଘରକୁ ଆସିଲେ । ସେ ଚାହୁଁଥିଲେ ଏହି ନାୟକ ନାୟିକାଙ୍କୁ ନେଇ ଏକ ସିନେମା ତିଆରି କରିବେ । ତାଙ୍କ ସିନେମାର ବିଷୟବସ୍ତୁ ଅନୁସାରେ ଶିଂପାଞ୍ଜି ଦୁଇଟିକୁ କିଛି ସମୟ ପାଇଁ ବାହାରେ ଛାଡ଼ି ଦେବାକୁ ହେବ । କିନ୍ତୁ ବାହାରେ ଛାଡ଼ି ଦେଇ କ୍ଷଣି ସେମାନେ ସଙ୍ଗେ ସଙ୍ଗେ ଗଛ ଉପରକୁ ଉଠି ଯାଇ ଏଡାଳରୁ ସେଡାଳକୁ ଡେଇଁବାରେ ଲାଗି ପଡ଼ିଲେ । ସେମାନଙ୍କ ସେ ଆରାମଦାୟକ ଘର ଅପେକ୍ଷା ଗଛକୁ ସେମାନେ ଅଧିକ ଭଲ ପାଉଥିଲେ ।

ଆଫ୍ରିକାରେ ଶିଂପାଞ୍ଜିମାନେ ଜଙ୍ଗଲର ସବା ଉପର ମହଲରେ ରହନ୍ତି । ଗଛ ଉପରର ଡାଳରେ ସେମାନେ ବସା ବାନ୍ଧିଥାନ୍ତି । ଶତ୍ରୁ ଆସିଲେ ସେମାନେ ଚଢ଼ି ଯାଆନ୍ତି ଗଛ ଉପରକୁ । ଗଛର ଫଳ ଏବଂ କୋଳି ସବୁ ହେଉଛି ସେମାନଙ୍କର ଖାଦ୍ୟ ।

ଗଛରେ ରହିବାରେ ସେମାନେ ଏତେ ଅଭ୍ୟସ୍ତ ଯେ , ସଳଖ ଏକ ଗଛର ଗଣ୍ଡିକୁ ଧରି ସେମାନେ ସହଜରେ ଚଢ଼ି ଯାଇ ପାରନ୍ତି ଏବଂ ଓଲ୍‌ହାଇ ପାରନ୍ତି । ଏତେ ସହଜରେ ସେମାନେ ଚାଲି ପାରନ୍ତି ନାହିଁ ସମତଳ ମାଟି ଉପରେ । ଯେଉଁଠି ଜଙ୍ଗଲ ନାହିଁ ସେଠି ତମେ ଶିଂପାଞ୍ଜି ଦେଖିବାକୁ ପାଇବନି ।

ଆଫ୍ରିକାରେ କାମେରୁନ୍ ବୋଲି ଗୋଟିଏ ଦେଶ ଅଛି । ଥରେ ଜଣେ ବିଜ୍ଞାନୀ କାମେରୁନ୍‌କୁ ଯାଇଥିଲେ ଶିଂପାଞ୍ଜିମାନେ କିପରି ନିଜର ପ୍ରାକୃତିକ ପରିବେଶ ମଧ୍ୟରେ ବାସ କରୁଛନ୍ତି ଦେଖିବା ପାଇଁ ।

ଦଶ ବାରଟି ଶିଂପାଞ୍ଜିଙ୍କୁ ଧରି ଆଣି ସେ ତାଙ୍କ ଖମାର ପାଖରେ ଥିବା ଜଙ୍ଗଲରେ ଛାଡ଼ି ଦେଲେ ମନ ଖୁସିରେ ରହିବା ପାଇଁ । କିନ୍ତୁ ସେ ପ୍ରଥମେ ଏପରି ଏକ ଅଦୃଶ୍ୟ ପିଞ୍ଜୁରି ତିଆରି କରିଥିଲେ , ଯେଉଁଥିରୁ ସେମାନେ ଆଉ ପଳାଇ ଯିବେ

ନାହିଁ । ସେ ଅଦୃଶ୍ୟ ପଞ୍ଜୁରିଟି ତିଆରି ହୋଇଥିଲା ଦୁଇଟି ସାଦାସିଧା ଯନ୍ତ୍ର– କୁରାଢ଼ି ଏବଂ କରତ ଦ୍ୱାରା ।

ପ୍ରଥମେ କାଠକଟାଳିମାନେ ଆସି ଜଙ୍ଗଲର କେତେକ ଅଞ୍ଚଳରୁ ଗଛବୃଛକୁ କାଟି ସଫା କରି ଦେଲେ । ଏହି ସଫାଜାଗାର ମଝିରେ, ଦ୍ୱୀପଟିଏ ଭଳି ଝାଡ଼ ଖଣ୍ଡେ ରଖିଦେଲେ । ବିଜ୍ଞାନୀ ତା'ପରେ ଏହି ଝାଡ଼ଟି ମଧ୍ୟରେ ଛାଡ଼ି ଦେଲେ ତାଙ୍କ ଶିଂପାଞ୍ଜିମାନଙ୍କୁ ।

ତାଙ୍କ ଯୋଜନାଟି ଭଲ କାମ ଦେଇଥିଲା, କାରଣ ବଣ ମଣିଷମାନେ ହେଉଛନ୍ତି ଜଙ୍ଗଲର ବାସିନ୍ଦା । ତା ଅର୍ଥ, ସେମାନେ ଇଚ୍ଛାପୂର୍ବକ ଜଙ୍ଗଲକୁ ଛାଡ଼ି ଆଉ ଯିବେ ନାହିଁ । ଖୋଲା ପଡ଼ିଆରେ ତ ସେମାନେ ଯାଇ ଘର କରି ପାରିବେ ନାହିଁ – ମେରୁ ଅଞ୍ଚଳର ଭାଲୁ ଯେମିତି ମରୁ ଅଞ୍ଚଳରେ ରହି ପାରେ ନାହିଁ ।

ଏଥର ତେବେ ତୁମେ ପ୍ରଶ୍ନ କରିବ, ଶିଂପାଞ୍ଜି ଯଦି ନିଜ ଇଚ୍ଛାରେ ଜଙ୍ଗଲ ଛାଡ଼ି ମାଟିକୁ ଆସେ ନାହିଁ, ତେବେ ତା'ର ଦୂରସଂପର୍କୀୟ ମଣିଷ କିପରି ଜଙ୍ଗଲ ଛାଡ଼ି ମାଟିକୁ ଆସିଲା ?

## ଆମ ନାୟକ କିପରି ଚାଲି ଶିଖିଲା ?

ଆମର ସେଇ ପ୍ରାଗୈତିହାସିକ ଯୁଗର ପୂର୍ବପୁରୁଷ ହଠାତ୍ ଦିନକରେ ନିଜକୁ ସେ ପଞ୍ଜୁରିରୁ ମୁକ୍ତ କରି ଜଙ୍ଗଲରୁ ବାହାରି ଆସି ନଥିଲା । ଜଙ୍ଗଲ ଛାଡ଼ି ତୃଣ ଭୂମିରେ ଘର କରି ବାସ କରିବାକୁ ତାକୁ ଲାଗିଥିଲା ହଜାର ହଜାର ବର୍ଷ ।

ଗଛରେ ରହୁଥିବା ଜନ୍ତୁକୁ ଜଙ୍ଗଲର ସେ ଶୃଙ୍ଖଳରୁ ମୁକ୍ତ ହେବାକୁ ହେଲେ, ଗଛରୁ ଓହ୍ଲାଇ ଆସି ମାଟି ଉପରେ କେମିତି ଚାଲିବାକୁ ହୁଏ ତାକୁ ଶିଖିବାକୁ ହେବ ।

ଆମ ଯୁଗରେ ବି ମଣିଷ ପିଲା ପକ୍ଷରେ ଚାଲି ଶିଖିବାଟା ଏତେ ସହଜ ନୁହେଁ । ଯେଉଁମାନେ କିଣ୍ଡରଗାର୍ଟେନ୍ ସ୍କୁଲକୁ ଯାଇଛନ୍ତି ସେମାନେ ଦେଖିଥିବେ, ସେଠାରେ ଏକ ବିଶେଷ ବୟସର ଶିଶୁଥାନ୍ତି । ତାଙ୍କୁ କହନ୍ତି "ଗୁରୁଣ୍ଡିବା ଶିଶୁ" । ଏହିସବୁ ଶିଶୁ ବସି ରହିବାକୁ ଚାହାନ୍ତି ନାହିଁ, ଅଥଚ ସେମାନେ ଚାଲି ଜାଣି ନଥାନ୍ତି । ଏହି "ଗୁରୁଣ୍ଡିବା ଶିଶୁକୁ" "ଚାଲିବା ଶିଶୁ" ହେବା ପାଇଁ କେଇ ମାସ ଖୁବ୍ ଉଦ୍ୟମ କରିବାକୁ ପଡ଼େ । କୌଣସି କିଛିର ସାହାଯ୍ୟ ନନେଇ, ଭୂମି ଉପରେ ହାତଭରା ନଦେଇ, କୌଣସି ଚେୟାର ବା ବେଞ୍ଚକୁ ନଧରି ସିଧା ହୋଇ ଛିଡ଼ା ହେବାଟା କ'ଣ କମ୍ କଷ୍ଟ ! ଏହି ଭାରସାମ୍ୟ ରଖିବା କାର୍ଯ୍ୟଟା ସାଇକେଲ ଚଢ଼ିବା ଅପେକ୍ଷା ଅନେକ କଷ୍ଟକର ।

ଶିଶୁ ପକ୍ଷରେ ଏକାର୍ଯଟି ଶିଖିବାକୁ ଏବେ କେତୋଟି ମାସ ଲଗୁଛି । କିନ୍ତୁ ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନଙ୍କୁ ଲଗିଥିଲ ହଜାର ହଜାର ବର୍ଷ ।

ସେହି ଅତ୍ୟନ୍ତ ସୁଦୂର ଅତୀତରେ ସେମାନେ ଖୁବ୍ ଅଳ୍ପ ସମୟ ପାଇଁ ଆସୁଥିଲେ ଚଳକୁ । ସମ୍ଭବତଃ ସେମାନେ ସବୁବେଳେ ସେମାନଙ୍କ ଆଣ୍ଠୁ ଉପରକୁ ନଇଁ ପାରୁ ନଥିଲେ । କେବଳ ପଛ ଗୋଡ଼ ଯୋଡ଼ିକ ସାହାଯ୍ୟରେ ଦୁଇ ତିନୋଟି ପଦକ୍ଷେପ ନେଉଥିଲେ ।

ତେବେ, ଏହି ଦୁଇ ତିନୋଟି ପଦକ୍ଷେପ କେବେହେଲେ ପଗ୍ଦଶ ବା ଶହେଟି ପଦକ୍ଷେପ ନୁହେଁ ।

# ମଣିଷର ଗୋଡ଼ କିପରି ତା'ର ହାତକୁ କାମ କରିବା ପାଇଁ ମୁକ୍ତ କଲା ?...

ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନେ ଗଛରେ ବାସ କରୁଥିଲା ବେଳେ ସେମାନେ ସେମାନଙ୍କ ଗୋଡ଼ ଅପେକ୍ଷା ହାତରେ ବିଭିନ୍ନ କାମ କରିବାକୁ କ୍ରମଶଃ ଶିଖିଥିଲେ । ଫଳ ପାରିବା, ବାଦାମ ଛଡ଼େଇବା ଏବଂ ଡାଳର କେନାରେ ବସା ତିଆରି କରିବାରେ ସେମାନେ ହାତକୁ ବ୍ୟବହାର କରୁଥିଲେ ।

କିନ୍ତୁ ଯେଉଁ ହାତ ବାଦାମକୁ ଧରି ପାରେ, ସେ ହାତ ମଧ୍ୟ ଖଣ୍ଡେ ଡାଙ୍ଗ ବା ପଥରକୁ ଧରିବାକୁ ସକ୍ଷମ ହୁଏ । ଡାଙ୍ଗ କିମ୍ବା ପଥରକୁ ଧରୁଥିବା ହାତ ଖାଲି ହାତ ଅପେକ୍ଷା ଆହୁରି ଲମ୍ବା ଏବଂ ଶକ୍ତିଶାଳୀ ମନେ ହୁଏ ।

ଯେଉଁ ବାଦାମକୁ ହାତ କିମ୍ବା ଦାନ୍ତରେ ଭାଙ୍ଗି ହୁଏ ନାହିଁ, ତାକୁ ପଥରରେ ପିଟି ଭାଙ୍ଗିବାଟା ସହଜ । ଡାଙ୍ଗ ଖଣ୍ଡକ ସାହାଯ୍ୟରେ ସୁସ୍ୱାଦୁ ଏକ ଗଛର ମୂଳକୁ ମଧ୍ୟ ଖୋଳି ହୁଏ ।

ତେଣୁ କରି ପ୍ରାଗୈତିହାସିକ ମଣିଷ ଏହି ସବୁ ଆଦିମ ହତିଆରକୁ ଅଧିକରୁ ଅଧିକ ବ୍ୟବହାର କରିଥିଲ ଖାଦ୍ୟ ସଂଗ୍ରହ କରିବାରେ । ବାଡ଼ି ଖଣ୍ଡକ ସାହାଯ୍ୟରେ ସେ ଗଛର ମୂଳ ଏବଂ ଚେରକୁ ଖୋଳୁ ଥିଲ । ଓଜନିଆ ପଥରରେ ପୁରୁଣା ଗଛମୂଳକୁ ଛେଚି ତା ଭିତରେ ଥିବା ପୋକକୁ ସେ ବାହାର କରି ପାରୁଥିଲ । ଏହି ଭାବେ ହାତର କାମ ବଢ଼ିବା ସଙ୍ଗେ ସଙ୍ଗେ ଚାଲିବା କାମରୁ ହାତକୁ ଟିକିଏ ନିସ୍ତୃତି ମିଳିଲ । ହାତ ଦୁଇଟି ତା'ର ଯେତିକି କାମରେ ବ୍ୟସ୍ତ ରହିଲ, ତା'ର ଗୋଡ଼ ଦୁଇଟି ସେତିକି ଏକା ଏକା ଚାଲିବା କାମଟା କଲ ।

ଏହି ଭାବେ ହାତ ଦୁଇଟି ତା'ର ଗୋଡ଼କୁ ଗ୍ଭଲିବାରେ ଲଗାଇଲା ଏବଂ ଗୋଡ଼ ତା'ର ହାତକୁ କାମ ପାଇଁ ମୁକ୍ତ କଲା ।

କାଳକ୍ରମେ ଏହି ଭାବେ ପୃଥିବୀ ପୃଷ୍ଠରେ ଦେଖା ଦେଲା ନୂଆ ଏକ ପ୍ରାଣୀ । ସେ ପଛ ପାଦ ଦୁଇଟିରେ ଗ୍ଭଲିଲା ଏବଂ ଆଗ ଦୁଇ ହାତରେ ନାନା କାମ କଲା ।



ଆମ ବୀର ହାତରେ ଅସ୍ତ୍ର ଧରିଲା ।

ତଥାପି ସେ ପ୍ରାଣୀଟିର ଚେହେରା ସେତେବେଳେ ଯାଏ ଥିଲା ପଶୁ ପରି । କିନ୍ତୁ ତୁମେମାନେ ଯଦି ସେତେବେଳେ ଦେଖିଥାନ୍ତ, ସେ କିପରି ତା'ର ବାଡ଼ି ଆଉ ପଥର ଧରି କାମ କରୁଥିଲା, ତାହେଲେ ତୁମେ କହିଥାନ୍ତ ସେହିମାନେ ହିଁ ପ୍ରଥମ ମଣିଷ ବୋଲି । ସତରେ, ମଣିଷ ହିଁ କେବଳ ଯନ୍ତ୍ରର ବ୍ୟବହାର ଜାଣେ । ଅନ୍ୟାନ୍ୟ ଜୀବଜନ୍ତୁଙ୍କର କୌଣସି ଯନ୍ତ୍ରପାତି ନାହିଁ ।

ଗାତୁଆମୂଷା କିମ୍ବା ଚୁଚୁନ୍ଦ୍ରା ସେମାନଙ୍କ ଗାତ ଖୋଳନ୍ତି କେବଳ ନଖ ଦ୍ୱାରା, ସେମାନଙ୍କର ଗଇଁତି କି କୋଦାଳ ନଥାଏ । ମୂଷା ତା ଦାନ୍ତରେ କାଠକୁ କାଟେ, ଛୁରି ଦ୍ୱାରା କାଟେ ନାହିଁ । କାଠହଣା ବି ଗଛ ଦିହରେ ଗାତ ଖୋଳେ ତା ଥଣ୍ଟ ଦ୍ୱାରା, ବଟାଳି ଦ୍ୱାରା ନୁହଁ ।

ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନଙ୍କର ବଟାଳି ଭଳି ଧାରୁଆ ଥଣ୍ଟ ନଥିଲା କି ଗଇଁଠି ଭଳି ଥାବା ନଥିଲା, କିମ୍ବା ଖୁର ଭଳି ଧାରୁଆ ଦାନ୍ତ ନଥିଲା ।

କିନ୍ତୁ ସେମାନଙ୍କର ଏପରି ଏକ ଜିନିଷ ଥିଲା, ଯିଏକି ଅତି ମୁନିଆ ଦାନ୍ତ ଏବଂ ଅତି ଦୃଢ଼ ଥଣ୍ଟଠାରୁ ଆହୁରି ଭଲ । ସେମାନଙ୍କର ଥିଲା ହାତ । ତା ସାହାଯ୍ୟରେ ସେମାନେ କାଠକଟା ପଥର ଏବଂ କାଠ ତିଆରି ଲମ୍ବା ଥାବାକୁ ଧରି ପାରୁଥିଲେ ।

## ଆମର ନାୟକ ମାଟି ଉପରକୁ ଓହ୍ଲାଇ ଆସିଲେ ।

ଏହିସବୁ ଘଟଣା ଘଟି ଚାଲିଥିଲା ବେଳେ ପୃଥିବୀର ଜଳବାୟୁ ମଧ୍ୟ କ୍ରମଶଃ ବଦଳି ଚାଲିଥିଲା । ଆମ ପ୍ରାଗୈତିହାସିକ ପୂର୍ବପୁରୁଷମାନେ ବାସ କରୁଥିବା ଜଙ୍ଗଲର ରାତି ଅଧିକ ଶୀତଳ ହେବାକୁ ଲାଗିଲା ଏବଂ ଶୀତ ଋତୁର ପ୍ରକୋପ ବି ବଢ଼ିବାକୁ ଲାଗିଲା । ଜଳବାୟୁ ଯଦିଓ ସେତେ ଥଣ୍ଡା ନଥିଲା, କିନ୍ତୁ ଆଗଭଳି ଗରମ ବି ନଥିଲା ।

ପାହାଡ଼ ପର୍ବତର ଉତ୍ତର ପାଖ ଗଡ଼ାଣିଆ ଜାଗାରେ ଥିବା ଚିର ସବୁଜ ପାମ୍, ମାଗ୍ନୋଲିଆ ଏବଂ ଲରେଲ ଗଛ ଜାଗାରେ କ୍ରମଶଃ ଦେଖାଗଲା ଓକ୍ ଏବଂ ଲିଣ୍ଡେନ୍ ଗଛସବୁ ।

ନଦୀକୂଳବର୍ତ୍ତୀ ଅଞ୍ଚଳରେ ବେଳେ ବେଳେ ଖୋଳିଲେ ଓକ୍ ଏବଂ ଲିଣ୍ଡେନ୍ ଗଛ ପତ୍ରର ପ୍ରସ୍ତରୀଭୂତ ଅଂଶ ଦେଖିବାକୁ ମିଳେ । ସେସବୁ କୋଟି କୋଟି ବର୍ଷ ପୂର୍ବେ ବର୍ଷାବତାସ ଦ୍ୱାରା ହୁଏତ ଭାସି ଆସିଥିଲା ନଈ ଭିତରକୁ ।

ଡିମ୍ବିରି ଗଛ ଏବଂ ଅଙ୍ଗୁର ଲତାସବୁ ଦକ୍ଷିଣର ଗଡ଼ାଣିଆ ଅଞ୍ଚଳ ଏବଂ ପାହାଡ଼ ଜଙ୍ଗଲର ମଧ୍ୟବର୍ତ୍ତୀ ଖୋଲା ଜାଗାମାନଙ୍କରେ ଥଣ୍ଡା ପବନରୁ ନିଜକୁ ରକ୍ଷା କରି ନେଲେ । ଗ୍ରୀଷ୍ମାଞ୍ଚଳୀୟ ଜଙ୍ଗଲର ସୀମାରେଖା କ୍ରମଶଃ ଘୁଞ୍ଚି ଘୁଞ୍ଚି ଆସିଗଲା ଦକ୍ଷିଣକୁ । ଏଥି ସଙ୍ଗେ ସଙ୍ଗେ ସେସବୁ ଜଙ୍ଗଲର ବାସିନ୍ଦାମାନେ ହାତୀ, ଖଣ୍ଡାଦାନ୍ତିଆ ବାଘ ମଧ୍ୟ ଦକ୍ଷିଣକୁ ଘୁଞ୍ଚି ଆସିଲେ । ସେତେବେଳକୁ ସେମାନଙ୍କ ସଂଖ୍ୟା ମଧ୍ୟ କମି ଆସିଥିଲା ।

ଆଗେ ଯେଉଁଠି ଜଙ୍ଗଲ ମଧ୍ୟରେ ଗହଳିଆ ଲଟା ଥିଲା ଏବେ ସେଠାରେ ପରିଷ୍କାର ସ୍ଥାନ ଦେଖାଦେଲା । ଦଳ ଦଳ ବଡ଼ ହରିଣ ଆଉ ଗଣ୍ଡା ସବୁ ସେଠି ଚରି ବୁଲିଲେ । ବଣ ମଣିଷଙ୍କ ମଧ୍ୟରୁ କେତେକ ଜଙ୍ଗଲ ମଧ୍ୟକୁ ଚାଲିଯାଇ ଆତ୍ମରକ୍ଷା କଲେ । ଆଉ କେତେକ ଜାତିର ପ୍ରାଣୀ ମରିଗଲେ ।

ଜଙ୍ଗଲରେ ଅଙ୍ଗୁର କ୍ରମଶଃ କମି ଆସିଲ , ଡିମ୍ବିରି ଗଛ ସବୁକୁ ଖୋଜି ପାଇବା ବି କଷ୍ଟ ହେଲ । ବଣ ଖାଲି ହୋଇ ଯିବାରୁ ବଣରେ ଯିବା ଆସିବା କରିବା କଷ୍ଟ ହେଲ , ଦଳେ ଗଛରୁ ଆଉ ଦଳେ ଗଛକୁ ଯିବାକୁ ହେଲେ ମାଟି ଉପର ଦେଇ ଯିବାକୁ ପଡ଼ିଲ । ଗଛରେ ବାସ କରୁଥିବା ଜୀବମାନଙ୍କ ପକ୍ଷରେ ଏଟା ଏତେ ସହଜ କାମ ନଥିଲ । କାରଣ ଦ୍ରୁତଗାମୀ ମାଂସାଶୀ ପଶୁମାନଙ୍କ କବଳରେ ପ୍ରାଣ ହରାଇବାର ସମ୍ଭାବନା ଥିଲ ଅଧିକ ।

କିନ୍ତୁ ଅନ୍ୟ କୌଣସି ଉପାୟ ନଥିଲ ସେମାନଙ୍କର । କ୍ଷୁଧା ସେମାନଙ୍କୁ ବାଧ୍ୟ କରିଥିଲ ଗଛ ଉପରୁ ତଳକୁ ଓହ୍ଲାଇ ଆସିବା ପାଇଁ ।

ତା'ପରେ ଖାଦ୍ୟ ଅନ୍ୱେଷଣରେ ସେମାନଙ୍କୁ ବାରମ୍ବାର ତଳକୁ ଓହ୍ଲାଇ ଆସିବାକୁ ହେଲ ।

ତେବେ , ସେମାନେ ଯେତେବେଳେ ନିଜର ସେ ପରିଚିତ ପିଣ୍ଡୁରି , ଆଉ ନିଜକୁ ଖାପ ଖୁଆଇ ନେଇଥିବା ସେ ଜଙ୍ଗଲ ଦୁନିଆଟାକୁ ଛାଡ଼ି ଦେଇ ଚାଲି ଆସିଲେ ସେତେବେଳେ କ'ଣ ହେଲ ?

ସେମାନେ ବଣର ଆଇନକୁ ଭାଙ୍ଗି ପକାଇଲେ ଏବଂ ପ୍ରକୃତିରେ ପ୍ରତ୍ୟେକଟି ପ୍ରାଣୀକୁ ତା'ର ବାସସ୍ଥାନ ସହିତ ବାନ୍ଧିଥିବା ସେହିସବୁ ଶୃଙ୍ଖଳକୁ ଛିଡ଼େଇ ପକାଇଲେ ।

ଆମେ ଜାଣିଛେ ଜୀବଜନ୍ତୁ ଏବଂ ପକ୍ଷୀମାନେ ବଦଳି ଯାଆନ୍ତି । ପ୍ରକୃତିରେ କୌଣସି କିଛି ନବଦଳି କି ରହେନା । କିନ୍ତୁ ଏହି କାର୍ଯ୍ୟଟି ଏତେ ସହଜ ନୁହେଁ । ତୀକ୍ଷ୍ଣ ଥାବାଯୁକ୍ତ ଏକ କ୍ଷୁଦ୍ର ଜଙ୍ଗଲ ଜୀବକୁ ଆଜିକାଲିକାର ଘୋଡ଼ା ହେବା ପାଇଁ କୋଟି କୋଟି ବର୍ଷ ଲଗି ଯାଇଥିଲ । ପ୍ରତ୍ୟେକଟି ଛୋଟ ପ୍ରାଣୀ ତା'ର ପିତା ମାତାଙ୍କ ଭଳି ଦିଶେ । କହିବାକୁ ଗଲେ , କୌଣସି ପାର୍ଥକ୍ୟ ବି ନଥାଏ । ନୂଆ ଏକ ଜାତିର ଜୀବର ବିକାଶ ପାଇଁ ହଜାର ହଜାର ପୁରୁଷ ବିତି ଯାଇଥିଲ , ଏବଂ ସେ ନୂଆ ଜାତିର ଜୀବଟି ଯେଉଁ ମୂଳ ଜୀବଠାରୁ ଜାତ , ତା ସହିତ ତା'ର କୌଣସି ସାମଞ୍ଜସ୍ୟ ବି ରହେ ନାହିଁ ।

ଆମ ପ୍ରାଗୈତିହାସିକ ପୂର୍ବପୁରୁଷମାନଙ୍କ କ୍ଷେତ୍ରରେ ତେବେ କ'ଣ ଘଟିଲ ?

ସେମାନେ ଯଦି ସେମାନଙ୍କ ଅଭ୍ୟାସ ଏବଂ ଜୀବନର ଧାରା ନ ବଦଳେଇଥାନ୍ତେ , ତେବେ ସେମାନଙ୍କୁ ବି ବଣ ମଣିଷ ସହିତ ଦକ୍ଷିଣାଞ୍ଚଳକୁ ଫେରି ଯିବାକୁ ପଡ଼ିଥାନ୍ତା । କିନ୍ତୁ ସେମାନେ ବଣ ମଣିଷଙ୍କ ଭଳି ନଥିଲେ , କାରଣ ସେତେବେଳକୁ ପଥର ଏବଂ କାଠ ସାହାଯ୍ୟରେ ଖାଦ୍ୟ ସଂଗ୍ରହ କରିବାକୁ ଶିଖି ଯାଇଥିଲେ ।

ଦକ୍ଷିଣର ରସାଳ ଫଳ ମୂଳ ବିନା ଚଳିବାକୁ ସେମାନେ ଜାଣି ଯାଇଥିଲେ । ସେସବୁ ଫଳ ମୂଳ କ୍ରମଶଃ ଦୁସ୍ପ୍ରାପ୍ୟ ହୋଇ ଉଠିଥିଲା । ଘଞ୍ଚ ଜଙ୍ଗଲ ସବୁ ପତଳା ହୋଇ ଯାଉଥିବାରୁ ସେମାନଙ୍କର ଅସୁବିଧା ବି ହେଉ ନାହିଁ । କାରଣ ସେତେବେଳକୁ ସେମାନେ ମାଟି ଉପରେ ଗ୍ଲଲିବାକୁ ଶିଖି ଯାଇଥିଲେ । ଖୋଲା, ଗଛବୃକ୍ଷ ନଥିବା ଜାଗା ପ୍ରତି ବି ସେମାନଙ୍କର ଆଉ ଡରଭୟ ନଥିଲା । କୌଣସି ଶତ୍ରୁ ଯଦି ସେମାନଙ୍କ ବାଟକୁ ଗ୍ଲଲି ଆସୁଥିଲା, ତେବେ ସାରା ବଣ ମଣିଷର ଦଳଟା ଟେକା ପଥର ଧରି ନିଜକୁ ରକ୍ଷା କରୁଥିଲେ ।

ସେତେବେଳେ ପଡ଼ିଥିବା କଠିନ କାଳଟା ବଣ ମଣିଷକୁ ନିଃଶେଷ କରି ଦେଇ ନାହିଁ କିମ୍ବା ଦକ୍ଷିଣାଞ୍ଚଳର ଜଙ୍ଗଲ ସହିତ ପଛକୁ ଫେରିବାକୁ ବି ବାଧ୍ୟ କରି ପାରି ନଥିଲା । ସେସବୁ କେବଳ ସେମାନଙ୍କର ମାଙ୍କଡ଼ ମଣିଷ ହୋଇ ସମୟଟାକୁ ଦ୍ରୁତ ନିକଟବର୍ତ୍ତୀ କରି ଦେଇଥିଲା ।

ତା'ପରେ ଆମର ସେହି ଦୂର ସଂପର୍କୀୟ ବଣ ମଣିଷମାନଙ୍କର କ'ଣ ଘଟିଲା ?

ସେମାନେ ଦକ୍ଷିଣାଞ୍ଚଳର ବଣ ଜଙ୍ଗଲ ସହିତ ପଛକୁ ହଟି ଚିରଦିନ ପାଇଁ ଜଙ୍ଗଲ ବାସିନ୍ଦା ହୋଇ ରହିଗଲେ । ବାସ୍ତବରେ ସେମାନଙ୍କ ପକ୍ଷରେ ଅନ୍ୟ କୌଣସି ଉପାୟ ନଥିଲା । ମାଙ୍କଡ଼-ମଣିଷ ଭଳି ସେମାନଙ୍କର ବିକାଶ ହୋଇ ନଥିଲା ଏବଂ ଯନ୍ତ୍ରପାତି ବ୍ୟବହାର ସେମାନେ ଜାଣି ନଥିଲେ । ଅଥଚ କ୍ଷିପ୍ର ଗତିରେ ସେମାନେ ଆହୁରି ଭଲ ଭାବେ ଗଛ ଚଢ଼ି ଶିଖିଲେ, ପୂର୍ବ ଅପେକ୍ଷା ଏଡାଳରୁ ସେଡାଳକୁ ଆହୁରି ଭଲ ଭାବେ ଝୁଲି ଡେଇଁ ପାରୁଥିଲେ ।

କେବଳ ଯେଉଁସବୁ ବଣ ମଣିଷ ବଡ଼ ଏବଂ ଶକ୍ତିଶାଳୀ ଥିଲେ, ଯେଉଁମାନେ ଗଛ ଚଢ଼ିବାରେ କମ୍ ଧୂରନ୍ଧର ଏବଂ ଗଛର ଉପରି ଭାଗରେ ରହିବାରେ ଅଭ୍ୟସ୍ତ ସେହିମାନେ ବଞ୍ଚିଗଲେ । ଯେଉଁମାନେ ବେଶି ଓଜନିଆ ଏବଂ ବଡ଼ ସେମାନଙ୍କ ପକ୍ଷରେ ଗଛରେ ରହିବା କଷ୍ଟକର ଥିଲା । ତେଣୁ କରି ସେ ବିଶାଳକାୟ ବଣ ମଣିଷମାନେ ବାଧ୍ୟ ହେଲେ ଗଛରୁ ତଳକୁ ଗ୍ଲଲି ଆସିବାକୁ । ଏବେ ବି ଗରିଲାମାନେ ଜଙ୍ଗଲର ତଳ ଚାଲରେ ରହୁଛନ୍ତି । ଢେଲା କିମ୍ବା ପଥରର ହତିଆର ସେମାନଙ୍କର ନଥିଲା, କେବଳ ଥିଲା ଶକ୍ତିଶାଳୀ ଥାବା ମଧ୍ୟରୁ ବାହାରି ଥିବା ତୀକ୍ଷ୍ଣ ନଖଗୁଡ଼ିକ ।

ଏହିପରି ଭାବେ ମଣିଷର ପୂର୍ବପୁରୁଷ ଏବଂ ବଣ ମଣିଷର ଜୀବନ ଧାରା ଚିରଦିନ ପାଇଁ ପୃଥକ୍ ହୋଇଗଲା ।

## ହଜିଲା ଖିଅ ।

ମଣିଷ ସଙ୍ଗେ ସଙ୍ଗେ ଦୁଇ ଗୋଡ଼ରେ ଚାଲିବାକୁ ଶିଖି ନଥିଲା । ପ୍ରଥମେ ବଡ଼ କଷ୍ଟରେ ଟଳମଳ ହୋଇ ତାକୁ ଚାଲିବାକୁ ପଡ଼ୁଥିଲା ।

ସେକାଳର ପ୍ରଥମ ମାଙ୍କଡ଼-ମଣିଷଟି ଥିଲା ଦେଖିବାକୁ କିପରି ?

ଏ ପୃଥିବୀରେ ଏବେ କୌଣସିଠି ମାଙ୍କଡ଼-ମଣିଷ ବଞ୍ଚି ରହିନି । କିନ୍ତୁ ଖୋଳିଲେ ସେମାନଙ୍କ ହାଡ଼ ଗୋଡ଼ କ'ଣ କେଉଁଠି ଆବିଷ୍କାର କରାଯାଇନି ?

ସେଭଳି ହାଡ଼ ଗୋଡ଼ ଯଦି ମିଳିଥାଏ ତେବେ ସେସବୁ ପ୍ରମାଣ କରି ଦେବ ଯେ, ବାନରଠାରୁ ମଣିଷର ଉଦ୍ଭବ ହୋଇଥିଲା । ଏହି ମାଙ୍କଡ଼-ମଣିଷ ହେଉଛି ଏଭଳି ଏକ ଗୁରୁତ୍ୱପୂର୍ଣ୍ଣ ଖିଅ, ଯିଏକି ମାଙ୍କଡ଼-ମଣିଷଠାରୁ ଆରମ୍ଭ ହୋଇ ଆଧୁନିକ ମଣିଷ ପାଖରେ ଶେଷ ହୋଇଛି । କିନ୍ତୁ ଏହି ଗୁରୁତ୍ୱପୂର୍ଣ୍ଣ ଖିଅଟିର ଚିହ୍ନବର୍ଣ୍ଣ ନଦୀ ତୀରବର୍ତ୍ତୀ ଖନନାଗାରରୁ ମିଳୁନି, କାଦୁଅ ଏବଂ ବାଲିର ଆସ୍ତରଣ ଭିତରେ ତାହା କେଉଁଠି ହଜି ଯାଇଛି ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ଜାଣନ୍ତି ମାଟି ଖୋଳି କିପରି ନାନା ତଥ୍ୟ ଆବିଷ୍କାର କରିବାକୁ ହୁଏ । ଖୋଳିବା ପୂର୍ବରୁ ପ୍ରଥମେ ସେମାନଙ୍କୁ ଠିକ୍ କରିବାକୁ ପଡ଼େ କେଉଁଠି ଖୋଳିବାକୁ ହେବ, କେଉଁଠି ସେ ହଜିଲା ଖିଅକୁ ଖୋଜିବାକୁ ହେବ । ପୃଥିବୀ ତ ଖଣ୍ଡେ ଛୋଟ କି ପରି ନୁହଁ ତାକୁ ସବୁ ଖୋଳି ପକାଇ ଦେଖି ଦେବ । ଛଣଗଦା ମଧ୍ୟରେ ଛୁଞ୍ଚିଟାଏ ଲୁଚି ରହିବା ଅପେକ୍ଷା ମାଟି ତଳେ ଆଦିମ ମଣିଷର ହାଡ଼ ଗୋଡ଼ ଭଲ ଭାବେ ଲୁଚି ରହି ଥାଏ ।

ଊନବିଂଶ ଶତାବ୍ଦୀର ଶେଷରେ ବିଖ୍ୟାତ ଜର୍ମାନ୍ ଜୀବ ବିଜ୍ଞାନୀ ଏର୍ଣ୍ଣେଷ୍ଟ ହେକେଲ ପ୍ରଥମେ ଏକ ବାଟ ଦେଖାଇଲେ । ସେ କହିଲେ, ମାଙ୍କଡ଼-ମଣିଷର (ବିଜ୍ଞାନ ଭାଷାରେ ଯାହାକୁ କୁହାଯାଏ "ପିଥେକ୍ୟାନ୍‌ଥ୍ରପାସ୍") ହାଡ଼ ଦକ୍ଷିଣ ଏସିଆରେ କେଉଁଠି ମିଳି ପାରିବ । ଏପରିକି ସେ ମାନଚିତ୍ରରେ ସେ ଜାଗାଟିକୁ ଦେଖାଇ ଦେଲେ । ଇଣ୍ଡୋନେସିଆର ସୁନ୍ଦା ଦ୍ୱୀପରେ ସେ ସ୍ଥାନଟି ଅବସ୍ଥିତ ।

ସେତେବେଳେ ଅନେକ ତାଙ୍କର ଏହି ମତକୁ ହସି କରି ଉଡ଼େଇ ଦେଇଥିଲେ । କିନ୍ତୁ ତାଙ୍କର ଏହି କଥାଟିକୁ ସମସ୍ତେ ଭୁଲି ଯାଇ ନଥିଲେ । ମନେ ରଖିଥିବା ଲୋକଙ୍କ ମଧ୍ୟରେ ଥିଲେ ଆମଷ୍ଟାରଡାମ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଇଉଜିନ୍ ଦୁବୋଇସ୍ । ସେ ହେକେଲଙ୍କ କଥା ଉପରେ ଏତେ ଗଭୀର ଭାବେ ବିଶ୍ୱାସ କରୁଥିଲେ ଯେ, ତାଙ୍କ ଚାକିରି ଛାଡ଼ି ଦେଇ ଏବଂ ସୁନ୍ଦା ଦ୍ୱୀପକୁ ଯାତ୍ରାରମ୍ଭ କରି ଦେଲେ ସେଇ "ମାଙ୍କଡ଼-ମଣିଷର" ହାଡ଼ ଆବିଷ୍କାର କରିବାକୁ । ତାଙ୍କର

ସହକର୍ମୀ ଏବଂ ଅନ୍ୟାନ୍ୟ ଅଧ୍ୟାପକମାନେ ବିସ୍ମୟରେ ହତବୁଦ୍ଧି ହୋଇ ପଡ଼ିଥିଲେ । କୌଣସି ସୁବୁଦ୍ଧିସଂପନ୍ନ ଲୋକ ଏଭଳି ନିର୍ବୋଧ ଅନ୍ୱେଷଣରେ ଯାଏ ନାହିଁ ବୋଲି ସେମାନେ ମତ ଦେଇଥିଲେ । ସେମାନେ ଥିଲେ ସମ୍ମାନସ୍ପଦ ବ୍ୟକ୍ତିବୃନ୍ଦ ଏବଂ ଅତି ବେଶି ହେଲେ ଆମଷ୍ଟାରଡାମ ନିଷ୍ଠଳ ରାସ୍ତାରେ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ବୁଲବୁଲି କରିବାରେ ଅଭ୍ୟସ୍ତ ।

କିନ୍ତୁ ସେମାନଙ୍କ କଥାରେ ଦବି ନଯାଇ, ଅଧ୍ୟାପକ ଡୁବୋଇସ୍ ତାଙ୍କର ସେହି ଦୁଃସାହସୀ ଉଦ୍ଦେଶ୍ୟ ସିଦ୍ଧି ପାଇଁ ସେନା ବିଭାଗରେ ଯୋଗ ଦେଲେ । ତା'ପରେ ସେ ଯାତ୍ରା କଲେ ସୁମାତ୍ରା ଦ୍ୱୀପକୁ ଜାହାଜରେ । ସେଠାରେ ଜଣେ ଘରୋଇ ଡାକ୍ତର ହିସାବରେ ସେ କାର୍ଯ୍ୟ ଆରମ୍ଭ କଲେ ।

ସୁମାତ୍ରା ଦ୍ୱୀପରେ ଅବସ୍ଥାନ କଲା ପରେ ସେ ତାଙ୍କର ସମସ୍ତ ଅଧିକା ସମୟକୁ ଗବେଷଣା କାର୍ଯ୍ୟରେ ନିୟୋଜିତ କଲେ । ତାଙ୍କ ନିର୍ଦ୍ଦେଶରେ ଦଳେ ଲୋକ ମାଟି ଖୋଳିବାରେ ଲାଗି ପଡ଼ିଲେ । ମାଟି ସବୁ ପାହାଡ଼ ପ୍ରମାଣେ ଗଦା ହୋଇଗଲା । ମାସେ ଯାଇ ଦୁଇ ମାସ ବିତିଲା, ତା'ପରେ ତିନିମାସ ବି ପୂର୍ଣ୍ଣ ହେଲା । ମାଟି ଖୋଳା ଚାଲିଥାଏ, କିନ୍ତୁ ମାଙ୍କଡ଼-ମଣିଷର ହାଡ଼ ଭଳି କୌଣସି କିଛିର ଚିହ୍ନ ବି ମିଳିଲା ନାହିଁ ।

ଏତ ସହଜ କଥା ନୁହଁ । ତୁମେ କୌଣସି ଜିନିଷ ହରାଇ ବସିଲେ, କେତେ ଅକ୍ଳାନ୍ତ ହୋଇ ତାକୁ ଖୋଜିବାରେ ଲାଗିପଡ଼ । କାରଣ ତମେ ଭାବ, ନିଶ୍ଚୟ ଜିନିଷଟା କେଉଁଠି ଅଛି । କିନ୍ତୁ ଡୁବୋଇସ୍‌ଙ୍କ କ୍ଷେତ୍ରରେ ବ୍ୟାପାରଟା ଭିନ୍ନ ରକମର । ସେତ ଅନୁମାନ କରୁଛନ୍ତି ହାଡ଼ କେଉଁଠି ଅଛି, ସେ ଜାଣନ୍ତି ନାହିଁ ହାଡ଼ ସତରେ କେଉଁଠି ମିଳିବ । ତା ସତ୍ତ୍ୱେ ବି ସେ ଅଧୈର୍ଯ୍ୟ ନହୋଇ ମାଟି ଖୋଳି ଚାଲିଲେ । ଦେଖୁ ଦେଖୁ ବର୍ଷେ ବିତି ଗଲା, ଆଉ ବର୍ଷେ ଗଲା, ତା'ପରେ ତୃତୀୟ ବର୍ଷ ପୂରିଗଲା । ତଥାପି ମିଳିଲା ନାହିଁ ସେ ହଜିଲା ଖିଅଟା ।

ଡୁବୋଇସ୍ ନହୋଇ ଆଉ କେହି ହୋଇଥିଲେ ସେ ନିଶ୍ଚୟ ଆଉ ଖୋଜି ନଥାନ୍ତେ । ସେ ଭାବିଥାନ୍ତେ ଏହି ଭଳି ଏକ ଭାବନା ପୋଷଣ କରିବାଟା ଏକ ବୋକାମି । କିନ୍ତୁ ଡୁବୋଇସ୍ ଅଧାବାଟରୁ କାମ ବନ୍ଦ କରିବାର ଲୋକ ନଥିଲେ ।

ସୁମାତ୍ରାରେ ମାଙ୍କଡ଼-ମଣିଷର ହାଡ଼ ମିଳିବ ନାହିଁ ବୋଲି ସେ ଯେତେବେଳେ ନିଶ୍ଚିତ ହେଲେ, ସେ ସ୍ଥିର କଲେ ଜାଭାରେ ଖୋଜିବାକୁ ।

ଜାଭା ଦ୍ୱୀପରେ ଶେଷକୁ ସେ ସଫଳ ହେଲେ ।

ତ୍ରିନିଲ ସହରର ନିକଟବର୍ତ୍ତୀ ସୋଲୋ ନଦୀ କୂଳରେ ସେ ମାଙ୍କଡ଼-ମଣିଷର

ଅସ୍ଥି ଆବିଷ୍କାର କଲେ । ସେସବୁ ମଧ୍ୟରେ ଥିଲା — ଉରୁ ହାଡ଼, ଦୁଇଟି ଦାନ୍ତ ଏବଂ ଖପୁରିର ଉପର ଅଂଶ, ପରେ ଉରୁ ହାଡ଼ର ଅନ୍ୟାନ୍ୟ ଅଂଶ ନିକଟବର୍ତ୍ତୀ ସ୍ଥାନରୁ ବାହାରିଲା ।

ଦୁବୋଇସ୍ ତାଙ୍କ ପ୍ରାଗୈତିହାସିକ ପୂର୍ବପୁରୁଷଙ୍କ ଖପୁରିକୁ ନିରୀକ୍ଷଣ କରି କଳ୍ପନା କରିବାକୁ ଲାଗିଲେ, ସେ କେମିତି ଦେଖା ଯାଉ ଥିଲା । ତା'ର କପାଳଟା କ୍ରମଶଃ ତଳକୁ ପଶି ଆସି ଚଟକା ହୋଇ ଯାଇଥିଲା । ଆଖି ଉପରକୁ କୁଞ୍ଚିତ ଭୂରୁ । ଦେଖିବାକୁ ମଣିଷ ଅପେକ୍ଷା ବାନରର ଖପୁରି ସହିତ ତା'ର ମେଳ ଥିଲା ଅଧିକ । କିନ୍ତୁ ଖପୁରି ଭିତରର ମସ୍ତିଷ୍କ ଗର୍ତ୍ତଟିକୁ ନିବିଡ଼ ଭାବେ ପରୀକ୍ଷା କରି ତାଙ୍କର ଦୃଢ଼ ବିଶ୍ୱାସ ଜନ୍ମିଲା ଯେ, ମାଙ୍କଡ଼-ମଣିଷ ଅନ୍ୟାନ୍ୟ ଆନ୍ଥ୍ରପଏଡ୍ ବଣ ମଣିଷଙ୍କଠାରୁ ଥିଲା ବେଶି ଚାଲକ । ସେମାନଙ୍କ ଅପେକ୍ଷା ତା'ର ମସ୍ତିଷ୍କର ଗର୍ତ୍ତଟା ଥିଲା ଅନେକ ବଡ଼ ।

ମୁଣ୍ଡର ଖଣ୍ଡେ ଖପୁରି, ଦୁଇଟା ଦାନ୍ତ ଏବଂ ଉରୁର ହାଡ଼ ଖଣ୍ଡେ ଅବଶ୍ୟ ଖୁବ୍ ବେଶି କିଛି ନୁହଁ, ଯାହାକୁ ନେଇ ତମେ କୌଣସି ସିଦ୍ଧାନ୍ତରେ ପହଞ୍ଚି ପାରିବ । କିନ୍ତୁ ଦୁବୋଇସ୍ ତାଙ୍କର ସଯତ୍ନ ଅନୁଧ୍ୟାନ ଫଳରେ "ମାଙ୍କଡ଼-ମଣିଷ" ସଂପର୍କରେ ଅନେକ ତଥ୍ୟ ଆବିଷ୍କାର କରି ପାରିଥିଲେ । ଉରୁର ହାଡ଼ ଖଣ୍ଡକରୁ ସେ ଆବିଷ୍କାର କଲେ ଯେ, ମାଙ୍କଡ଼-ମଣିଷ ତା'ର ବଙ୍କା ଗୋଡ଼ରେ ଚାଲିବା ଶିଖିଥିଲା ।

ସେ ତାଙ୍କର କଳ୍ପନା ଚକ୍ଷୁରେ ଦେଖି ପାରିଲେ, ତାଙ୍କର ସେ ମାଙ୍କଡ଼-ମଣିଷ ବଣ ମଧ୍ୟରେ ସଫା ଜାଗା ଖଣ୍ଡକରେ ଦୋହଲି ଚାଲୁଛି, ଦେହଟା କୁଜା ହୋଇ ଆସିଛି । ଆଣ୍ଠୁ ଦିଇଟା ବଙ୍କା ଏବଂ ହାତ ଦୁଇଟା ମାଟି ପର୍ଯ୍ୟନ୍ତ ଲମ୍ବି ଯାଇଛି । ବହଳିଆ ଭୂରୁ ତଳେ ଆଖି ଯୋଡ଼ିକ ଚାଲିଲା ବେଳେ ମାଟିକୁ ଚାହିଁ ରହିଛି ଆହାର ସଂଧାନରେ ।

ସେ ସେତେବେଳକୁ ଅବଶ୍ୟ ବଣ ମଣିଷ ହୋଇ କି ନଥିଲା, କିନ୍ତୁ ମଣିଷ ବି ହୋଇ ନଥିଲା । ଦୁବୋଇସ୍ ତା'ର ଏକ ନୂଆ ନାମକରଣ କଲେ — ପିଥେକ୍ୟାନ୍ଥ୍ରପାସ୍ ଇରେକ୍ଟସ ବୋଲି । ଅର୍ଥାତ୍ ବଣ ମଣିଷ ତୁଳନାରେ ସଳଖ ମାଙ୍କଡ଼-ମଣିଷ ।

କେହି ଭାବି ପାରନ୍ତି, ସେହି ଆବିଷ୍କାର ଦ୍ୱାରା ଦୁବୋଇସ୍ ଶେଷକୁ ତାଙ୍କ ଲକ୍ଷ୍ୟ ହାସଲ କଲେ! ସେଇ ରହସ୍ୟମୟ ମାଙ୍କଡ଼-ମଣିଷକୁ ସେ ଆବିଷ୍କାର କରି ପାରିଲେ । କିନ୍ତୁ ଏତିକିରେ ତାଙ୍କ କାମ ସରି ନଥିଲା, ବରଂ ଏକାମଟା ତାଙ୍କ ଅତି ଦୁଃଖକଷ୍ଟ ପୂର୍ଣ୍ଣ ଭବିଷ୍ୟତ ଜୀବନର ଶୁଭାରମ୍ଭ ଭଳି । ସେ ଅନୁଭବ କଲେ, ମାଟିର ଘନ ଆସ୍ତରଣଗୁଡ଼ିକୁ ଖୋଳିବାଟା ଖୁବ୍ ସହଜ, କିନ୍ତୁ ମଣିଷ ମନର ଘନ କୁସଂସ୍କାରର ଆସ୍ତରଣକୁ ଖୋଳି ଦୂର କରିବାଟା ଅନେକ କଠିନ ।

ଡୁବୋଇସ୍‌ଙ୍କ ଏହି ଆବିଷ୍କାର ପ୍ରତି ଘରି ଆଡ଼୍ ଆରମ୍ଭ ହୋଇଗଲା ରୋଷ ଆଉ ପରିହାସ । କାରଣ ଅନେକ ଲୋକ ସ୍ୱୀକାର କରିବାକୁ ରାଜି ନଥିଲେ ଯେ, ମଣିଷ ଏବଂ ବଣ ମଣିଷର ପ୍ରାଗୈତିହାସିକ ପୂର୍ବପୁରୁଷ ହେଉଛନ୍ତି ଏକ । ଧର୍ମୀୟ ପୁରୋହିତ ଏବଂ ସେମାନଙ୍କ ଅନୁଗାମୀମାନେ କହିଲେ, ଡୁବୋଇସ୍ ଆବିଷ୍କାର କରିଥିବା ଖପୁରିଟା ହେଉଛି ଗିବନ ବୋଲି ଏକ ପ୍ରକାର ଜନ୍ତୁର ଏବଂ ଉରୁ ହାଡ଼ଟା ହେଉଛି ତତ୍‌କାଳୀନ କୌଣସି ମଣିଷର । ଜାଭାରୁ ଆବିଷ୍କୃତ ଏହି ମାଙ୍କଡ଼-ମଣିଷକୁ ବଣ ମଣିଷ ଏବଂ ମଣିଷର ମିଶ୍ରଣ ବୋଲି ଚିତ୍ରଣ କରି କ୍ଷାନ୍ତ ହେଲେ ନାହିଁ, ସେମାନେ ପ୍ରମାଣ କରିବାକୁ ଚାହିଁଲେ, ଆବିଷ୍କୃତ କଙ୍କାଳଗୁଡ଼ିକ ବେଶି ପୁରୁଣା ନୁହଁ, କିଛି କାଳ ଧରି ଏହା ମାଟି ଭିତରେ ପୋତି ହୋଇକି ଥିଲା । ହଜାର ହଜାର ବର୍ଷ ଧରି ଏହା ମାଟି ତଳେ ପୋତି ହୋଇ କି ଥିଲା ବୋଲି ଯାହା କୁହାଯାଉଛି, ତାହା ସତ୍ୟ ନୁହଁ ବୋଲି ସେମାନେ ଦାବୀ କଲେ । ମୋଟ ଉପରେ ସେମାନେ ସବୁମତେ ଚେଷ୍ଟା କଲେ "ସଳଖ ମାଙ୍କଡ଼-ମଣିଷକୁ" ପୁଣି ସମାଧି ଦେଇ ଦେବାକୁ ଏବଂ ତାହା କେବେ ଆବିଷ୍କୃତ ହୋଇଥିଲା ବୋଲି ସମସ୍ତଙ୍କ ମନରୁ ପୋଛି ଦେବାକୁ ।

କିନ୍ତୁ ଡୁବୋଇସ୍ ସାହସର ସହିତ ତାଙ୍କର ଆବିଷ୍କାରକୁ ପ୍ରମାଣିତ କରିଥିଲେ । ଯେଉଁମାନେ ଏହି ଆବିଷ୍କାରର ବିରାଟ ତାତ୍ପର୍ଯ୍ୟକୁ ହୃଦୟଙ୍ଗମ କରିଥିଲେ, ସେମାନେ ଥିଲେ ଡୁବୋଇସ୍‌ଙ୍କ ସପକ୍ଷରେ ।

ପ୍ରତିପକ୍ଷ ସହିତ ତର୍କ ଯୁଦ୍ଧରେ ଅବତୀର୍ଣ୍ଣ ହୋଇ ଡୁବୋଇସ୍ ପ୍ରମାଣ କଲେ ଯେ, ମିଳିଥିବା କପାଳଟି ସମ୍ଭବତଃ ଗିବନର ନହୋଇ ପାରେ । କାରଣ ମାଙ୍କଡ଼-ମଣିଷ ଭଳି ଗିବନର କପାଳରେ ଗହ୍ୱର ନଥିଲା ।

ଏହି ଭାବେ ଅନେକ ବର୍ଷ ବିତିଗଲା, କିନ୍ତୁ ସଳଖ ମଣିଷ ମାଙ୍କଡ଼-ମଣିଷ ପରିବାରର ଅନ୍ତର୍ଗତ ହୋଇ ପାରିଲା ନାହିଁ ।

ହଠାତ୍ ବିଜ୍ଞାନୀମାନେ ଦେଖିବାକୁ ପାଇଲେ ନୂଆ ଏକ ମାଙ୍କଡ଼-ମଣିଷର ଅସ୍ଥିସାର । ସେଟା ଜାଭାର ସେଇ ମଣିଷର ହାଡ଼ ଭଳି ଦେଖିବାକୁ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ୟୁରୋପର ଜଣେ ବିଜ୍ଞାନୀ ଥରେ ଚିନ୍‌ର ଏକ ଔଷଧ ଦୋକାନକୁ ଯାଇ ଅନେକଗୁଡ଼ିଏ ଆଶ୍ଚର୍ଯ୍ୟ ଦର୍ଶନୀୟ ବସ୍ତୁ ଦେଖିବାକୁ ପାଇଲେ । ସେସବୁ ମଧ୍ୟରେ ଥିଲା ମଣିଷ ଭଳି ଦେଖିବାକୁ ଏକ ଔଷଧ ଗଛର ମଳ, ବିଭିନ୍ନ ମନ୍ତ୍ରପୂତ ତେନ୍ତୁଳିଆ, ଜୀବମାନଙ୍କର ହାଡ଼ ଏବଂ ଏକ "ଡ୍ରାଗନ୍-ଦାନ୍ତ" । ପ୍ରଦର୍ଶିତ ଜନ୍ତୁମାନଙ୍କର ଦାନ୍ତଗୁଡ଼ିକ ମଧ୍ୟରୁ ଗୋଟିଏ ଅଦ୍ଭୁତ ଦାନ୍ତ ଆଖିରେ ତାଙ୍କର ପଡ଼ିଲା । ସେଟା କୌଣସି ଜଣାଶୁଣା ଜନ୍ତୁର ହୋଇ ପାରେ ବୋଲି ତାଙ୍କର ମନେ ହେଲା

ନାହିଁ । ସେଟାର କେବଳ ମଣିଷର ଦାନ୍ତ ସହିତ ସାମଞ୍ଜସ୍ୟ ଥିଲା ଭଳି ଲାଗୁଥିଲା ।

ବିଜ୍ଞାନୀ ଜଣକ ସେ ଦାନ୍ତଟିକୁ କିଣି ୟୁରୋପର ଏକ ମିଉଜିଅମ୍‌କୁ ପଠାଇ ଦେଲେ । ଦାନ୍ତଟିର ନାମ ଦିଆ ଗଲା "ଚୀନି ଦାନ୍ତ" ବୋଲି ।

ଇତି ମଧ୍ୟରେ କୋଡ଼ିଏ ବର୍ଷ ବିତିଗଲା । ପେକିଂର ଚୌକୌଟିଅନ ନାମକ ଗୁମ୍ଫାରେ ଠିକ୍ ସେଇ ଭଳି ଆଉ ଦୁଇଟି କଳଦାନ୍ତ ଦେଖିବାକୁ ମିଳିଲା । ତା'ର ଆଉ କିଛି ଦିନ ପରେ ସେ ଦାନ୍ତର ମାଲିକର କଙ୍କାଳଟା ମଧ୍ୟ ସେଇଠି ମିଳିଲା । ତା'ର ନାମକରଣ ହେଲା ସିନାନ୍‌ଥ୍ରପାସ୍ ବୋଲି ।

ସତ କହିବାକୁ ଗଲେ ସେମାନେ ମଧ୍ୟ ସମସ୍ତ କଙ୍କାଳଟାକୁ ପାଇ ନଥିଲେ । ଆବିଷ୍କୃତ ଅସ୍ଥି କଙ୍କାଳ ମଧ୍ୟରେ ଥିଲା ୫୦ଟି ଦାନ୍ତ, ତିନୋଟି ଖପୁରି, ଏଗାରଟି ଦାନ୍ତ ମାଢ଼ି, ଗୋଟିଏ ଉରୁ ହାଡ଼, ଗୋଟିଏ ମେରୁ ଦଣ୍ଡ, ଖଣ୍ଡିଏ କଣ୍ଠ ଅସ୍ଥି, ଗୋଟିଏ ମଣିବନ୍ଧ ହାଡ଼ ଏବଂ ଆଉ ଗୋଟିଏ ଗୋଡ଼ ହାଡ଼ ।

ଏହାର ଅର୍ଥ ନିଶ୍ଚିତ ରୂପେ ନୁହଁ ଯେ, ସେ ଗୁହାବାସୀ ପ୍ରାଣୀଟିର ତିନୋଟି ମୁଣ୍ଡ ଆଉ ଗୋଟିଏ ମାତ୍ର ପାଦ ଥିଲା ।

ଯା'ର ଅର୍ଥ ହେଉଛି ଏହି ଗୁହାରେ ଦଳେ ସିନାନ୍‌ଥ୍ରପାସ୍ ବାସ କରୁଥିଲେ । ହଜାର ହଜାର ବର୍ଷ ଇତି ମଧ୍ୟରେ ବିତି ଗଲଣି ଏବଂ ଅନେକ ହାଡ଼ ସେଥିରୁ କୁଆଡ଼େ ବିଲୁପ୍ତ ଗଲଣି । ବଣ ଜଙ୍ଗଲର ପଶୁମାନେ ହୁଏତ ସେସବୁକୁ ନେଇ ଯାଇଛନ୍ତି । କିନ୍ତୁ ଯେତିକି ମିଳିଛି ସେଥିରୁ ସହଜରେ ବୁଝି ହୁଏ ସେ ଗୁହାର ସେହି ଆଦିମ ବାସିନ୍ଦାମାନେ ଦେଖିବାକୁ କିପରି ଥିଲେ । ଜଣେ ଜଣେ ବିଜ୍ଞାନୀ ଆଙ୍ଗୁଳିଟିଏ ପାଇଲେ ବି ସେ ସମସ୍ତ ଦେହ କଥାଟା ଚିନ୍ତା କରି ପାରନ୍ତି ।

ତୁମର ସେ ପ୍ରାଗୈତିହାସିକ ନାୟକ ତେବେ ଦେଖିବାକୁ କେମିତି ଥିଲେ ? ସତ କହିବାକୁ ଗଲେ ସେ ମୋଟେ ସୁନ୍ଦର ନଥିଲେ ।

ତୁମେ ଯଦି ହଠାତ୍ ତାକୁ ଦେଖିଥାନ୍ତ, ତେବେ ହୁଏତ ଭୟରେ ତୁମେ ଆପୁ ଆପୁ ହୋଇ ପଡ଼ିଥାନ୍ତ । କାରଣ ତା'ର ସେ ଚେପ୍‌ଟା କପାଳ, ଲମ୍ବା ମୁହଁ, ଲମ୍ବା ଏବଂ ବାଳୁଆ ହାତ ଦୁଇଟା ଥିଲା ଦେଖିବାକୁ ମାଙ୍କଡ଼ ଭଳି । କିନ୍ତୁ ତାକୁ ଯଦି ମାଙ୍କଡ଼ ବୋଲି ଧରି ନେଇଥାନ୍ତ, ତେବେ ସଙ୍ଗେ ସଙ୍ଗେ ତୁମର ମତ ବଦଳେଇବାକୁ ପଡ଼ିଥାନ୍ତା । କାରଣ କୌଣସି ମାଙ୍କଡ଼ ମଣିଷ ଭଳି ସଳଖ ହୋଇ ଚାଲି ପାରେ ନା ଏବଂ ମାଙ୍କଡ଼ର ମୁହଁ ବି ମଣିଷର ମୁହଁ ସହିତ ଏତେ ମେଳ ଖାଏନା ।

ତମର ସବୁ ସନ୍ଦେହ ଦୂର ହୋଇ ଯାଇଥାନ୍ତା ତମେ ଯଦି ସେ ମଣିଷ-ମାଙ୍କଡ଼ର ପଛେ ପଛେ ତା ଗୁହା ପର୍ଯ୍ୟନ୍ତ ଯାଇଥାନ୍ତ ।

ସେ ତା'ର ବଙ୍କା ଗୋଡ଼ରେ ଥପ୍ ଥପ୍ ହୋଇ ନଈ କୂଳେ କୂଳେ ଗୁହା ପାଖକୁ ଯାଉଥାନ୍ତା । ହଠାତ୍ ହୁଏତ ବସି ପଡ଼ିଥାନ୍ତା ଯାଉଁ ଯାଉଁ । ଗୋଟାଏ ବଡ଼ ପଥର ଖଣ୍ଡ ଉପରେ ତା ଆଖି ପଡ଼ି ଯାଇଛି । ସେଟିକୁ ସେ ଉଠେଇ ନେଇ



ବୈଜ୍ଞାନିକଗଣ ଗୋଟିଏ ଖପୁରି ଆଧାରରେ ସିନାନ୍ଥ୍ରପାସ୍‌ର ଆକୃତିକୁ ପୁନଃଚିତ୍ରଣ କରିଛନ୍ତି ।

ମନଯୋଗ ଦେଇ ଦେଖିଲା ଏବଂ ଆଉ ଏକ ପଥର ଖଣ୍ଡ ସହିତ ତାକୁ ବାଡ଼େଇ ଦେଲା । ତା'ପରେ ଛିଡ଼ା ହୋଇ ପଡ଼ି ପଥର ଖଣ୍ଡଟାକୁ ଧରି ପୁଣି ଥପ୍ ଥପ୍ ହୋଇ ଆଗେଇଲା ।

ଶେଷରେ ସେ ଆସି ପହଞ୍ଚିଲା ନଈ କୂଳର ଏକ ତୀଖ ଉଠାଣି ନିକଟରେ । ସେଟା ହେଉଛି ତା ଗୁହାକୁ ପ୍ରବେଶପଥ । ସେଠି ତା'ର ଦଳର ଅନ୍ୟମାନେ ଏକାଠି ହୋଇଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଦାଢ଼ିବାଲା ସର୍ଦାର ପଥର ହତିଆରରେ ଶିକାର କରା ଏକ ହରିଣର ମାଂସକୁ କାଟୁଛି । ସ୍ତ୍ରୀଲୋକମାନେ ପାଖରେ ବସି ସେଇ ମାଂସକୁ ଟିକିଟିକି କରୁଛନ୍ତି । ସାନ ସାନ ପିଲାମାନେ ଘରିଆଡ଼େ ଦୌଡ଼ା ଧାଁ କରୁଛନ୍ତି ମାଂସ ପାଇଁ । ଗୁହା ଭିତରେ ଜଳୁଥିବା ନିଆଁ ଟା ବାହାରକୁ ଦିଶୁଛି ।

ଏତେବେଳକେ ତୁମର ସନ୍ଦେହ ଦୂର ହୋଇ ଯାଇଥିବ : ଦୁନିଆରେ ଏଭଳି କୌଣସି ମାଙ୍କଡ଼ ଅଛି , ଯିଏକି ନିଆଁ ଲଗାଇ ପାରେ ଏବଂ ହତିଆର ତିଆରି କରି

ପାରେ ? କିନ୍ତୁ ତୁମେ ପଗ୍ଭରି ପାର : ସିନାନ୍‌ଥ୍ରପାସ୍ ଯେ ପଥର ଆଉ ହାଡ଼ରେ ହତିଆର ତିଆରି କରୁଥିଲ ଏବଂ ନିଆଁ ଜାଳୁଥିଲ, ତା'ର ପ୍ରମାଣ କ'ଣ ?

ଏହି ପ୍ରଶ୍ନର ଉତ୍ତର ଦିଏ ଚୌକୌଟିଆନ ଗୁହାଟି । ସେଥିରୁ ମିଳିଥିବା ଜିନିଷ ମଧ୍ୟରେ ମାଙ୍କଡ଼-ମଣିଷର ହାଡ଼ ଗୋଡ଼ ସାଙ୍ଗକୁ ଅଛି ଦୁଇ ହଜାର ଖଣ୍ଡ ଫୁଲ ପଥର ହତିଆର ଏବଂ ୨୩ଟି ଆସ୍ତରଣଯୁକ୍ତ ମାଟିମିଶା ପାଉଁଶ ।

ତା ଅର୍ଥ, ମଣିଷ-ମାଙ୍କଡ଼ମାନେ ଏହି ଗୁହାରେ ବହୁ ବର୍ଷ ଧରି ବାସ କରୁଥିଲେ ଏବଂ ସେମାନଙ୍କର ସେ ନିଆଁ ଦିନ ରାତି ଜଳୁଥିଲ ।

ସେମାନେ ହୁଏତ ଜାଣି ନଥିଲେ ନିଆଁ କିପରି ଜଳେଇବାକୁ ହୁଏ, ସେମାନେ କେବଳ ନିଆଁ "ସଂଗ୍ରହ କରୁଥିଲେ", ଯେମିତି ସେମାନେ ସଂଗ୍ରହ କରୁଥିଲେ ଭକ୍ଷଣ ଯୋଗ୍ୟ ଫଳ ମୂଳ ଏବଂ ହତିଆର ପାଇଁ ପଥର ଖଣ୍ଡ ।

ବଣରେ ଅନେକ ସମୟରେ ନିଆଁ ଲଗିଯାଏ । ସେହି ଆଦିମ ଅତୀତର ମଣିଷ ଖଣ୍ଡେ ଜଳନ୍ତା ନିଆଁ ଖଣ୍ଡକୁ ହୁଏତ ବଡ଼ ସାବଧାନ ସହକାରେ ତା'ର ଗୁହା ମଧ୍ୟକୁ ଘେନି ଆସିଥିବ । ସେଠି ତା'ର ଗୁହା ମଧ୍ୟରେ, ବର୍ଷା ବତାସରୁ ସୁରକ୍ଷିତ ଜାଗାରେ ସେ ନିଆଁକୁ ତା'ର ଅତୀବ ମୂଲ୍ୟବାନ ସଂପଦ ହିସାବରେ ସାଇତି ରଖୁଥିବ ଯତ୍ନର ସହିତ ।

# ତୃତୀୟ ଅଧ୍ୟାୟ

## ନିୟମ ଭାଙ୍ଗିଲା ମଣିଷ ।

ଆମର ନାୟକ ପଥରର ହତିଆର ଏବଂ ଗଛର ଡାଳ ବ୍ୟବହାର କରିବାକୁ ଶିଖି ଯିବା ଦ୍ୱାରା ବଳବାନ ଏବଂ ସ୍ୱାଧୀନ ହୋଇ ଉଠିଲା । ଏଣିକି ପାଖରେ କେଉଁଠି ଫଳ ମୂଳ ଗଛ ନଥିଲେ ସେ ବ୍ୟସ୍ତ ହେଲା ନାହିଁ । ଆହାର ଅନ୍ୱେଷଣରେ ତା ଘରଠାରୁ ଅଧିକରୁ ଅଧିକ ଦୂରକୁ ସେ ଯାଇ ପାରିଲା – ଗୋଟିଏ ଛୋଟ ଜଙ୍ଗଲ ଦୁନିଆରୁ ଆଉ ଏକ ଜଙ୍ଗଲ ଦୁନିଆକୁ, ଅନେକ ସମୟ ପାଇଁ ଖୋଲା ସମତଳ ଭୂଇଁ ରହିଗଲା । ଏହା ଦ୍ୱାରା ଆଗେ ସେ ଯେଉଁ ନିୟମ ସବୁ ମାନିକି ଚଳୁଥିଲା ସେସବୁକୁ ଭାଙ୍ଗିଲା ଏବଂ ଯେଉଁସବୁ ଫଳ ମୂଳ ଖାଉ ନଥିଲା ତାକୁ ଖାଇଲା ।

ତେଣୁ ମଣିଷର ପ୍ରଥମ କାମ ହେଲା ପ୍ରକୃତିର ନିୟମକୁ ଭାଙ୍ଗିବା ।

ଗଛର ବାସିନ୍ଦା ଏଣିକି ଗଛରୁ ଓହ୍ଲାଇ ଆସି ମାଟିରେ ଚାଲିଲା । ଚାରି ଗୋଡ଼ ପରିବର୍ତ୍ତେ ସେ ଦୁଇଟି ଗୋଡ଼ରେ ଠିଆ ହୋଇ ଚାଲିଲା । ଏପରି ସବୁ ଖାଦ୍ୟ ଖାଇବାକୁ ଆରମ୍ଭ କଲା, ଯିଏକି କେଉଁ କାଳେ ତା'ର ଖାଦ୍ୟ ନଥିଲା । କେବଳ ସେତିକି ନୁହଁ, ଖାଦ୍ୟ ଯୋଗାଡ଼ କରିବାର କାଇଦାଟା ମଧ୍ୟ ବଦଳି ଗଲା ।

ଏ ଦୁନିଆରେ ସମସ୍ତ ଜୀବଜନ୍ତୁ ଏବଂ ଗଛବୃଛ ପରସ୍ପର ଉପରେ ନିର୍ଭରଶୀଳ । ଦେହର ଅଭିବୃଦ୍ଧି ପାଇଁ ଆବଶ୍ୟକ ହେଉଥିବା ପୁଷ୍ଟି ନିମିତ୍ତ ସେମାନେ ସମସ୍ତେ "ପୁଷ୍ଟି ଚକ୍ର" ସହିତ ଛନ୍ଦାଛନ୍ଦି । ଜଙ୍ଗଲରେ ଗୁଣ୍ଡୁଚିମୂଷା ପାଇନ୍ ମଞ୍ଜିକୁ ଖାଏ ଏବଂ ଶିଆଳ ଖାଏ ଗୁଣ୍ଡୁଚିମୂଷାକୁ । ଏହି ଭାବେ ଜଡ଼ିଉଛି ଏସବୁ ସଂଯୁକ୍ତ ପାଇନ୍ ମଞ୍ଜି – ଗୁଣ୍ଡୁଚିମୂଷା – ଶିଆଳ । କିନ୍ତୁ ଗୁଣ୍ଡୁଚିମୂଷା କେବଳ ପାଇନ୍ ମଞ୍ଜି ଖାଏ ନାହିଁ । ଛତୁ ଏବଂ ଅନ୍ୟାନ୍ୟ ଗଛର ମଞ୍ଜି ମଧ୍ୟ ସେ ଖାଏ । ଏବଂ ଶିଆଳ ହିଁ କେବଳ ଗୁଣ୍ଡୁଚିମୂଷା ଶିକାର କରେ ନାହିଁ । ଅନ୍ୟାନ୍ୟ ପଶୁପକ୍ଷୀମାନେ ଯଥା ବାଜପକ୍ଷୀ ମଧ୍ୟ ଗୁଣ୍ଡୁଚିମୂଷା ଖାଇଥାନ୍ତି । ତେଣୁ ଆମେ ଆଉ ଗୋଟାଏ ଶିକୁଳି ଦେଖିବାକୁ ପାଉଛେ – ଛତୁ ଏବଂ ମଞ୍ଜି – ଗୁଣ୍ଡୁଚିମୂଷା – ବାଜପକ୍ଷୀ । ଜଙ୍ଗଲର ସମସ୍ତ ବାସିନ୍ଦା ଏହି ଶିକୁଳି ସହିତ ଯୁକ୍ତ ।

ଆମ ନାୟକଟି ଥିଲା ତା'ର ସେ ଜଙ୍ଗଲ ଦୁନିଆର ଏହି "ପୁଷ୍ଟି ଚକ୍ର"ରେ

ଗୋଟିଏ ଖିଅ । ସେ ଫଳ ମୂଳ ଏବଂ ବାଦାମ ଖାଉଥିଲା ଏବଂ ଖଣ୍ଡାଦାନ୍ତିଆ ବାଘ ତାକୁ ଶିକାର କରୁଥିଲା ।

ତା'ପରେ, ହଠାତ୍ ଆମ ନାୟକଟି ଏହି ଶୃଙ୍ଖଳକୁ ଭାଙ୍ଗିବାକୁ ଲାଗିଲା । ସେ ଏଭଳି ସବୁ ଖାଦ୍ୟ ଖାଇବାକୁ ଆରମ୍ଭ କଲା, ଯାହାକୁ ସେ କେବେ ଖାଉ ନଥିଲା । ଏଣିକି ଆଉ ସେ ଖଣ୍ଡାଦାନ୍ତିଆ ବାଘ ଆଉ ଅନ୍ୟାନ୍ୟ ହିଂସ୍ର ଜନ୍ତୁଙ୍କର ଶିକାର ହେବାକୁ ରାଜି ହେଲା ନାହିଁ, ଯେଉଁ ବାଘ ତା'ର ପୂର୍ବପୁରୁଷମାନଙ୍କୁ ହଜାର ହଜାର ବର୍ଷ ଧରି ଖାଇ ଆସିଥିଲା ।

ତମେ ପଚାରି ପାର, ତା'ର ଏତେ ସାହସ ଆସିଲା କୁଆଡ଼ୁ ? ମାଟି ଉପରକୁ ଆସିବାକୁ ସେ ସାହସ ପାଇଲା କେଉଁଠୁ, ସେଠି ତ ତା'ର ରକ୍ତ ମାଂସ ପାଇବା ପାଇଁ ଧାରୁଆ ଦାନ୍ତବାଲା ପଶୁମାନେ ଅପେକ୍ଷା କରିଥିଲେ ? ତା ପକ୍ଷରେ ଘଟଣାଟା ଥିଲା ତଳେ ଅପେକ୍ଷା କରିଥିବା ଏକ ବିଲେଇ ମୁହଁରେ ଗଛରୁ ଖସି ପଡ଼ୁଥିବା ଚଢ଼େଇ ଭଳି ।

ମଣିଷ ଏହି ନୂଆ ସାହସ ଲାଭ କଲା ତା'ର ହାତରୁ । ହାତରେ ଧରୁଥିବା ପଥର ଏବଂ ମୂଳ ଖୋଳିବା ପାଇଁ ବ୍ୟବହାର କରୁଥିବା ଡାଙ୍ଗ ହେଲା ତା'ର ଅସ୍ତ୍ର । ତା'ର ପ୍ରଥମ ଯନ୍ତ୍ରଗୁଡ଼ିକ ହେଲା ତା'ର ପ୍ରଥମ ଅସ୍ତ୍ର ।

ତା'ଛଡ଼ା ସେ ଆଉ ଏକା ଏକା ଜଙ୍ଗଲରେ ବୁଲିଲା ନାହିଁ, ଦଳବାନ୍ଧି ବୁଲିଲା ।

କୌଣସି ଜନ୍ତୁ ତାକୁ ଆକ୍ରମଣ କଲେ ସମଗ୍ର ମଣିଷ ଦଳଟା ତା ଉପରକୁ କୁଦି ଆସି ସେମାନଙ୍କ ଅସ୍ତ୍ର ସାହାଯ୍ୟରେ ତାକୁ ଭଗେଇ ଦେଉଥିଲେ ।

ତା'ଛଡ଼ା ନିଆଁ କଥା ଆମକୁ ଭୁଲି ଗଲେ ଚଳିବ ନାହିଁ । ନିଆଁ ସାହାଯ୍ୟରେ ମଣିଷ ଅନ୍ୟାନ୍ୟ ଦୁର୍ଦ୍ଦାନ୍ତ ପ୍ରାଣୀମାନଙ୍କୁ ଡରେଇ ଦେଉଥିଲା ।

## ମଣିଷ ହାତ ଦ୍ୱାରା ନିର୍ଦ୍ଦେଶିତ ପଥ ।

ଗଛରୁ ମାଟି ଉପରକୁ, ଜଙ୍ଗଲରୁ ନଦୀ ଉପତ୍ୟକାକୁ – ଏହି ଭାବେ ପ୍ରାଗୈତିହାସିକ ମଣିଷ ଯାତ୍ରା କରିଥିଲା । ଏହି ଭାବେ ଶେଷକୁ ସେ ଛିନ୍ନ କରିଥିଲା ସେହି ଶୃଙ୍ଖଳଟିକୁ, ଯିଏକି ତାକୁ ଗଛ ସହିତ ବାନ୍ଧି ରଖିଥିଲା ।

ତେବେ, ଆମେ କିପରି ଜାଣିବା ଯେ, ମଣିଷ ନଦୀ ଉପତ୍ୟକାକୁ ଯାତ୍ରା କରିଥିଲା ବୋଲି ?

ହଁ, ତା'ର ପ୍ରମାଣ ମିଳେ, ସେ ପ୍ରମାଣ ହେଉଛି ତା'ର ଯାତାୟାତର ଚିହ୍ନସବୁ ।

କିନ୍ତୁ, ଏତେ ଦିନ ଯାଏ ସେ ଚିହ୍ନ କ'ଣ ରହିଛି ?

ସେ ଚିହ୍ନଗୁଡ଼ିକ ଅବଶ୍ୟ ସାଧାରଣ ଅର୍ଥରେ ଯାହାକୁ ପାଦ ଚିହ୍ନ ବୋଲି କୁହେଁ, ସେଇଆ ନୁହଁ । ସେଗୁଡ଼ିକ ହେଉଛି ମଣିଷର ହାତ ଚିହ୍ନ ।

ପ୍ରାୟ ଶହେ ବର୍ଷ ଆଗେ ଫ୍ରାନସ୍‌ର ସୋମେ ନଦୀ ଉପତ୍ୟକାରେ କେତେକ ଶ୍ରମିକ କଙ୍କର ଏବଂ ବାଲି ଖୋଳୁଥିଲେ ।

ଅନେକ ପୂର୍ବେ, ବହୁ ଯୁଗ ଆଗରୁ, ସୋମେ ତା'ର ତରୁଣ ଅବସ୍ଥା ଖୁବ୍ ଖରସ୍ରୋତା ନଦୀ ଥିଲା । ସେତେବେଳେ ସେ ମାଟି ଭିତରକୁ ଖୋଳି ପକାଉଥିଲା ଏବଂ ତା'ର ସୁଅ ମୁହଁରେ ବଡ଼ ବଡ଼ ପଥର ଖଣ୍ଡ ପଡ଼ିଲେ ବି ଭସେଇ ନେଉଥିଲା । ସେସବୁକୁ ଠେଲି ନେଲା ବେଳେ ପଥର ସାଙ୍ଗରେ ପଥର ଘଷି ହୋଇ ଗୋଲ ଏବଂ ସାଉଁଳିଆ ହୋଇ ଯାଉଥିଲା ବା ଚୂଡ଼ା ହୋଇ ଯାଉଥିଲା । ପରେ ନଦୀର ବେଗ କମି ଆସିଲାରୁ ଏହି ସବୁ ପଥର ଖଣ୍ଡ ଉପରେ ଜମି ଗଲା ବାଲି ଆଉ ପଟୁମାଟି ସବୁ ।

ଶ୍ରମିକମାନେ ଏହି ବାଲି ଆଉ ପଟୁମାଟିକୁ ଖୋଳୁଥିଲେ ତା ତଳେ ଥିବା ପଥର ଖଣ୍ଡଗୁଡ଼ିକୁ ପାଇବା ପାଇଁ ।

ଖୋଳୁ ଖୋଳୁ ହଠାତ୍ ସେମାନେ ଅଦ୍ଭୁତ ରକମର କେତେକ ଜିନିଷ ପାଇଥିଲେ । ସେସବୁ ମଧ୍ୟରୁ କେତେକ ପଥର ସାଉଁଳିଆ କିମ୍ବା ଗୋଲଗାଲ ନଥିଲା । ସେଗୁଡ଼ିକ ଦୁଇ ପାଖକୁ ଧାରୁଆ ହୋଇ ଆସି ଚେପ୍‌ଟା ଦିଶୁଥିଲା । କିଏ ସେସବୁକୁ ଏମିତି ଧାରୁଆ କଲା ତେବେ ? ନଇ ସୁଅରେ ତ ପଥର ଖଣ୍ଡସବୁ ଏମିତି ଦୁଇ ପାଖକୁ ଧାରୁଆ ହୋଇ ପାରେନା । ବରଂ ସୁଅରେ ଘୋଷାରି ହୋଇ ହୋଇ ସେସବୁ ସାଳଗ୍ରାମ ପାଲଟି ଯିବା କଥା ।

ଜାକ୍ ବୁସେର ଦ ପେର୍ଥ ନାମକ ଜଣେ ପ୍ରତ୍ନତତ୍ତ୍ୱବିତ୍‌ଙ୍କ ଦୃଷ୍ଟିକୁ ଅଣାଗଲା ଏହିସବୁ ପଥରକୁ । ସେ ନିକଟବର୍ତ୍ତୀ ସ୍ଥାନରେ ସେତେବେଳେ ବାସ କରୁଥିଲେ । ତାଙ୍କ ସଂଗ୍ରହଶାଳାରେ ସୋମେ ଉପତ୍ୟକାରୁ ମିଳିଥିବା ଅନେକ ଆଗ୍ରହପ୍ରଦ ପୁରୁଣା ଜିନିଷପତ୍ର ରହିଥାଏ । ସେସବୁ ମଧ୍ୟରେ ଥିଲା ମାମଥ୍‌ର ଦାନ୍ତ, ଗଣ୍ଡାର ଶିଙ୍ଘ ଏବଂ ଗୁହାରେ ବାସ କରୁଥିବା ଭାଲୁର ଖପୁରି । ଏହିସବୁ ବିଶାଳ ପ୍ରାଣୀ ଏକଦା ସୋମେ ନଦୀକୁ ପାଣି ପିଇବାକୁ ଆସୁଥିଲେ, ଆଜିକାଲି ଗୋରୁ ଗାଈ ଯେମିତି ପିଇବାକୁ ଆସନ୍ତି ।

କିନ୍ତୁ ବୁସେରଙ୍କ ସଂଗ୍ରହଶାଳାରେ ପ୍ରାଗୈତିହାସିକ ମଣିଷର କଙ୍କାଳ ନଥିଲା । ସେ ତା'ର ହାଡ଼ର କୌଣସି ଚିହ୍ନବର୍ଣ୍ଣ ପାଉ ନଥିଲେ ।

ଏତିକିବେଳେ ସେ ପଥରଗୁଡ଼ିକୁ ସେ ପାଇଗଲେ । ସେସବୁକୁ ଦେଖି ତାଙ୍କ

ମନରେ ପ୍ରଶ୍ନ ଉଠିଲା, କିଏ ଏମିତି ଦୁଇ ଆଡ଼କୁ ଯାକୁ ଧାରୁଆ କରି ପାରେ ? ଏହା କେବଳ ମଣିଷର ହାତ ଦ୍ୱାରା ସମ୍ଭବ ।

ବୁସେର ସଉକରେ ପ୍ରତ୍ନତତ୍ତ୍ୱ ଚର୍ଚ୍ଚା କରୁଥିଲେ, ସେ ପେଶାଦାର ନଥିଲେ । ବଡ଼ ଆଗ୍ରହ ସହକାରେ ସେସବୁକୁ ସେ ପରୀକ୍ଷା କରିବାକୁ ଲାଗିଲେ । ସେସବୁ ତ ପ୍ରାଗୈତିହାସିକ ମଣିଷର ହାଡ଼ ଗୋଡ଼ ନୁହେଁ ! କିନ୍ତୁ ସେସବୁ ଥିଲା ତା'ର ଉଦ୍ୟୋଗର ସ୍ମାରକ । ଏହା ନଦୀର କାମ ନୁହଁ, ମଣିଷର କାମ—ଏଥିରେ ତ କୌଣସି ସନ୍ଦେହ ନାହିଁ ।

ବୁସେର ତା'ପରେ ତାଙ୍କ ଗବେଷଣା ଉପରେ ବହିଟିଏ ଲେଖିଲେ । ସେ ବହିଟିର ନାମ ହେଉଛି : "ଆଦିମ ମଣିଷର ଉଦ୍ୟୋଗ" ।

ଏହା ପରେ ଆରମ୍ଭ ହୋଇଗଲା ସଂଗ୍ରାମ । ଚାରିଆଡ଼ୁ ଚାଲିଲା ତାଙ୍କ ଉପରେ ଆକ୍ରମଣ, ଯେମିତି ଦୁବୋଇସ୍‌ଙ୍କ କ୍ଷେତ୍ରରେ ହୋଇଥିଲା ।

ସେ ସମୟର ବଡ଼ ବଡ଼ ପ୍ରତ୍ନତତ୍ତ୍ୱବିତ୍‌ମାନେ ପ୍ରମାଣ କରିବାକୁ ଚାହିଁଲେ ଯେ, ଏହି ଛୋଟ ପୁରାତନ ପଦାର୍ଥ ସଂଗ୍ରହକାରୀଙ୍କର ବିଜ୍ଞାନ ସଂପର୍କରେ କୌଣସି ଧାରଣା ନାହିଁ । ତାଙ୍କର ସେ ପଥର କୁରାଢ଼ି ଅସଲୀ ନୁହଁ, ଏବଂ ତାଙ୍କର ସେ ବହିକୁ ବେଆଇନ କରିବାକୁ ସେମାନେ ଦାବୀ କଲେ । କାରଣ ବୁସେରଙ୍କ ତତ୍ତ୍ୱଟା ମଣିଷର ଉତ୍ପତ୍ତି ସଂପର୍କରେ ଗିର୍ଜା ଆଉ ମନ୍ଦିର ଯେଉଁ ଶିକ୍ଷା ଦିଏ, ତାକୁ ଚାଲେଞ୍ଜ କରୁଛି ।

ପ୍ରାୟ ପନ୍ଦର ବର୍ଷ କାଳ ଏହି ଯୁଦ୍ଧ ଚାଲିଥିଲା ।

ଇତି ମଧ୍ୟରେ ବୁସେର ବୁଢ଼ା ହୋଇ ଗଲେ ଏବଂ ତାଙ୍କ ବାଳସବୁ ପାଚିଗଲା । ସେ କିନ୍ତୁ ତାଙ୍କ ଚିନ୍ତା ଧାରାରେ ଅଟଳ ରହି ସଂଗ୍ରାମ ଚଳେଇ ଯାଉଥାନ୍ତି, ମଣିଷଜାତିର ବିରାଟ ଅତୀତକୁ ପ୍ରମାଣ କରିବାରେ ଲାଗିଥାନ୍ତି । ପ୍ରଥମ ବହିଟି ପରେ ସେ ଆଉ ଦୁଇଟି ବହି ମଧ୍ୟ ଲେଖିଲେ ।

ବୁସେରଙ୍କଠାରୁ ତାଙ୍କର ଶତ୍ରୁମାନେ ଅଧିକ ଶକ୍ତିଶାଳୀ ଥିଲେ । କିନ୍ତୁ ଶେଷକୁ ବୁସେର ହିଁ ଜୟ ଲାଭ କଲେ । ବିଖ୍ୟାତ ବ୍ରିଟିଶ୍ ଭୂତତ୍ତ୍ୱବିଦ୍ ଚାର୍ଲସ୍ ଲିୟେଲ୍ ଏବଂ ଜୋସେଫ୍ ପ୍ରେଷ୍ଟୱିଚ୍ ପ୍ରକାଶ୍ୟରେ ତାଙ୍କ ଆବିଷ୍କାରକୁ ସମର୍ଥନ କଲେ । ସେମାନେ ନିଜେ ସୋମେ ଉପତ୍ୟକାକୁ ଯାଇ ସବୁ କିଛି ପରୀକ୍ଷା କରି ଦେଖିଲେ । ବୁସେରଙ୍କ ଦ୍ୱାରା ସଂଗୃହିତ ଜିନିଷକୁ ଭଲ ଭାବେ ଅନୁଧ୍ୟାନ କରି ଘୋଷଣା କଲେ ଯେ, ଆବିଷ୍କୃତ ହତିଆରଗୁଡ଼ିକ ହେଉଛି ସେହି ପ୍ରାଗୈତିହାସିକ ମଣିଷର । ସେ ମଣିଷ ହେଉଛି ବିରାଟକାୟ ହାତୀ ଆଉ ଗଣ୍ଡାମାନଙ୍କର ସମସାମୟିକ । ଏବେ ସେମାନେ ପୃଥିବୀ ପୃଷ୍ଠରୁ ଲୋପ ପାଇ ଗଲେଣି ।

ଲିୟେଲ୍‌ଙ୍କ ଦ୍ୱାରା ଲିଖିତ "ମଣିଷର ଅତି ପ୍ରାଚୀନତା" (୧୮୬୩ ମସିହାରେ ପ୍ରକାଶିତ) ପୁସ୍ତକଟି ବୁସେରଙ୍କ ଶତ୍ରୁମାନଙ୍କର ସମସ୍ତ ଯୁକ୍ତିକୁ ଖଣ୍ଡନ କରି ସେସବୁରେ ପୂର୍ଣ୍ଣଚ୍ଛେଦ ଟାଣି ଦେଲା । ତା'ପରେ ସେମାନେ କଥା ବଦଳେଇ କହିଲେ, "ସିଏତ ନୂଆ କିଛି ଆବିଷ୍କାର କରି ନାହାନ୍ତି । ତାଙ୍କ ପୂର୍ବରୁ ଏହିସବୁ ପ୍ରାଗୈତିହାସିକ ହତିଆର ତ ଆହୁରି ଅନେକ ଜାଗାରେ ଆବିଷ୍କୃତ ହୋଇଛି ।"

ଲିୟେଲ୍ ଏହି ନୂଆ ଯୁକ୍ତିର ଜବାବରେ ରହସ୍ୟ କରି କହିଥିଲେ : "ବିଜ୍ଞାନ ଯେତେବେଳେ କୌଣସି ଗୁରୁତ୍ୱପୂର୍ଣ୍ଣ ତଥ୍ୟ ଆବିଷ୍କାର କରେ, ସେତେବେଳେ ତାକୁ ଧର୍ମବିରୋଧୀ ବୋଲି ନିନ୍ଦା କରାଯାଏ, କିନ୍ତୁ ପରେ ସେଇ ଲୋକେ ପୁଣି କହନ୍ତି, ଏତ ସମସ୍ତଙ୍କୁ ଜଣା, ଏଥିରେ ନୂଆ କ'ଣ ଅଛି ।"

ସୋମେ ଉପତ୍ୟକାରେ ବୁସେର ଆବିଷ୍କାର କରିଥିବା ଦିଇ ଧାରିଆ ପଥର ଭଳି ଆହୁରି ଅନେକ ପଥର ପୃଥିବୀର ବିଭିନ୍ନ ସ୍ଥାନରେ ଏବେ ଆବିଷ୍କୃତ ହୋଇଛି । ସେସବୁ ମିଳିଛି ପ୍ରାଚୀନ ନଦୀ ଶଯ୍ୟାରେ, ଯେଉଁଠି ପଥର ଖଣ୍ଡ ସବୁ ଖୋଳା ଯାଇଛି ପଟୁମାଟି ତଳୁ ।

ଏହା ଛଡ଼ା ଆଧୁନିକ ମଣିଷ ପ୍ରାଗୈତିହାସିକ ଯୁଗର ଏଭଳି କିଛି ହତିଆର ଆବିଷ୍କାର କରିଛି, ଯାହାକୁ ମାଙ୍କଡ଼-ମଣିଷ କାମ କରି ଶିଖିଲା ବେଳେ ବ୍ୟବହାର କରୁଥିଲା ।

ସବୁଠାରୁ ପୁରାତନ ପଥର ହତିଆର ହେଉଛି ସେ ଦିଇ ଧାରିଆ ପଥର, ଯାହାକୁ ସେ ଆଉ ଗୋଟିଏ ଦିଇ ଧାରିଆ ପଥର ସହିତ ଘଷିକି ତିଆରି କରୁଥିଲା । ଆଖପାଖରେ ମିଳୁଥିବା ଛୋଟ ଛୋଟ ପଥର ଖଣ୍ଡ ସବୁ ଏହି କାମରେ ଲାଗୁଥିଲା ।

ଏହିସବୁ ପଥର ହତିଆରଗୁଡ଼ିକ ହେଉଛି ମଣିଷ ହାତର ଚିହ୍ନ, ଯିଏକି ଆମକୁ ବାଟ କଢ଼େଇ ନେଉଛି ନଦୀ ଉପତ୍ୟକା ଆଉ ବାଲି ବନ୍ଧ ଆଡ଼କୁ । ସେଇସବୁ ସ୍ଥାନରେ, ଯେଉଁଠି ଏସବୁ ଜିନିଷ ମାଟି ତଳୁ ମିଳୁଛି, ସେ ପ୍ରାଗୈତିହାସିକ ମଣିଷ ଏଭଳିସବୁ ଜିନିଷ ଖୋଜୁଥିଲା, ଯାହାକୁ ନେଇ ତା'ର ପଥରର ଥାବା ଆଉ ଦାନ୍ତ ତିଆରି କରୁଥିଲା ।

ଏସବୁ ଜିନିଷ ହେଉଛି ମଣିଷର କରାମତି । କୌଣସି ଜନ୍ତୁ କିମ୍ବା ପକ୍ଷୀ ତା'ର ଖାଦ୍ୟ ଏବଂ ବସା ତିଆରି କରିବାର ଜିନିଷ ଖୋଜି ପାରେ । କିନ୍ତୁ ସେ କେବେହେଲେ ଏଭଳି କୌଣସି ଜିନିଷର ସନ୍ଧାନ କରିବ ନାହିଁ, ଯଦ୍ଦ୍ୱାରା ସେ ତା'ର ଅତିରିକ୍ତ ଥାବା ବା ଦାନ୍ତ ତିଆରି କରିବ ।

# ଜୀବନ୍ତ କୋଦାଳ ଏବଂ ଜୀବନ୍ତ ପିମ୍ପା ।

ପଶୁପକ୍ଷୀ ଏବଂ କୀଟମାନଙ୍କର ନିର୍ମାଣ କରିବା କ୍ଷମତା ସଂପର୍କରେ ତୁମେମାନେ ସମ୍ଭବତଃ ଶୁଣିଥିବ ବା ପଢ଼ିଥିବ । ସେମାନଙ୍କ ମଧ୍ୟରେ ବଢ଼େଇ, ପଥରମିସ୍ତ୍ରୀ ଚନ୍ତୀ ଏବଂ ଏପରିକି ଦରଜୀ ବି ଅଛନ୍ତି । କାଠୁରିଆ ଭଳି ବିଭର ନାମକ ପ୍ରାଣୀଟି ତା'ର ତୀକ୍ଷ୍ଣ ଦାନ୍ତରେ ଗଛକୁ କାଟିକି ବି ଶୁଆଇ ଦିଏ । ବିଭର ଖାଲି ଗଛକୁ କାଟି ପକାଏ ନାହିଁ, ସେସବୁ କଟାଗଛର ଗଣ୍ଡି ଆଉ ଡାଳ ଦେଇ ବନ୍ଧ ମଧ୍ୟ ତିଆରି କରି ପାରେ । ଏହି ବନ୍ଧ ଫଳରେ ନଦୀର ପାଣି କୂଳକୁ ଉଚ୍ଛୁଳାଇ ଦିଏ ଏବଂ ସେ ପାଣି ଜମି ଗାଡ଼ିଆ ତିଆରି ହୁଏ । ବିଭରକୁ ସେ ଗାଡ଼ିଆଗୁଡ଼ିକ ଭଲ ଲାଗେ ।

ଜଙ୍ଗଲରେ ଏକ ପ୍ରକାର ଧୂସର ପିମ୍ପୁଡ଼ି ଅଛନ୍ତି । ସେମାନେ ତ ଶୁଖିଲା ଗୋଳିଆ ପାଇନ୍ ପତ୍ରରେ ସେମାନଙ୍କ ହୁଙ୍କା ଗଢ଼ି ପକାନ୍ତି । ସେଇସବୁ ହୁଙ୍କାକୁ ଖଣ୍ଡେ ବାଡ଼ିରେ ଯଦି ତମେ ଠେଲିକି ପକାଇ ଦେବ, ତେବେ ଦେଖିବ ସେଥିରେ କେତେ ସୁନ୍ଦର ଗୁହା ସବୁ ରହିଥିବ ।

ତୁମେ ତା ହେଲେ ପ୍ରଶ୍ନ କରି ପାର, ଏଭଳି ଦିନ କେବେ ଆସିବ କି ଯେତେବେଳେ ପିମ୍ପୁଡ଼ି ଏବଂ ବିଭରମାନେ ମଣିଷର ସମାସଦ ହୋଇ ପାରିବେ ? ଆଜିଠାରୁ ଦଶ ଲକ୍ଷ ବର୍ଷ ପରେ ପିମ୍ପୁଡ଼ିମାନେ କେବେ ସେମାନଙ୍କର ଖବରକାଗଜ ବାହାର କରିବେ କି ? କାରଖାନାରେ ପିମ୍ପୁଡ଼ିମାନେ କାମ କରିବେ କି ? ପିମ୍ପୁଡ଼ି ନିର୍ମିତ ଉଡ଼ାଜାହାଜରେ ଯିବା ଆସିବା କରିବେ କି, ରେଡିଓ ଖୋଲି ପିମ୍ପୁଡ଼ିମାନଙ୍କ ଗୀତ ଶୁଣିବେ କି ? ନିଶ୍ଚୟ ପାରିବେ ନାହିଁ । ନପାରିବାର କାରଣ ହେଉଛି ମଣିଷ ଏବଂ ପିମ୍ପୁଡ଼ି ମଧ୍ୟରେ ଏକ ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟ ରହିଛି ।

ଏହି ପାର୍ଥକ୍ୟଟି କ'ଣ ?

ମଣିଷ ପିମ୍ପୁଡ଼ିଠାରୁ ବଡ଼ ବୋଲି ?

ନା ।

ମଣିଷର ଦୁଇଟି ଗୋଡ଼ ଏବଂ ପିମ୍ପୁଡ଼ିର ଛଅଟା ବୋଲି ?

ନା । ଆମେ ଯେଉଁ ପାର୍ଥକ୍ୟଟି କଥା କହିବାକୁ ଚାହୁଁଛୁ ସେଟା ସଂପୂର୍ଣ୍ଣ ଭିନ୍ନ ।

ମଣିଷ କିପରି କାମ କରେ ଟିକେ ଚିନ୍ତିକି ଭାବ ତ ସେ ଖାଲି ହାତରେ କିମ୍ବା ଦାନ୍ତରେ କାମ କରେ ନାହିଁ । ସେଥି ପାଇଁ ସେ ବ୍ୟବହାର କରେ କୁରାଢ଼ି,

କୋଦାଳ ବା ହାତୁଡ଼ି । କିନ୍ତୁ ତୁମେ ଯେତେ ଖୋଜିଲେ ବି କୌଣସି ଉଇ ହୁଙ୍କାରେ ଗୋଟାଏ ପିମ୍ପୁଡ଼ି କୋଦାଳ ବା ପିମ୍ପୁଡ଼ି ହାତୁଡ଼ି ପାଇବ ନାହିଁ ।

ପିମ୍ପୁଡ଼ି କୌଣସି ଜିନିଷକୁ କାଟିଲା ବେଳେ ତା ମୁଣ୍ଡରେ ଥିବା କଇଁଚି ଭଳି ଖୁଣ୍ଡ ଦୁଇଟିରେ କାଟେ । କୌଣସି ଗାତ ଖୋଳିଲା ବେଳେ ସେ ତା' ଦେହରେ ଲାଗିଥିବା ଖୁରୋଟି ଜୀବନ୍ତ ଗଇଁତିକୁ ବ୍ୟବହାର କରେ । ଏହି ଖୁରୋଟି ଗଇଁତି ହେଉଛି ତା'ର ଛଅ ଗୋଡ଼ ମଧ୍ୟରୁ ଖୁରୋଟି ଗୋଡ଼ । ଆଗକୁ ଥିବା ଦୁଇଟି ଗୋଡ଼ରେ ସେ ଖୋଳି ଖୁଲେ, ପଛ ଦୁଇ ଗୋଡ଼ରେ କଟାମାଟିକୁ ହଟେଇ ଦିଏ ଏବଂ ମଝି ଦୁଇ ଗୋଡ଼ରେ ସେ ଉଭା ହୋଇକି ରହେ କାମ କଲା ବେଳେ ।

ପିମ୍ପୁଡ଼ିମାନଙ୍କର ଜୀବନ୍ତ ପିପା ସବୁ ମଧ୍ୟ ଥାଏ । ସେସବୁକୁ କୁହାଯାଏ, "ପିମ୍ପୁଡ଼ି ଗାଈ" ବୋଲି । କେତେକ ଜାତିର ପିମ୍ପୁଡ଼ି ଅଛନ୍ତି, ଯେଉଁମାନେ ସେମାନଙ୍କ ହୁଙ୍କାର ବିଭିନ୍ନ ମହଲାକୁ ଏହିସବୁ ଜୀବନ୍ତ ପିପାରେ ଭରି ଦେଇଥାନ୍ତି । ଅନ୍ଧାରୁଆ କୁନି କୁନି କୋଠରୀରେ ଧାଡ଼ି ଧାଡ଼ି ଏବଂ ଥାକ ଥାକ ହୋଇ ଛାତ ପର୍ଯ୍ୟନ୍ତ ସେସବୁ ଖୁନ୍ଦି ହୋଇଥାଏ । ସେସବୁ ହଲଚଲ ନହୋଇ ସେଇମିତି ରହିଥାନ୍ତି । ତା'ପରେ ହଠାତ୍ କର୍ମରତ ଏକ ପିମ୍ପୁଡ଼ି କୋଠରୀ ଭିତରକୁ ପଶିଯାଏ । ତା ଶିଙ୍ଗରେ ବାରମ୍ବାର ସେ ପିପାଗୁଡ଼ିକୁ ଛୁଇଁ କି ଜୀବନ୍ତ କରି ଦିଏ ଏବଂ ପିପାଟି ହଲଚଲ ହେବାକୁ ଲାଗେ ।

ତା'ପରେ ଆମେ ଦେଖିବାକୁ ପାଏଁ ତା'ର ଗୋଡ଼, ମୁଣ୍ଡ ଆଉ ପେଟକୁ । ସେ ପିପାଟି ଅନ୍ୟ କିଛି ନୁହେଁ, ସେ ହେଉଛି ଗୋଟିଏ ପିମ୍ପୁଡ଼ିର ବିରାଟ ଫମ୍ପିଲା ଚଳିପେଟ । ତା'ପରେ ତା ପାଟିଟା ମୁକୁଳା ହୋଇ ଯାଏ ଏବଂ ମୁହଁରେ ବିନ୍ଦୁଏ ମହୁ ଦେଖିବାକୁ ମିଳେ । କର୍ମରତ ସେଇ ପିମ୍ପୁଡ଼ିଟି ଆସିଥିଲା କିଛି ଖାଇବା ପାଇଁ । ମହୁ ଟୋପାଟକ ଖାଇ ଦେଇ ସେ ପୁଣି କାମକୁ ବାହାରି ଯାଏ । ତା'ପରେ ସେ "ପିମ୍ପୁଡ଼ି ଗାଈଟି" ଶୋଇ ପଡ଼େ ନିଘୋଡ଼ ନିଦରେ ।

ଏସବୁ ହେଉଛି ପିମ୍ପୁଡ଼ିଙ୍କର "ଜୀବନ୍ତ" ହତିଆର । ଆମ ଭଳି ସେମବୁ କୃତ୍ରିମ ନୁହେଁ । ସେମାନଙ୍କର ସେସବୁ ହତିଆର ହେଉଛି ପ୍ରାକୃତିକ, ସେସବୁ ସେମାନେ ନିଜଠୁଁ ଅଲଗା କରି ପାରନ୍ତି ନାହିଁ ।

ବିଭରମାନଙ୍କର ସେ ହତିଆର ମଧ୍ୟ ସେମାନଙ୍କ ଦେହର ଅଂଶ ବିଶେଷ । ଗଛ କାଟିବା ପାଇଁ ଆମ ଭଳି ସେମାନଙ୍କର କୁରାଢ଼ି ନାହିଁ । ସେ ସେଥି ପାଇଁ ତା ଦାନ୍ତକୁ ବ୍ୟବହାର କରେ । ପିମ୍ପୁଡ଼ି ଏବଂ ବିଭର, କେହି ହେଲେ ନିଜ ହତିଆର ତିଆରି କରନ୍ତିନି । ଜନ୍ମରୁ ସେମାନଙ୍କ ଦେହ ସହିତ ସେସବୁ ଥାଏ ।

ଉଦାହରଣ ସ୍ୱରୂପ ଢସ୍‌ବିଲ ନାମକ ପକ୍ଷୀଟି କଥା ଧରାଯାଉ ।

ଜସ୍‌ବିଇ ଖାଇଲା ବେଳେ କୌଣସି କଣ୍ଟା ଛୁରି ବ୍ୟବହାର କରେନା । ସେ ତା'ର ଶଣ୍ଢୁଆସି ଭଳି ଥଣ୍ଟିରେ ପାଇନ୍ ଫଳରୁ ମଞ୍ଜିକୁ ସବୁ ବାହାର କରେ । ସେ ଥଣ୍ଟ ହେଉଛି ତା'ର କଣ୍ଟା ଆଉ ଛୁରି । ଖାଇ ସାରିଲା ପରେ ସେ ତାକୁ ଫୋପାଡ଼ି ଦିଏନା, ଏପରିକି ଶୋଇଲା ବେଳେ ମଧ୍ୟ । କାରଣ ତା'ର ନିଜ ଥଣ୍ଟ ହେଉଛି ତା'ର କଣ୍ଟା ଆଉ ଛୁରି ।

ବାଦାମ ଭାଙ୍ଗିବା ପାଇଁ ଆମେ ଯେମିତି ଶଣ୍ଢୁଆସି ଭଳି ଏକ ଯନ୍ତ୍ର ବ୍ୟବହାର କରେ, ସେଇ ଭଳି ପାଇନ୍ ମଞ୍ଜି ହେଉ ବା ଅନ୍ୟ କୌଣସି ବାଦାମ ଜାତୀୟ ଫଳକୁ ଭାଙ୍ଗିବା ପାଇଁ ପକ୍ଷୀର ଥଣ୍ଟଟା ଯଥେଷ୍ଟ ।

କେବଳ ତଫାତ୍‌ଟା ହେଉଛି ମଣିଷ ବାଦାମ ପାଇଁ ଏକ ବାଦାମଭଙ୍ଗା ଯନ୍ତ୍ର ବ୍ୟବହାର କରେ, କିନ୍ତୁ ଜସ୍‌ବିଇ ପକ୍ଷୀ ହଜାର ହଜାର ବର୍ଷ ଧରି ପାଇନ୍ ଜଙ୍ଗଲରେ ବାସ କରି ଆସିଛି ଏବଂ ପାଇନ୍ ମଞ୍ଜି ଖାଇ ବଞ୍ଚିଛି । ପ୍ରଥମ ଦୃଷ୍ଟିପାତରେ ସେଇ ସବୁ ହତିଆରଗୁଡ଼ିକ ପ୍ରତି ତମର ଈର୍ଷା ହେବ, ଯେଉଁଗୁଡ଼ିକୁ ତୁମେ ନିଜଠାରୁ ଅଲଗା କରି ପାରିବ ନାହିଁ କି ହରେଇ ବି ପାରିବ ନାହିଁ । କିନ୍ତୁ ତୁମେ ଟିକେ ଯଦି ଗଭୀର ଭାବେ ଚିନ୍ତା କରିବ, ତେବେ ଦେଖିବ, ଏହିସବୁ ହତିଆର ପ୍ରକୃତରେ ଭଲ ନୁହେଁ । ସେସବୁକୁ କେଉଁଠି ରଖି ଦେଇ ଯାଇ ପାରିବ ନାହିଁ କି ପରିବର୍ତ୍ତନ ବି କରି ପାରିବ ନାହିଁ ।

ବିଭରର ମୁନିଆ ଦାନ୍ତଗୁଡ଼ିକ ବୁଢ଼ା ହୋଇ ଯିବା ସଙ୍ଗେ ସଙ୍ଗେ ଦନ୍ତରା ହୋଇଗଲେ ସେ ସେଗୁଡ଼ିକୁ ନେଇ କମାରଶାଳାରେ ମୁନିଆ କରି ନେଇ ପାରିବ ନାହିଁ । ଏବଂ ପିମ୍ପୁଡ଼ି ମଧ୍ୟ ତା'ର ଗୋଡ଼କୁ ବଦଳେଇ ଆହୁରି ନୂଆ, ଦ୍ରୁତ ଗୋଡ଼ ଲଗେଇ ପାରିବ ନାହିଁ ।

## ହାତ ବଦଳରେ ଖଣିତି ।

ମଣିଷ ଯଦି ଅନ୍ୟାନ୍ୟ ପ୍ରାଣୀମାନଙ୍କ ଭଳି କାଠ, ଲୁହା ବା ଇସ୍‌ପାତ ଉପରେ ନିର୍ଭର ନକରି କେବଳ ହତିଆର ଉପରେ ନିର୍ଭର କରୁଥାନ୍ତା, ତେବେ କ'ଣ ହୁଅନ୍ତା ?

ସେ କେବେ ହେଲେ ନୂଆ ହତିଆର ଆବିଷ୍କାର କରୁ ନଥାନ୍ତା କି ତା'ର ସହଜାତ ହତିଆରକୁ ପରିବର୍ତ୍ତନ କରୁ ନଥାନ୍ତା । ତା'ର ଯଦି ଏକ ଖଣିତିର ଦରକାର ପଡ଼ୁଥାନ୍ତା, ତେବେ ତା'ର ହାତଟା ଜନ୍ମରୁ ଖଣିତି ଭଳିଆ ହୋଇଥାନ୍ତା । ଆମେ ଏକଥା କେବଳ କଳ୍ପନା କରୁଛେ, କାରଣ ବାସ୍ତବରେ ଏହା କେବେ ଘଟି

ପାରେ ନାହିଁ । କିନ୍ତୁ ଆମେ ଯଦି ଭାବି ନିଏ ଯେ, ସେଭଳି ଏକ ପ୍ରାଣୀ ଜନ୍ମ ନେଇଥିଲା । ସେ ହୁଏତ ଏକ ବଢ଼ିଆ ମାଟି ଖୋଳାଳୀ ହୋଇ ପାରିଥିବ, କିନ୍ତୁ ଅନ୍ୟକୁ ଭଲ ଖୋଳାଳୀ ହେବା ପାଇଁ ସେ ତାଲିମ୍ ଦେଇ ପାରି ନଥାନ୍ତା । ଜଣକର ଭଲ ଦୃଷ୍ଟି ଶକ୍ତି ଥିଲେ ସେ କ'ଣ ଅନ୍ୟକୁ ତା'ର ଆଖି ଦୁଇଟିକୁ ଦାନ କରି ଦେଇ ପାରେ ।

ଏଭଳି ଏକ ପଶୁକୁ ଦିନ ସାରା ତା'ର ଖଣିତି ଭଳି ହାତଟିକୁ ଧରି ସାରା ଦିନ ଯିବା ଆସିବା କରିବାକୁ ପଡ଼ିବ । କିନ୍ତୁ ଅନ୍ୟ କାମ ପାଇଁ ତା'ର ସେ ହାତଟି ଯଦି କାମରେ ନ ଲାଗେ ତେବେ କ'ଣ ହେବ କୁହତ ? ସେ ପ୍ରାଣୀଟି ଯଦି ମରିଯାଏ ତେବେ ତା'ର ସେ ଖଣିତି ହାତଟି ମଧ୍ୟ ଶେଷ ହୋଇ ଯିବ । ଆଜନ୍ମ ଖୋଳାଳୀଟି ତା'ର ଖଣିତିଟିକୁ ତା'ର ବଂଶଧରମାନଙ୍କୁ ଦାନ କରି ପାରେ ଯଦି ତା'ର ନାତି ଏବଂ ଅଣନାତିମାନେ ତା'ର ସେ ଖଣିତି ହାତଟିକୁ ବଂଶାନୁକ୍ରମିକ ସୂତ୍ରରେ ପାଇଥାନ୍ତି ।

କିନ୍ତୁ ବାସ୍ତବରେ ଏହା ଘଟେ ନାହିଁ । ଏକ ଜୀବନ୍ତ ହତିଆର ଭବିଷ୍ୟତ ବଂଶଧରଙ୍କର ଏକ ଜୀବନ୍ତ ଅଂଶ ହୋଇପାରେ ଯଦି ତାହା ସେମାନଙ୍କର କ୍ଷତିକାରକ ନହୋଇ, କାମରେ ଲାଗିଥାଏ ।

ଲୋକେ ଯଦି ଚୁଚୁନ୍ଦ୍ରା ଭଳି ଗାତରେ ବାସ କରୁଥାନ୍ତେ, ତେବେ ସେମାନଙ୍କର ଖଣିତି ଭଳି ହାତର ଆବଶ୍ୟକତା ଥାଆନ୍ତା ।

କିନ୍ତୁ ସେଭଳି ଏକ ହାତ ମାଟି ଉପରେ ବାସ କରୁଥିବା ଏକ ପ୍ରାଣୀ ପକ୍ଷରେ ଏକ ଅନାବଶ୍ୟକ ବିଳାସିତା ହୋଇଥାନ୍ତା ।

ପ୍ରାକୃତିକ ଏବଂ ଜୀବନ୍ତ ଏକ ହତିଆର ତିଆରି ପାଇଁ ଅନେକ କଥା ବିଗ୍ଭର କରିବାକୁ ପଡ଼େ । ମଣିଷ ଅବଶ୍ୟ ଆନନ୍ଦର ସହିତ ତା'ର ବିକାଶ ଦିଗରେ ଅନ୍ୟ ପଥ ଗ୍ରହଣ କରି ନେଇଛି । ସେ ଏକ ଖଣିତି ହାତ ପାଇଁ ପ୍ରକୃତିର ଦୟା ଉପରେ ନିର୍ଭର କରିନି । ସେ ନିଜେ ସେଭଳି ଏକ ହାତ ତିଆରି କରି ନେଇଛି । କେବଳ ଖଣିତି ନୁହେଁ, ଛୁରି, କୁରାଢ଼ି ଏବଂ ଆହୁରି ଅନେକ ଅନେକ ହତିଆର ସୃଷ୍ଟି କରିଛି ।

ଉତ୍ତରାଧିକାର ସୂତ୍ରରେ ସେ ତା'ର ପୂର୍ବପୁରୁଷମାନଙ୍କଠାରୁ ପାଇଛି ଦଶଟି ହାତ ଆଙ୍ଗୁଳି, ଦଶଟି ଗୋଡ଼ ଆଙ୍ଗୁଳି, ବତିଶିଟି ଦାନ୍ତ । କିନ୍ତୁ ତା ସହିତ ସେ ଯୋଗ କରିଛି ହଜାର ହଜାର କିସମର ହତିଆର । ସେସବୁ ମଧ୍ୟରୁ କେଉଁଟା ଲମ୍ବା ତ ଆଉ କେଉଁଟା ଛୋଟ, କେଉଁଟା ପତଳା ତ ଆଉ କେଉଁଟା ମୋଟା, କେତେକ ତୀକ୍ଷ୍ଣ ଆଉ କେତେକ କୁଣ୍ଠୁରା, ଆଦି ।

ଏହା ଦ୍ୱାରା ସେ ଅନ୍ୟାନ୍ୟ ପ୍ରାଣୀ ଜଗତ ଅପେକ୍ଷା ଏତେ ଦ୍ରୁତ ଗତିରେ ଆଗେଇ ଯାଇଛି ଯେ , ଅନ୍ୟମାନଙ୍କ ପକ୍ଷରେ ତାକୁ ଧରିବା ଅସମ୍ଭବ ହୋଇ ପଡ଼ିଛି ।

## ଶ୍ରମଶୀଳ ନଦୀ ଓ ଶ୍ରମଶୀଳ ମଣିଷ ।

ମାଙ୍କଡ଼-ମଣିଷ ଯେତେବେଳେ ଧୀରେ ଧୀରେ ମଣିଷ ହେଉଥିଲା , ସେତେବେଳେ ସେ ତା'ର ପଥର ଥାବା ଏବଂ ପଥର ଦାନ୍ତ ତିଆରି କରୁ ନଥିଲା । ସେସବୁକୁ ସେ ଯୋଗାଡ଼ କରୁଥିଲା ଆମେ ଯେମିତି ଏବେ ଛତୁ ଆଉ ବେରି କୋଳି ସଂଗ୍ରହ କରେ , ସେଇ ପରି । ନଦୀ କୂଳରେ ବୁଲିଲା ବେଳେ ସେ ମନୋଯୋଗ ସହକାରେ ଖୋଜୁଥିଲା ପ୍ରକୃତି ଦ୍ୱାରା ଧାରୁଆ ଏବଂ ସାଉଁଳିଆ ପଥର ଖଣ୍ଡଗୁଡ଼ିକୁ ।

ଏହିସବୁ "ସ୍ଥାନୀୟ" ଧାରୁଆ ପଥରସବୁ ସାଧାରଣତଃ ମିଳିଥାଏ ସେଇସବୁ ଜାଗାରେ , ଯେଉଁଠି ଏକଦା ନଦୀର ତଳ ଦେଶରେ ଥିବା ପାହାଡ଼ ଉପରେ ଖୁବ୍ ଉପରୁ ଜଳ ଆସି ପଡ଼ୁଥିଲା । ଜୋରରେ ଜଳ ପଡ଼ିବା ଫଳରେ ସେଠାରେ ଭଉଁରୀ ସୃଷ୍ଟି ହେଉଥିଲା । ଭଉଁରୀରେ ବଡ଼ ବଡ଼ ପଥର ସବୁ ପରସ୍ପର ଦେହରେ ବାଡ଼େଇ ହୋଇ ଝଣ୍‌ଝଣ୍ ଶବ୍ଦ ସୃଷ୍ଟି କରୁଥିଲେ । ନଦୀ ମଧ୍ୟ ଭଉଁରୀ ଭିତରେ ପଡ଼ି ତା "ଶ୍ରମର" ଫଳ କ'ଣ ହେଉଛି ଜାଣି ପାରୁ ନଥିଲା । ତେଣୁ କରି ଭଉଁରୀରେ ସୃଷ୍ଟି ହେଉଥିବା ପଥର ଖଣ୍ଡଗୁଡ଼ିକ ମଧ୍ୟରୁ ଅଳ୍ପ କେତେକ ମଣିଷର କାମରେ ଆସୁଥିଲା ।

ଏହିସବୁ ପଥରକୁ କାମରେ ଲଗେଇ ଭଳି ଅବସ୍ଥାରେ ପକାଇଲା ବେଳକୁ ସେ ଶିଖି ଯାଇଥିଲା ପଥର ହତିଆର କେମିତି ତିଆରି କରିବାକୁ ହୁଏ ।

ଏବଂ ସେତେବେଳେ ଯାହା ଘଟିଥିଲା ତାହା ମଣିଷ ଇତିହାସରେ ଆହୁରି ଅନେକ ଥର ଘଟିବ : ମଣିଷ ପ୍ରକୃତିରୁ ଯାହା କିଛି ପାଏ ତା ସ୍ଥାନରେ ପୁଣି ଆଉ ଗୋଟାଏ ନିଜେ ତିଆରି କରି ସ୍ଥାପନ କରେ । ପ୍ରକୃତିର ବିରାଟ କର୍ମଶାଳାର ଗୋଟାଏ କୋଣକୁ ମଣିଷ ତା'ର ନିଜସ୍ୱ କର୍ମଶାଳା ସ୍ଥାପନ କରିଥିଲା ଏବଂ ସେଠାରେ ସେ ଏପରିସବୁ ଜିନିଷ ତିଆରି କରିଥିଲା , ଯାହାକୁ ସେ ପ୍ରକୃତି ମଧ୍ୟରେ ଦେଖି ନଥିଲା ।

ଏହାହିଁ ହେଉଛି ପଥର ହତିଆର ଇତିହାସ ଏବଂ ହଜାର ବର୍ଷ ପରେ ଧାତୁର ଇତିହାସ । ପ୍ରକୃତିରୁ ମିଳୁଥିବା ଧାତୁକୁ ବ୍ୟବହାର କରିବା ପରିବର୍ତ୍ତେ ମଣିଷ ଧାତବ ପଥରକୁ ତରଳେଇ ଧାତୁ ତିଆରି କଲା । ସେ ଯାହା ଦେଖିବାକୁ ପାଉଥିଲା

ତାଠାରୁ ପାଦେ ଆଗେଇ ଯାଇ ନିଜେ ଆଉ ଗୋଟେ କିଛି ତିଆରି କରୁଥିଲା । ଏହା ଦ୍ୱାରା ସେ ଆଉ ପାଦେ ଆଗେଇ ଯାଉଥିଲା ତା'ର ମୁକ୍ତି ଆଡ଼କୁ, ପ୍ରକୃତିର କଠୋର ନିୟମରୁ ମୁକ୍ତି ଲାଭ କରିବା ଆଡ଼କୁ ।

ମଣିଷର ହତିଆର ପାଇଁ ଯେଉଁସବୁ ଉପାଦାନ ଦରକାର ସେସବୁକୁ ସେ ପ୍ରଥମେ ତିଆରି କରି ପାରୁ ନଥିଲା । ଯେତେବେଳେ ଯେଉଁ ଉପାଦାନ ମିଳୁଥିଲା ତାକୁ ସେ ତା'ର ଆବଶ୍ୟକତା ସହିତ ଖାପ ଖାଇଲା ଭଳି କରି ତିଆରି କରୁଥିଲା ।

ଏହି ଭାବେ, ଖଣ୍ଡେ ଭଲ ପଥର ପାଇଗଲା କ୍ଷଣି ସେ ତାକୁ ଆଉ ଗୋଟେ ପଥର ଦିହରେ ଘଷି ଗୋଟାଏ ହତିଆର ତିଆରି କରି ନେଉଥିଲା ।

ଏହି ଭାବେ ସେ ତିଆରି କଲା ତୀକ୍ଷ୍ଣ ଧାର ଥିବା ଏକ ଓଜନିଆ ହତିଆର । ତା'ର ନାମ ହେଉଛି ହାତ-ଟାଙ୍ଗିଆ । ଛୋଟ ଛୋଟ ପଥର ଖଣ୍ଡରୁ ସେ ତିଆରି କଲା କାଟିବା, ଛାଟିବା ଆଉ ଖୋଳିବା ହତିଆର ସବୁ ।

ମାଟି ତଳେ ଯେଉଁସବୁ ଆଦିମ ପ୍ରାଗୈତିହାସିକ ହତିଆରର ସନ୍ଧାନ ମିଳେ ସେସବୁ ପ୍ରାକୃତିକ ପଥର ଭଳି ଏତେ ଦିଶେ ଯେ, କିଏ ତାକୁ ତିଆରି କରିଛି କହିବା କଷ୍ଟକର । ମଣିଷ କରିଛି କି ନଦୀ କରିଛି ବା ଗରମରୁ ଥଣ୍ଡାକୁ ଜଳବାୟୁର ପରିବର୍ତ୍ତନ ହେତୁ, ବର୍ଷା ଏବଂ ପାଣି ଖାଇ ପଥର ଫାଟିକି ଖଣ୍ଡ ଖଣ୍ଡ ହୋଇ ଯାଏ ।

ଏହା ଛଡ଼ା, ଆଉ କେତେକ ହତିଆର ମିଳିଛି, ଯାହାକୁ ନିଶ୍ଚିତ ଭାବେ ମଣିଷ କରିଛି ସନ୍ଦେହର ଅବକାଶ ନାହିଁ । ପ୍ରାଚୀନ ନଦୀ କୂଳ ବା ପଠାରେ, ପଙ୍କ ଆଉ ଗଭୀର ପଟୁମାଟି ତଳେ ପୋତି ହୋଇ ପଡ଼ିଥିବା ପ୍ରାଗୈତିହାସିକ ମଣିଷର ପ୍ରକୃତ କର୍ମଶାଳାଗୁଡ଼ିକୁ ବୈଜ୍ଞାନିକମାନେ ଆବିଷ୍କାର କରିଛନ୍ତି । ଏହିସବୁ ଜାଗା ଖନନ କରି ସେମାନେ ଆବିଷ୍କାର କରିଛନ୍ତି ବ୍ୟବହାରଯୋଗୀ ହାତ-ଟାଙ୍ଗିଆ ଏବଂ ପଥରସବୁକୁ ଯାହା ଦ୍ୱାରା ଟାଙ୍ଗିଆ ତିଆରି କରାଯାଉଥିଲା ।

ରୁଷିଆରେ ଏହିସବୁ ହାତ-ଟାଙ୍ଗିଆ ଆବିଷ୍କୃତ ହୋଇଛି ଦର୍ଷିଣାଞ୍ଚଳରେ, ସୁଖୁମି ନିକଟବର୍ତ୍ତୀ ଉପକୂଳବର୍ତ୍ତୀ ଟେରାସ ଆଉ କ୍ରିମିଆର କିକ୍-କୋବା ଗୁହାରେ ।

ଆମେ ଯଦି ଏକ ପଥର ହାତ-ଟାଙ୍ଗିଆକୁ ପରୀକ୍ଷା କରି ଦେଖିବା, ତେବେ ଜାଣି ହେବ ଏହା ଆଉ ଏକ ପଥର ଖଣ୍ଡରେ ବାଜିବା ହେତୁ ସେଥିରୁ ଆଉ ଏକ ମୁନିଆ ପଥର ବାହାରି ଆସିଛି । ଏହାକୁ କିପରି ଘଷି ମାଜିକି ମସୃଣ କରାଯାଇଛି ସେସବୁ ଚିହ୍ନ ବି ଦେଖିବାକୁ ମିଳେ ।

ପ୍ରକୃତି କେବେହେଲେ ଏସବୁ କାମ କରି ପାରେ ନାହିଁ । ମଣିଷ ହିଁ କେବଳ ଏକାମ କରି ପାରେ ।

ଏ କଥା ବୁଝିବାରେ କୌଣସି ଅସୁବିଧା ନାହିଁ — ପ୍ରକୃତିରେ ସବୁ କିଛି ହୋଇଥାଏ ଅଧପତରିଆ ଭାବେ — କୌଣସି ଯୋଜନା ବା ଲକ୍ଷ୍ୟ ସେଥିରେ ନଥାଏ । ନଈ ଲହଁରୀ ସବୁ କିଛିକୁ ପରସ୍ପର ଦିହରେ ବାଡ଼ଉଥାଏ । ସେଥିରେ କୌଣସି ଛନ୍ଦ ନଥାଏ କି କାରଣ ନଥାଏ । ମଣିଷ ମଧ୍ୟ ଏହି କାମ କରେ, କିନ୍ତୁ ସେ କାମ କରିଥାଏ ସଚେତନ ଭାବେ । ତା'ର କାମ ପଛରେ କିଛି ନା କିଛି କାରଣ ଥାଏ । କୌଣସି ପଥରକୁ ତା'ର ଦରକାର ଅନୁଯାୟୀ ପରିବର୍ତ୍ତନ କରିବାରୁ ଆରମ୍ଭ କରି ମଣିଷ ତା ଆବଶ୍ୟକତା ଅନୁଯାୟୀ ପ୍ରକୃତିକୁ ପରିବର୍ତ୍ତନ ଏବଂ ପୁନଃପରିବର୍ତ୍ତନ କରିବାରେ ଲଗିଛି ।

ଏହା ଫଳରେ ସେ ଅନ୍ୟ ପ୍ରାଣୀମାନଙ୍କଠାରୁ ଆଉ ଏକ ପଦକ୍ଷେପ ଆଗେଇ ଗଲା, ଆହୁରି ଅଧିକ ସ୍ୱାଧୀନ ହେଲା । କାରଣ ଏବେ ତାକୁ ପ୍ରକୃତିଠାରୁ ଖଣ୍ଡେ ଧାରୁଆ ପଥର ପାଇବାକୁ ଆଉ ଅପେକ୍ଷା କରିବାକୁ ହେଉନି ।

ଏବେ ସେ ନିଜେ ତା'ର ହତିଆର ତିଆରି କରି ନେଉଛି ।

## ମଣିଷର ଜୀବନବୃତ୍ତାନ୍ତ ।

କାହାର ଜୀବନଚରିତ ଲେଖିଲା ବେଳେ ପ୍ରଥମେ ସେ ଲୋକର ଜନ୍ମ ତାରିଖ ଏବଂ ସ୍ଥାନ କଥା ଉଲ୍ଲେଖ କରିବାକୁ ପଡ଼ିଥାଏ । ଦୃଷ୍ଟାନ୍ତ ସ୍ୱରୂପ :

"ଇଭାନ୍ ଇଭାନଭ୍ ୧୮୯୭, ନଭେମ୍ବର ୨୩ ତାରିଖରେ ତାମ୍ବୋଭ୍ ସହରରେ ଜନ୍ମ ଗ୍ରହଣ କରିଥିଲେ ।"

ଏହି ତଥ୍ୟଟିକୁ ଅନେକ ସମୟରେ ଆହୁରି ସଜେଇ ସାଜେଇକି ମଧ୍ୟ କୁହାଯାଇ ପାରେ :

"୧୮୯୭ ମସିହାର ଏକ ବର୍ଷଣମୁଖର ଦିନରେ ଇଭାନ୍ ଇଭାନଭ୍ ଜନ୍ମ ଗ୍ରହଣ କରିଥିଲେ, ତାମ୍ବୋଭ୍ ନଗରୀର ଉପାନ୍ତରେ ଅବସ୍ଥିତ ଏକ କ୍ଷୁଦ୍ର ପ୍ରକୋଷ୍ଠରେ । ସେ ତାଙ୍କର ବଂଶ ତଥା ଜନ୍ମ ନଗରୀର ଗୌରବକୁ ମହିମା ମଣ୍ଡିତ କରିଥିଲେ ।"

ଆମେ ଏବେ ଏହି ପୁସ୍ତକଟିର ତୃତୀୟ ଅଧ୍ୟାୟରେ ପହଞ୍ଚି ଗଲେଣି । କିନ୍ତୁ ଏପର୍ଯ୍ୟନ୍ତ ଆମର ନାୟକଟି କେବେ ଏବଂ କେଉଁଠି ଜନ୍ମ ଗ୍ରହଣ କରିଥିଲା ସେ ସଂପର୍କରେ ଉଲ୍ଲେଖ କରି ନାହେଁ । ସତ କହିବାକୁ ଗଲେ, ଏପର୍ଯ୍ୟନ୍ତ ତା ନାମ ବି ତୁମକୁ ଆମେ କହିନୁ । ଗୋଟିଏ ଜାଗାରେ ତାକୁ "ମାଙ୍କଡ଼-ମଣିଷ" ଏବଂ ଆଉ ଏକ ଜାଗାରେ "ଆଦିମ ମଣିଷ" ବୋଲି କେବଳ କହିଛୁ । ତାକୁ ମଧ୍ୟ

ଆମେ ଆମର "ପ୍ରାଗୈତିହାସିକ ମଣିଷ", ଏବଂ "ଆମର ଜଙ୍ଗଲବାସୀ ପୂର୍ବପୁରୁଷ" ବୋଲି ଅଭିହିତ କରିଛେ ।

ଏହି ଭଳି ବିଭିନ୍ନ ନାମରେ କାହିଁକି ତାକୁ ଅଭିହିତ କରାହୋଇଛି ସେ କଥା ବୁଝାଇ ଦେବାକୁ ଆମେ ଚେଷ୍ଟା କରିବୁ ।

ଆମେ ଚାହିଁଲେ ମଧ୍ୟ ଆମ ନାୟକର ପ୍ରକୃତ ନାମଟିକୁ କହି ପାରିବୁ ନାହିଁ, କାରଣ ତା'ର ଅନେକ ନାମ ।

କୌଣସି ଜୀବନଚରିତର ପୃଷ୍ଠା ଲେଉଟାଇ ଦେଖିଲେ ତା'ର ନାୟକର ନାମ ମୂଳରୁ ଶେଷ ପର୍ଯ୍ୟନ୍ତ ପରିବର୍ତ୍ତିତ ହୁଏ ନାହିଁ । ପ୍ରଥମେ ସେ ହୁଏ ଶିଶୁ, ତା'ପରେ ବାଳକ, ତା'ପରେ ନିଶ ଦାଢ଼ି ରଖିଥିବା ଏକ ପୁରୁଷ । କିନ୍ତୁ, ଏସବୁ ସତ୍ତ୍ୱେ ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ତା'ର ନାମଟି ବଦଳେ ନାହିଁ । ଯିଉ ବେଳେ ତା'ର ନାମ ଇଭାନ୍ ଦିଆ ଯାଇଥିଲେ, ମୃତ୍ୟୁ ପର୍ଯ୍ୟନ୍ତ ସେଇ ଇଭାନ୍ ରହେ ।

କିନ୍ତୁ ଆମ ନାୟକ କ୍ଷେତ୍ରରେ ବ୍ୟାପାରଟା ଆହୁରି ଜଟିଳ ।

ପ୍ରତିଟି ଅଧ୍ୟାୟରେ ତା'ର ପରିବର୍ତ୍ତନ ଘଟୁଥିବାରୁ, ସେଇ ଅନୁଯାୟୀ ତା'ର ନାମ ପରିବର୍ତ୍ତନ କରିବାକୁ ଆମେ ବାଧ୍ୟ ।

ଆମେ ଯଦି ପ୍ରାଗୈତିହାସିକ ମଣିଷ ମଧ୍ୟରେ ସବୁଠାରୁ ପୁରାତନ ମଣିଷ କଥା କହିବାକୁ ଯାଏ, ଯିଏକି ବାନର ଭଳି ଦେଖା ଯାଉଥିଲା, ତେବେ ତାକୁ ପିଥେକ୍ୟାନ୍ଥ୍ରପାସ୍, ସିନାନ୍ଥ୍ରପାସ୍, ପେକିନ୍ ମଣିଷ ଏବଂ ହାଇଡେଲବର୍ଗ ମଣିଷ ବୋଲି ଡାକିବା ।

ହାଇଡେଲବର୍ଗ ମଣିଷର ଏକମାତ୍ର ଚିହ୍ନ ହିସାବରେ ତା'ର ହନୁହାଡ଼ଟା ମିଳି ଥିଲା ଜର୍ମାନୀର ହାଇଡେଲବର୍ଗ ସହର ନିକଟରେ ।

ଏହି ହନୁହାଡ଼ଟିରୁ ଯଥେଷ୍ଟ ପ୍ରମାଣ ମିଳେ ଯେ, ଏହା ଏକ ମଣିଷର ହନୁହାଡ଼ : ଦାନ୍ତଗୁଡ଼ିକ ମଣିଷ ଦାନ୍ତ ଭଳି; ତା'ର ଶ୍ୱାନଦନ୍ତଗୁଡ଼ିକ ତଳ ଦାନ୍ତ ଉପରକୁ ମାଡ଼ି ଆସି ନଥିଲା, ମାଙ୍କଡ଼ମାନଙ୍କ କ୍ଷେତ୍ରରେ ଯେମିତି ହୋଇଥାଏ ।

କିନ୍ତୁ ହାଇଡେଲବର୍ଗ ମଣିଷ ପ୍ରକୃତ ମଣିଷ ସ୍ତରକୁ ଆସି ନଥିଲା । ତା'ର ଚିବୁକଟି ଏହାର ପ୍ରମାଣ ଆମକୁ ଦିଏ ।

ପିଥେକ୍ୟାନ୍ଥ୍ରପାସ୍, ସିନାନ୍ଥ୍ରପାସ୍ ଏବଂ ହାଇଡେଲବର୍ଗ ମଣିଷ !

ଆମ ନାୟକର ଏକ କାଳରେ, ତା ବିକାଶର ଏକ ପର୍ଯ୍ୟାୟରେ ତିନୋଟି ଦୀର୍ଘ ନାମ ଥିଲା ।

କିନ୍ତୁ ସେ ସେଇଠି ରହିଯାଇ ନଥିଲା । ସେ ଅଧିକରୁ ଅଧିକ ଆଧୁନିକ ମଣିଷ ହେଉଥିଲା । ଶିଶୁ ଯେପରି କିଶୋର ହୁଏ ଏବଂ କିଶୋର ଯେପରି ତରୁଣ



ଦକ୍ଷିଣ ଆଫ୍ରିକାରେ ମିଳିଥିବା ପ୍ରାଗୈତିହାସିକ ମାଙ୍କଡ଼ର ଖପୁରି ମନୁଷ୍ୟର ଖପୁରି ସହିତ ପ୍ରାୟ ମିଶି ଯାଉଛି । ଏହି ରେଖା ଚିତ୍ରରେ ଅଷ୍ଟ୍ରେଲୋପିଥେକସ୍‌ର ମୁଖାକୃତିର ପୁନଃଚିତ୍ରଣ କରାଯାଇଛି ।

ହୁଏ, ସେଇ ପରି ପ୍ରାଗୈତିହାସିକ ମଣିଷ ହେଇ ନିଆଣ୍ଡେରଥାଲ୍ ମଣିଷ ଏବଂ ନିଆଣ୍ଡେରଥାଲ୍ ମଣିଷ ହେଇ କ୍ରୋ ମାଗନନ୍ ମଣିଷ ।

ଏଥର ଆମ ନାୟକର ଆଉ କେତୋଟି ନାମ ତୁମେ ଜାଣିବାକୁ ପାଇଲ !

କିନ୍ତୁ ଆମେ ଏତେ ଆଗେଇ ଗଲେ ଚଳିବ ନାହିଁ । ଏହି ଅଧ୍ୟାୟରେ ତା'ର ନାମ ହେଉଛି "ପିଥେକ୍ୟାନ୍‌ଥ୍ରପାସ୍ – ସିନାନ୍‌ଥ୍ରପାସ୍ – ହାଇଡେଲବର୍ଗ ମଣିଷ" ।

ସେ ନଦୀ କୂଳରେ ବୁଲି ବୁଲି ତା'ର ଅସ୍ତ୍ର ତିଆରି ପାଇଁ ଜିନିଷ ସଂଗ୍ରହ କରୁଥିଲ । ସେ ମନୋଯୋଗ ସହକାରେ ଗୋଟିଏ ପଥର ଦିହରେ ଆଉ ଗୋଟିଏ ପଥରକୁ ଘଷି ଘୂଳ ଅମସୃଣ ହାତ-ଟାଙ୍ଗିଆ ତିଆରି କରୁଥିଲେ । ଏଭଳି ଟାଙ୍ଗିଆ ସବୁ ନଦୀ କୂଳବର୍ତ୍ତୀ ଅନେକ ଜାଗାରୁ ଖୋଳା ହୋଇ ବାହାରୁଛି ।

ତେଣୁ କରି ଆମ ନାୟକର ନାମ ସେତେବେଳେ କ'ଣ ଥିଲ କହିବା କଷ୍ଟକର ।

ଏହାଠାରୁ ଆହୁରି କଠିନ ହେଉଛି ତା'ର ଜନ୍ମ କାଳ ସଂପର୍କରେ କହିବା ।

ନିର୍ଦ୍ଦିଷ୍ଟ ଭାବେ କେଉଁ ଦିନ ସେ ଜନ୍ମିଥିଲ ବୋଲି କହି ହେବ ନାହିଁ, କାରଣ ମଣିଷ ବର୍ଷକ ମଧ୍ୟରେ ମଣିଷ ହୋଇ ନଥିଲ । ତାକୁ ଲକ୍ଷ ଲକ୍ଷ ବର୍ଷ ଲଗିଥିଲ ଚାଲିବାକୁ ଶିଖିବା ପାଇଁ ଏବଂ ତା'ର ପ୍ରଥମ ହତିଆରଗୁଡ଼ିକୁ ତିଆରି କରିବା ପାଇଁ । ତେଣୁ ଯଦି କେହି ପଚାରେ ତା'ର ବୟସ କେତେ, ତେବେ ଆମେ ଉତ୍ତର ଦେବା, ପ୍ରାୟ ଦଶ ଲକ୍ଷ ବର୍ଷ ।

ସବୁଠାରୁ କଠିନ କଥାଟି କ'ଣ ଜାଣିଛ ? ମଣିଷର ଜନ୍ମ ସ୍ଥାନର ଠିକଣା ପାଇବା ।

ଆମେ ଚେଷ୍ଟା କରିଥିଲୁ ଆମ ନାୟକର ସେଇ ବୃଦ୍ଧିମାଟି କେଉଁଠି ରହୁଥିଲା ଜାଣିବା ପାଇଁ, ଯେଉଁ ବୃଦ୍ଧିମାଠାରୁ ମଣିଷ, ଶିମ୍ପାଞ୍ଜି, ଗରିଲା ଜାତ ହୋଇଥିଲେ । ବିଜ୍ଞାନୀମାନେ ସେ ବୃଦ୍ଧିମାର ନାମ ଦେଇଛନ୍ତି ଡ୍ରିଓପିଥେକସ୍ । ତା'ର ଠିକଣା ଖୋଜିବାକୁ ଯାଇ ଆମେ ଆବିଷ୍କାର କରିଛେ ଯେ, ଅନେକ ପ୍ରକାରର ଡ୍ରିଓପିଥେକସ୍ ଏ ପୃଥିବୀରେ ବାସ କରୁଥିଲେ । ସେମାନଙ୍କର କେତେକ ଚିହ୍ନ ମିଳେ ୟୁରୋପରେ, ଆଉ କେତେକ ପଶ୍ଚିମ ଆଫ୍ରିକା ଏବଂ ଦକ୍ଷିଣ ଏସିଆରେ ।

ଯେଉଁମାନେ ଏ ବିଷୟରେ ଜାଣନ୍ତି ସେମାନେ କହନ୍ତି, ଦକ୍ଷିଣ ଆଫ୍ରିକାରେ ମଧ୍ୟ କେତେକ ଗୁରୁତ୍ୱପୂର୍ଣ୍ଣ ଜିନିଷ ମିଳିଛି । ଯେଉଁସବୁ ବାନର ପଛଗୋଡ଼ରେ ଚାଲୁଥିଲେ ଏବଂ ଜଙ୍ଗଲରେ ରହୁ ନଥିଲେ ସେମାନଙ୍କର ହାଡ଼ ଗୋଡ଼ ସନ୍ଧାନ ଆମେ ପାଇଛେ ଦକ୍ଷିଣ ଆଫ୍ରିକାରେ ।

ତୁମର ମନେ ଥିବ, ପିଥେକ୍ୟାନ୍‌ଥ୍ରପାସ୍ ଏବଂ ସିନାନ୍‌ଥ୍ରପାସ୍‌ର ଦେହାବଶେଷାଂଶର ସନ୍ଧାନ ମିଳିଥିଲା ଏସିଆରେ । ଏବଂ ହାଇଡେଲବର୍ଗର ହନୁହାଡ଼ ମିଳିଥିଲା ୟୁରୋପରେ । ତା'ହେଲେ ମଣିଷର ଉତ୍ପତ୍ତି ଘଟିଥିଲା କେଉଁଠି ? ତେବେ ଏସବୁ ଦେଖି ଆମର ମନେ ହୁଏ, ମଣିଷ କେଉଁ ମହାଦେଶରେ ବା କେଉଁ ଦେଶରେ ଜନ୍ମି ଥିଲା କହିବା କଷ୍ଟକର ।

ଆମେ ଭାବୁଛୁ, ଯେଉଁ ଯେଉଁ ଜାଗାରେ ପଥର ହତିଆର ମିଳିଛି ସେସବୁ ଜାଗାକୁ ପରୀକ୍ଷା କରି ଦେଖିବା । ଏ କଥା ସତ ଯେ, ମଣିଷ ଯେତେବେଳେ ତା'ର ହତିଆର ତିଆରି କରିବାକୁ ଲାଗିଲା, ସେତେବେଳେ ସେ ପ୍ରକୃତରେ ମଣିଷ ହେଲା । ତେଣୁ କରି ଏହିସବୁ ହତିଆର ଯେଉଁଠି ରହିଛି ସେଇସବୁ ଜାଗା ସ୍ଥିର କରି ପାରିଲେ ପୃଥିବୀ ପୃଷ୍ଠରେ ମଣିଷର ପ୍ରଥମ ଆବିର୍ଭାବ କେଉଁଠି ଘଟିଥିଲା ଜାଣି ପାରିବା ।

ପୃଥିବୀର ଏକ ମାନଚିତ୍ର ଆଣି ସେଇ ଜାଗାଗୁଡ଼ିକୁ ଚିହ୍ନିତ କରିବା, ଯେଉଁଠି ସେ ପଥରର ହାତ-ଟାଙ୍ଗିଆ ସବୁ ମିଳିଛି । ଏ କାମଟି କରିବାକୁ ବେଶି ସମୟ ଲାଗିବ ନାହିଁ । ସେସବୁ ମଧ୍ୟରୁ ଅଧିକାଂଶ ଚିହ୍ନ ତୁମେ ଦେଖିବ ୟୁରୋପରେ ଏବଂ ଆଉ କେତେକ ଆଫ୍ରିକା ଏବଂ ଏସିଆରେ ।

ଏଥର ଉତ୍ତରଟା ପରିଷ୍କାର ହୋଇଗଲା : ମଣିଷର ଆବିର୍ଭାବ ଘଟିଥିଲା ପ୍ରଥମେ ପୁରୁଣା ଦୁନିଆରେ, ଗୋଟିଏ ଜାଗାରେ ନୁହେଁ, ଅନେକ ଜାଗାରେ ।

ଖୁବ୍ ସମ୍ଭବତଃ ତାହାହିଁ ଘଟିଥିଲା । କାରଣ ଆମେ ମିନିଟକ ପାଇଁ ଚିନ୍ତା କରି ପାରୁ ନାହୁଁ ଯେ, ସମଗ୍ର ମାନବ ସମାଜ ଜାତ ହୋଇ ଥିଲା ଜୋଡ଼ିଏ ବାନରଙ୍କଠାରୁ, ସେ ଜୋଡ଼ିକ ହେଉଛନ୍ତି "ଆଦାମ ବାନର" ଓ "ଇଭ୍ ବାନରୀ"

ତା'ଛଡ଼ା ବାନରରୁ ମଣିଷକୁ ପରିବର୍ତ୍ତନଟା କୌଣସି ଏକ ଅଞ୍ଚଳର କୌଣସି ଏକ ବାନର ଦଳ ମଧ୍ୟରେ ଘଟି ନଥିଲା । ଏହା ଘଟିଥିଲା ଏକକାଳୀନ ଅନେକ ଅଞ୍ଚଳରେ । କାରଣ ପ୍ରତ୍ୟେକ ଅଞ୍ଚଳରେ ସେଇସବୁ ବାନର ବାସ କରୁଥିଲେ, ଯେଉଁମାନେ ଦୁଇ ଗୋଡ଼ରେ ଚାଲି ଶିଖିଥିଲେ ଏବଂ ଦୁଇ ହାତରେ କାମ କରିବାକୁ ଆରମ୍ଭ କରିଥିଲେ । ଏବଂ କାମ କରିବାକୁ ଆରମ୍ଭ କରିବା ସଙ୍ଗେ ସଙ୍ଗେ, ନୂଆ ଏକ ଶକ୍ତିର ଆବିର୍ଭାବ ଘଟିଥିଲା, ଯିଏକି ଶେଷରେ ସେମାନଙ୍କୁ ମଣିଷରେ ପରିଣତ କଲା । ସେ ଶକ୍ତିଟି ମଣିଷର ଶ୍ରମ ।

## ମଣିଷ ଫୁରୁସତ ପାଇଲା ।

ଖାଦ୍ୟ କେଉଁଠୁ ମିଳେ ବା କୋଇଲା କେଉଁଠୁ ମିଳେ, ସେ କଥା ସମସ୍ତେ ଜାଣନ୍ତି ।

କିନ୍ତୁ ସମୟ କେଉଁଠୁ ମିଳେ ?

ଅନେକ କାଳ ଆଗରୁ ମଣିଷକୁ ସମୟ ମିଳି ଆସିଥିଲେ ମଧ୍ୟ କେମିତି ଏହା ମିଳିଲା, ସେକଥା ଅନେକ ଏହି ପ୍ରଶ୍ନର ଉତ୍ତର ଦେଇ ପାରିବେ ନାହିଁ । ତାକୁ ଯେତେବେଳେ ହତିଆର ନିର୍ମାଣ କରିବାକୁ ପଡ଼ିଲା, ଜୀବନ ତା'ର ନୂଆ ଏକ କାମରେ ବ୍ୟସ୍ତ ରହିଲା । ସେ ନୂଆ କାମଟି ଥିଲା ପ୍ରକୃତ ଏକ ମାନବିକ ପେଶା । ସେ ହେଉଛି ମଣିଷର ଶ୍ରମ । ଶ୍ରମ କରିବାକୁ ହେଲେ ସମୟ ଦରକାର । ଗୋଟିଏ ପଥର ହତିଆର ତିଆରି କରିବାକୁ ଗଲେ ତ ପ୍ରଥମେ ଭଲ ପଥର ଖୋଜି ବାହାର କରିବା ଦରକାର । କାରଣ, ସବୁ ପଥରରେ ତ କୁରାଢ଼ି ହୁଏ ନାହିଁ !

ହତିଆର ପାଇଁ ସବୁଠାରୁ ଭଲ ପଥର ହେଉଛି ଦିଧାରିଆ ପଥର, ଏହା ଶକ୍ତ ଏବଂ ଓଜନିଆ ହେବା ଦରକାର । କିନ୍ତୁ ସେଭଳି ପଥର ତ ଯେଉଁଠି ପାରି ସେଠି ମିଳି ଯାଉ ନଥିଲା । ଏଥି ପାଇଁ ମଣିଷକୁ ଘଣ୍ଟା ଘଣ୍ଟା ଧରି ଖୋଜିବାକୁ ପଡ଼ୁଥିଲା ଏବଂ ଅନେକ ସମୟରେ କେବଳ ଖୋଜିବା ସାର ହେଉଥିଲା । ତେଣୁ ସେ ଅଳ୍ପ ଓଜନିଆ ପଥର, ଏପରିକି ବାଲି ପଥର ବା ଖଡ଼ି ପଥର ଭଳି ହାଲୁକା ଉପାଦାନକୁ ସଦୁପଯୋଗ କରୁଥିଲା ।

ତେଣୁ ତା'ର ଦରକାର ଥିଲା ଉପଯୁକ୍ତ ପଥର ଖୋଜି ବାହାର କରିବା । ତା ସତ୍ତ୍ୱେ ବି ସେ ପଥର ଥିଲା ଅନ୍ୟ ପଥର ଭଳି । ତାକୁ ବାଗେଇକି ହତିଆରରେ ପରିଣତ କରିବା ପାଇଁ ଆଉ ଏକ ପଥର ହତିଆରର ଆବଶ୍ୟକ ପଡ଼ିଲା । ସେଥି ପାଇଁ ମଧ୍ୟ ସମୟ ଦରକାର । ସେତେବେଳେ ମଣିଷର ଆଙ୍ଗୁଳିଗୁଡ଼ିକ ଆଜିକାଲିକା

ଭଳି ଏତେ ଚଞ୍ଚଳ ଏବଂ ଦକ୍ଷ ନଥିଲ , କାମ କରିବା ପାଇଁ ଅଭ୍ୟସ୍ତ ହୋଇନଥାନ୍ତି । ତେଣୁ ଗୋଟିଏ ଛୁଞ୍ଚ ହାତ-ଟାଙ୍ଗିଆ ତିଆରି କରିବାକୁ ଅନେକ ସମୟ ଲଗୁଥିଲ ।

କିନ୍ତୁ ମଣିଷର ଏତେ ସମୟ କାହିଁ ସେ କାମ କରିବାକୁ ?

ପ୍ରାଗୈତିହାସିକ ମଣିଷ ହାତରେ ଖୁବ୍ କମ୍ ଫୁରସତ୍ ମିଳୁଥିଲ । ଆଜିକାଲିକାର ସବୁଠାରୁ ବ୍ୟସ୍ତ ମଣିଷଠାରୁ ବି ତା'ର ଫୁରସତ୍ ସମୟ ଥିଲ କମ୍ । ସକାଳୁ ରାତି ପର୍ଯ୍ୟନ୍ତ ତା'ର ସମୟ କଟି ଯାଉଥିଲ ଜଙ୍ଗଲ ଏବଂ ଖୋଲ ଅଞ୍ଚଳରେ ବୁଲି ଖାଦ୍ୟ ସଂଗ୍ରହ କରିବାରେ ତା ନିଜ ପାଇଁ, ତା'ର ପିଲପିଲିଙ୍କ ପାଇଁ ଖାଦ୍ୟ । ଯେକୌଣସି ଖାଦ୍ୟଯୋଗ୍ୟ ଜିନିଷକୁ ସେମାନେ ଖାଇ ଦେଉଥିଲେ । ଶୋଇବା ପାଇଁ ଯେତେ ସମୟ ସେ ନେଉ ନଥିଲ , ତାଠାରୁ ଅଧିକ ସମୟ ନେଉଥିଲ ଖାଦ୍ୟ ସଂଗ୍ରହ କରିବାରେ ଏବଂ ଖାଇବାରେ । ତା'ର କାରଣ, ପ୍ରାଗୈତିହାସିକ ମଣିଷ ଯେଉଁସବୁ ଖାଦ୍ୟ ଖାଉଥିଲ ସେସବୁ ଖୁବ୍ ପୁଷ୍ଟିକର ନଥିଲ । ତେଣୁ ତା ପାଇଁ ଅନେକ ଖାଦ୍ୟ ଦରକାର ହେଉ ଥିଲ ।

ତମେ କ'ଣ ଭାବି ପାରୁଛ ଯେ, ସେ ଯଦି ସେତେବେଳେ ବେରି, ବାଦାମ, ଶାମୁକା, ମୂଷା, ଗଛର ମୂଳ, ପୋକ ଏବଂ ଅନ୍ୟ କେତେକ ଛୋଟ ଛୋଟ ଜିନିଷକୁ ଖାଉଥାଏ, ତେବେ ସେସବୁର ପରିମାଣ କେତେ ହେଉଥିବ ।

ଆଜିକାଲି ହରିଣ ପଲ ସବୁ ଯେମିତି ଜଙ୍ଗଲରେ ଘାସ, ଶିଉଳି ଚରି ଚରି ଏବଂ ଗ୍ରେବେଇ ଗ୍ରେବେଇ ଏସ୍ଥାନରୁ ସେ ସ୍ଥାନକୁ, ସେ ସ୍ଥାନରୁ ଅନ୍ୟ ସ୍ଥାନକୁ ବୁଲୁଥାନ୍ତି ସେଇ ଭଳି ମଣିଷ ପଲ ସବୁ ଖାଦ୍ୟ ଖାଇ ଖାଇ ବୁଲୁଥିଲେ । କିନ୍ତୁ ମଣିଷର ଯଦି ଦିନ ସାରା ଖାଦ୍ୟ ସନ୍ଧାନରେ ଏବଂ ଖାଇବାରେ କଟିଯାଏ ତେବେ ସେ କାମ କରିବ କେତେବେଳେ ?

ତା'ପରେ ସେ ଆବିଷ୍କାର କଲ କାମର ଏକ ଆଶ୍ଚର୍ଯ୍ୟ ଗୁଣକୁ ! ଏହା କେବଳ ସମୟ ନିଏ ନାହିଁ, ଏହା ତାକୁ ମଧ୍ୟ ଅଧିକ ସମୟ ଦେଇଥାଏ ।

ମନେ କର, ତୁମେ ଚାରି ଘଣ୍ଟାରେ ଯେଉଁ କାମ କର, ଅନ୍ୟ ଜଣେ ଆଠ ଘଣ୍ଟାରେ ସେ କାମ କରୁଛି, ଅର୍ଥାତ୍ ତୁମେ ସେ କ୍ଷେତ୍ରରେ ଚାରି ଘଣ୍ଟା ସମୟ ବଞ୍ଚେଇ ପାରୁଛ । ମନେ କର ତୁମେ ଏପରି କୌଣସି ଯନ୍ତ୍ର ଆବିଷ୍କାର କଲ, ଯିଏକି ତୁମେ ଯେଉଁ କାମ କରୁଛ ତାକୁ ଅଧା ସମୟ ମଧ୍ୟରେ କରି ଦେଲ, ତେବେ ତୁମେ ଅଧା ସମୟ ବଞ୍ଚେଇ ପାରିବ ।

ପ୍ରାଗୈତିହାସିକ ମଣିଷ ସେଇ ଆବିଷ୍କାରଟି କରିଥିଲ ।

ଖଣ୍ଡେ ପଥରକୁ ମୁନିଆ କରିବା ପାଇଁ ତାକୁ ଅନେକ ସମୟ ଲଗି ଯାଉଥିଲ ।

କିନ୍ତୁ ଏହି ମୁନିଆ ପଥରରେ ଗଛର ଛେଲିନ୍ତୁ ଘର୍ଷା ପୋକ ବାହାର କରିବା ତାପକ୍ଷରେ ସହଜ ହେଲ ।

କିନ୍ତୁ ଏହି ଧାରୁଆ ପଥରରେ ଗଛର ଡାଳକୁ କାଟି ମୁନିଆ କରିବାକୁ ଅନେକ କାଳ ଲଗି ଯାଇଥିଲ । କିନ୍ତୁ ଏହା ସାହାଯ୍ୟରେ କୌଣସି ସିଠା ମୂଳକୁ ଖୋଳିବା ବା ଛୋଟ ଛୋଟ ପ୍ରାଣୀ ଶିକାର କରିବା ଥିଲ ଅନେକ ସହଜ ।

ଏହା ଦ୍ୱାରା ପ୍ରାଗୈତିହାସିକ ମଣିଷ ପକ୍ଷରେ ତା ନିଜ ପାଇଁ ତା'ର ପିଲପିଲିଙ୍କ ପାଇଁ ଖାଦ୍ୟ ସଂଗ୍ରହ କରିବାଟା ସହଜ ଏବଂ ଦ୍ରୁତ ହେଉଥିଲ ଏବଂ ଫଳରେ କାମ କରିବା ପାଇଁ ତାକୁ ଅଧିକ ସମୟ ମିଳିଲ । ସେ ତା'ର ଫୁର୍ସତ୍ ସମୟରେ ତା ହତିଆରକୁ ପଜେଇଲ, ଅଧିକ ତୀକ୍ଷ୍ଣ ଏବଂ ଉନ୍ନତ କଲ । ଯେତେ ନୂଆ ହତିଆର ସେ ତିଆରି କଲ ସେତେ ବେଶି ଖାଦ୍ୟ ତାକୁ ମିଳିଲ ଏବଂ ତା ଫଳରେ ଅଧିକ ସମୟ ସେ ବଞ୍ଚେଇ ପାରିଲ ।

ଶିକାର କରିବା ଫଳରେ ତାକୁ ଆହୁରି ବେଶି ଫୁର୍ସତ୍ ସମୟ ମିଳିଲ । କାରଣ ମାଂସ ହେଉଛି ଅଧିକ ପୁଷ୍ଟିକର ଏବଂ ଅଧ ଘଣ୍ଟାଏ ଖାଇଲେ ସାରାଦିନ ପାଇଁ ତାକୁ ଭୋକ ଆଉ ହେଲ ନାହିଁ । କିନ୍ତୁ ପ୍ରାରମ୍ଭରେ ଲୋକେ ଏତେ ମାଂସ ପାଉ ନଥିଲେ । ଖଣ୍ଡେ ପଥର ବା ବାଡ଼ିରେ ବଡ଼ ଏକ ଜନ୍ତୁକୁ ମାରିବା ମଧ୍ୟ ସହଜ ନୁହେଁ । ମୂଷାଟାଏ ମାରିଲେ କେତେ ବା ମାଂସ ମିଳିବ !

ସେ ପର୍ଯ୍ୟନ୍ତ ମଣିଷ ଭଲ ଶିକାରୀ ହୋଇ ପାରି ନଥିଲ ।

## ଯୋଗାଡ଼ିଆ ମଣିଷ ।

ଆମ ସମୟରେ ଯୋଗାଡ଼ କରିବାଟା ସହଜ । ତମମାନଙ୍କ ମଧ୍ୟରୁ ସମସ୍ତେ ପଡ଼ିଆରେ ଛତୁ ବା ବଗିଚାରେ ଫଳ ତୋଳିବା ପାଇଁ ଯାଉଥିବ । ଯେତେବେଳେ ଗୋଟେ ବଢ଼ିଆ ଛତୁ ବା ଗଛରେ ବଢ଼ିଆ ପାଚିଲ ଆମ୍ବ ଦେଖ, ତମକୁ କେତେ ଖୁସି ଲଗେ, ତମେ ଜାଣିଥିବ ।

କିନ୍ତୁ ଟିକେ ଭାବିଲ, ଛତୁ ତୋଳିବା ବା ଫଳ ତୋଳିବା ଯଦି ତମର ପ୍ରଧାନ ବେଉସା ହୋଇଥାନ୍ତା, ତେବେ କ'ଣ ହୁଅନ୍ତା ? ତମେ କ'ଣ ଭାବୁଛ ସବୁ ଦିନେ ତମେ ପେଟପୂରା ଖାଇବାକୁ ପାଆନ୍ତ ? ଦିନେ ଦିନେ ହୁଏତ ତମେ ପାଛିଆ ଭର୍ତ୍ତି କରି, ଟାଉଏଲରେ ବାନ୍ଧି ଛତୁ ତୋଳି ନେଇ ଆସ । କିନ୍ତୁ ସବୁ ଦିନେ ଏମିତି ମିଳେ ନାହିଁ । ବେଳେ ବେଳେ ଦିନ ସାରା ବୁଲି ବୁଲି ଖାଲି ପାଛିଆ ଧରି ଫେରିବାକୁ ହୁଏ ।

ଆମର ଦଶବର୍ଷିଆ ବନ୍ଧୁଟି ଛତୁ ତୋଳିବା ପାଇଁ ବାହାରିଲା ବେଳେ ଗର୍ବର ସହିତ ସେ କହିଥାଏ :

"ଆଜି ମୁଁ ଖଣ୍ଡେ ବଡ଼ିଆ ଛତୁ ଆଣିବି !"

କିନ୍ତୁ ଅଧିକାଂଶ ସମୟରେ ସେ ଖାଲି ହାତରେ ଫେରେ । ଘରେ ଯଦି ତା ପାଇଁ ଅନ୍ୟ କିଛି ଖାଦ୍ୟପେୟ ନଥାଏ , ତେବେ ତାକୁ ଉପାସ ରହିବାକୁ ହୁଏତ ପଡ଼େ ।

ବୁଲି ବୁଲି ଖାଦ୍ୟ ସଂଗ୍ରହ କରୁଥିବା ପ୍ରାଗୈତିହାସିକ ମଣିଷର ଜୀବନ ଥିଲା ଅନେକ କଠିନ । ଆହାର ବିଷୟରେ ତା'ର ବାଛ ବିଚାର ନଥିଲା ବୋଲି ସେତେବେଳେ ସେ ଅନାହାରରେ ମରୁ ନଥିଲା । ସେଥିପାଇଁ ତାକୁ ଦିନ ସାରା ଶିକାର ପାଇଁ ଘୂରିବାକୁ ପଡ଼ୁଥିଲା । ବୃକ୍ଷବାସୀ ତା'ର ପୂର୍ବପୁରୁଷମାନଙ୍କଠାରୁ ସେ ଅବଶ୍ୟ ଥିଲା ଅଧିକ ଶକ୍ତିଶାଳୀ ଏବଂ ସ୍ୱାଧୀନ , କିନ୍ତୁ ନିଜକୁ ଚାରିପଟ୍ କଲା ଭଳି ଅବସ୍ଥାକୁ ସେ ଆସି ନଥିଲା । ସତ କହିବାକୁ ଗଲେ ସେ ଥିଲା ଏକ ଅର୍ଦ୍ଧ ଉପାସିଆ ଜୀବ ।

ଏହି ସମୟରେ ପୃଥିବୀ ପୃଷ୍ଠରେ ମାଡ଼ି ଆସିଲା ଏକ ପ୍ରଳୟ ।

# ଚତୁର୍ଥ ଅଧ୍ୟାୟ

## ପ୍ରଳୟ ଓ ତା'ପରେ ।

ସେହି ଯୁଗରେ ଘଟିଥିବା ବହୁ ଘଟଣାର କାରଣ ଏ ପର୍ଯ୍ୟନ୍ତ ଆବିଷ୍କାର ହୋଇ ପାରିନି । ପୃଥିବୀର ଉତ୍ତରାଞ୍ଚଳରେ ଜମିଥିବା ବରଫର ପାହାଡ଼ ସବୁ କାହିଁକି ଭାଙ୍ଗି ଦକ୍ଷିଣ ଆଡ଼କୁ ଛୁଟିଲା, ସେ କଥା ଏବେ ମଧ୍ୟ ଆମ ଆଗରେ ପରିଷ୍କାର ନୁହେଁ । ବରଫର ବିରାଟ ବିରାଟ ସ୍ରୋତ ପାହାଡ଼ ଆଉ ସମତଳ ଭୂଇଁ ଉପରେ ପ୍ରବଳ ବେଗରେ ଛୁଟି ଆସିଥିଲା । ପର୍ବତର ନିମ୍ନ ଭୂମିକୁ ବିଦୀର୍ଣ୍ଣ କରି, ପାହାଡ଼ ଚୂଡ଼ାକୁ ଭାଙ୍ଗିଚୁରି ଏବଂ ବିଶାଳ ବିଶାଳ ପ୍ରସ୍ତର ଖଣ୍ଡସବୁକୁ ଭସାଇ ସେସବୁ ବହିବାକୁ ଲାଗିଲା । ପ୍ରକାଣ୍ଡ ପ୍ରକାଣ୍ଡ ହିମବାହଗୁଡ଼ିକର ଅଗ୍ର ଭାଗରେ ବରଫ ତରଳିବା ଫଳରେ ନଦୀସବୁ ସୃଷ୍ଟି ହୋଇ ପ୍ରଚଣ୍ଡ ବେଗରେ ବହିବାକୁ ଲାଗିଲେ । ଫଳରେ ପୃଥିବୀ ପୃଷ୍ଠରେ ବିରାଟ ବିରାଟ ଅତଳ ଗାଡ଼ ସୃଷ୍ଟି ହୋଇ ନଦୀ ଶଯ୍ୟାରେ ପରିଣତ ହେଲା ।

ଏକ ବିରାଟ ବିଜୟୀ ସେନା ପରି ଏହି ବରଫର ସ୍ରୋତ ଉତ୍ତରରୁ ବହିବାକୁ ଲାଗିଥିଲା ଦକ୍ଷିଣକୁ । ସେସବୁ ସହିତ ଯୋଗ ଦେଇଥିଲେ ପର୍ବତ ଚୂଡ଼ାରୁ ଖସି ଆସୁଥିବା ବିଶାଳ ହିମବାହସବୁ ।

ସୋଭିଏତ୍ ୟୁନିଅନ୍ ଏବଂ ତା'ର ପ୍ରତିବେଶୀ ଦେଶମାନଙ୍କର ସମତଳ ଭୂମିରୁ ମିଳିଥିବା ପ୍ରସ୍ତର ଖଣ୍ଡଗୁଡ଼ିକରେ ପାଞ୍ଚଟି ଭିନ୍ନ ଭିନ୍ନ ତୁଷାର ଯୁଗର ଚିହ୍ନ ଦେଖିବାକୁ ମିଳିଛି । ବେଳେ ବେଳେ କାରେଲିଆର ଘଞ୍ଚ ପାଇନ୍ ଜଙ୍ଗଲରେ ବିରାଟ ବିରାଟ ଶିଉଳି ଢଙ୍କା ପଥର ଖଣ୍ଡ ସବୁ ଦେଖିବାକୁ ମିଳେ । ସେସବୁ ଏହି ଜଙ୍ଗଲ ମଧ୍ୟକୁ କେମିତି ଆସିଲା ? ନିଶ୍ଚୟ ଏସବୁ ହେଉଛି ସେହିସବୁ ହିମବାହର କାଣ୍ଡ ।

ଇତିପୂର୍ବରୁ ଉତ୍ତରାଞ୍ଚଳର ହିମବାହସବୁ ଦକ୍ଷିଣ ଆଡ଼କୁ ମାଡ଼ି ଆସିଥିଲେ, କିନ୍ତୁ ଏତେ ଦକ୍ଷିଣକୁ ପଶି ଆସି ନଥିଲେ । ରୁଷିଆର ଏହିସବୁ ହିମବାହ ପହଞ୍ଚି ଯାଇଥିଲା ଭୋଲ୍‌ଗଗ୍ରାଡ୍ ଏବଂ ଦ୍‌ନିପ୍ରୋପେଟ୍ରୋଭ୍‌ସ ସହର ନିକଟରେ । ପଶ୍ଚିମ ୟୁରୋପରେ ସେସବୁ ଜର୍ମାନୀର ପାର୍ବତ୍ୟ ଅଞ୍ଚଳ ପର୍ଯ୍ୟନ୍ତ ଆସି ଯାଇଥିଲେ, ବ୍ରିଟିଶ୍ ଦ୍ୱୀପ ପୁଞ୍ଜକୁ ଢାଙ୍କି ପକାଇଥିଲେ । ଉତ୍ତର ଆମେରିକାରେ ସେସବୁ ଘୁଞ୍ଚି ଆସିଥିଲେ ଗ୍ରେଟ୍ ଲେକ୍ ପର୍ଯ୍ୟନ୍ତ ।

ଏହିସବୁ ହିମବାହ ଧୀରେ ଧୀରେ ଆଗେଇ ଆସିଥିଲେ ଏବଂ ପୃଥିବୀର ଯେଉଁ ଅଞ୍ଚଳରେ ସେ ପ୍ରାଗୈତିହାସିକ ମଣିଷ ବାସ କରୁଥିଲା ସେଠାରେ ତା'ର ଶୀତଳ ପ୍ରଭାବ ଅନୁଭୂତ ହୋଇଥିଲା । କିନ୍ତୁ, ସମୁଦ୍ରର ଜୀବମାନେ ପ୍ରଥମେ ତା'ର ଶିକାର ହୋଇଥିଲେ ।

ଉପକୂଳ ଅଞ୍ଚଳସବୁ ତେବେ ବି ଉଷ୍ଣ ରହିଥାଏ । ବଣ ଜଙ୍ଗଲରେ ଭରି ରହିଥାଏ ଲରେଲ ଆଉ ମାଗ୍ନୋଲିଆ ଗଛସବୁ । ଦକ୍ଷିଣାଞ୍ଚଳର ବିଶାଳକାୟ ହାତୀ ଏବଂ ଗଣ୍ଡାମାନେ ତୃଣଭୂମିର ଉଚ୍ଚା ଉଚ୍ଚା ଘାସ ଜଙ୍ଗଲ ମଧ୍ୟରେ ଘୂରି ବୁଲୁଥିଲେ । ସମୁଦ୍ରର ପାଣି କିନ୍ତୁ କ୍ରମଶଃ ଶୀତଳ ହୋଇ ଆସିଲା । ସମୁଦ୍ର ମଧ୍ୟରେ ନଈ ବହିଗଲା ଭଳି ଶୀତଳ ସ୍ରୋତସବୁ ଉତ୍ତରରୁ ଶୀତଳ ହିମବାହଗୁଡ଼ିକୁ ବହି ଆଣିଲେ, ବେଳେ ବେଳେ ବରଫ ଖଣ୍ଡମାନ ମଧ୍ୟ ମାଡ଼ି ଆସିଲେ ।

ସମୁଦ୍ରର ଉଚ୍ଚ ଉପକୂଳ ସବୁ ଏବେ ପ୍ରମାଣ ଦିଏ କିପରି ଉଷ୍ଣ ସମୁଦ୍ରସବୁ ଶୀତଳ ପାଲଟି ଗଲେ । ଯଉଁ ଭାଗରେ ଉଷ୍ଣତାପ୍ରିୟ ପ୍ରାଣୀ ଏବଂ ଗଛବୃଛ ସବୁ ବାସ କରୁଥିଲା ବେଳେ ସାମୁଦ୍ରିକ ଜୀବମାନଙ୍କ ପରିବର୍ତ୍ତନ ଆରମ୍ଭ ହୋଇ ଯାଇଥିଲା ।

ତତ୍କାଳୀନ ଭୂତାତ୍ତ୍ୱିକ ଆବିଷ୍କାରଗୁଡ଼ିକୁ ଯଦି ପରୀକ୍ଷା କରାଯାଏ ତେବେ ଶାମୁକା ଗେଣ୍ଡାମାନଙ୍କର ଖୋଳପା ସବୁ ଦେଖିବାକୁ ମିଳେ । ଏହିସବୁ ଜୀବ କେବଳ ଥଣ୍ଡା ଜଳରେ ବାସ କରିପାରନ୍ତି ।

## ଜଙ୍ଗଲର ଲଢ଼େଇ ।

ହିମବାହଗୁଡ଼ିକର ପ୍ରଭାବ ପୃଥିବୀ ପୃଷ୍ଠରେ ଅନୁଭୂତ ହେଲା ।

ତୁମେମାନେ ଆଶ୍ଚର୍ଯ୍ୟ ହେବ ଶୁଣିଲେ ଯେ, ଉତ୍ତର ମେରୁ ଯେଉଁଠି ଥିଲା, ସେଠି ଆଉ ରହିଲା ନାହିଁ, କ୍ରମଶଃ ଏହା ଦକ୍ଷିଣ ଆଡ଼କୁ ଆଗେଇ ଆସିଲା । ଏହା ଉତ୍ତରର ତୁନ୍ଦ୍ରା ଏବଂ ପାଇନ୍ ଜଙ୍ଗଲସବୁକୁ ଏପଟ ସେପଟ କରି ଦେଇ ଦକ୍ଷିଣକୁ ଠେଲି ଦେଲା ।

ଫଳରେ ତୁନ୍ଦ୍ରା ଆରମ୍ଭ କରି ଦେଲା ଟାଇଗା ଜଙ୍ଗଲ ବିରୁଦ୍ଧରେ ଲଢ଼େଇ । ଟାଇଗାକୁ ପଛକୁ ଫେରିବାକୁ ପଡ଼ିବ, ପତ୍ରଭରା ଜଙ୍ଗଲସବୁ ବୃଦ୍ଧି ପାଇବାକୁ ଲାଗିଲା ।

ଆରମ୍ଭ ହୋଇଗଲା ଜଙ୍ଗଲମାନଙ୍କର ମହା ଯୁଦ୍ଧ ।

ଜଙ୍ଗଲମାନେ ପରସ୍ପର ବିରୁଦ୍ଧରେ ଲଢ଼େଇ କରିବାକୁ ଲାଗିଗଲେ । ଫାର ଏବଂ

ଆମ୍ବ ଜଙ୍ଗଲ ଥିଲେ ପରସ୍ପରର ଘୋର ଶତ୍ରୁ । ଆମ୍ବ ଗଛ ଛାଇକୁ ଘୃଣା କରୁଥିଲା ବେଳେ ଫାର ଗଛ ଛାଇରେ ଭଲ ବଢ଼େ ।

ଫାର ଜଙ୍ଗଲରେ ଆମ୍ବ ଗଛ ଥିଲେ ମୋଟେ ବଢ଼ି ପାରେ ନାହିଁ । ବଡ଼ ବଡ଼ ଫାର ଗଛର ଛାଇରେ ସେସବୁ ଉଧାଏ ନାହିଁ । କିନ୍ତୁ, କାଠହଣାଳୀ ଫାରଗଛକୁ କାଟି ତଳେ ପକାଇ ଦେଲେ, ଆମ୍ବ ଗଛ ଜୀବନ ଫେରିଯାଏ । ଖରାରେ ସେ ବଢ଼ିବାକୁ ଲାଗେ ।

ତା'ପରେ ସବୁ ବଦଳିବାକୁ ଲାଗେ । ଫାରଗଛର ଛାୟା ତଳେ ବଢ଼ି ଉଠିଥିବା ଶିଉଳିସବୁ ଶୁଖିକି ମରିଯାଏ । ଛୋଟ ଛୋଟ ଫାରଗଛଗୁଡ଼ିକ ସକାଳିଆ ତୁଷାର ପାତରେ ମୁଣ୍ଡକୁଟିଆ ମାରି ମାରି ଯାଆନ୍ତି । ସେମାନଙ୍କ ମାମାନେ, ଅର୍ଥାତ୍ ବଡ଼ ବଡ଼ ଫାରଗଛସବୁ ବଞ୍ଚିଥିଲା ବେଳେ ଛୋଟ ଛୋଟ ଫାରଗଛଗୁଡ଼ିକ ସେମାନଙ୍କ ସବୁଜ କାନି ତଳେ ବଡ଼ ଆରାମରେ ଥାଆନ୍ତି । ମାମାନେ ମରିଗଲା ପରେ ଛୁଆସବୁ ଫୁଙ୍ଗୁଳାରେ ଅନାଥ ହୋଇ ପଡ଼ନ୍ତି, ରୋଗା ସନ୍ତରା ହୋଇ ଆଉ ବଢ଼ନ୍ତି ନାହିଁ ।

ଏବେ ଆମ୍ବ ଗଛର ଜିତାପଟ । ଆଗେ ସେମାନଙ୍କ ଶତ୍ରୁ ଫାରଗଛର ପତ୍ର ଗହଳି ଦେଇ ପଶି ଆସୁଥିବା କେରାଏ କେରାଏ ଖରା ସେମାନେ ପାଉଥିଲେ । ଏବେ ଫାରଗଛସବୁ କଟା ହୋଇଗଲା ପରେ, ଆମ୍ବମାନଙ୍କର ରାଜତ୍ୱ ଜଙ୍ଗଲରେ ଆରମ୍ଭ ହୋଇ ଗଲା ।

ମାତ୍ର କେଇ ବର୍ଷ ମଧ୍ୟରେ ଯେଉଁଠି ଘଞ୍ଚ ଫାର ଜଙ୍ଗଲ ଥିଲା ସେଠି ମୁଣ୍ଡ ଟେକି ଉଠିଲା ଚୋପା ଆମ୍ବ ଜଙ୍ଗଲ ।

କିନ୍ତୁ ସମୟ କାହାକୁ ଅପେକ୍ଷା କରେ ନାହିଁ । ଏବଂ ସମୟ ହେଉଛି ସବୁଠାରୁ ବଡ଼ କର୍ମବୀର । ଧୀରେ ଧୀରେ, ପ୍ରଥମେ ଅଲକ୍ଷ୍ୟରେ ସେ ଗଢ଼ି ତୋଳେ ଜଙ୍ଗଲର ପ୍ରାସାଦ । ଆମ୍ବ ସବୁ ଉଚ୍ଚରୁ ଉଚ୍ଚତର ହୁଅନ୍ତି, ସେମାନଙ୍କର ସେ ଗହଳିଆ ଚୂଡ଼ାସବୁ ପରସ୍ପର ଦିହରେ ଲାଗିଯାଏ । ସେମାନଙ୍କ ଗଣ୍ଡି ଉପରେ ପଡ଼ୁଥିବା ଛାୟା ପ୍ରଥମେ ବହଳ ନଥାଏ ଏବଂ ହଟି ଯାଇଥାଏ । କ୍ରମଶଃ ତାହା ଘନ ଏବଂ ଅନ୍ଧାରୁଆ ହୋଇ ଆସେ । ଫାରମାନଙ୍କ ବିରୁଦ୍ଧରେ ଆମ୍ବମାନେ ଜୟଲାଭ କରନ୍ତି । କିନ୍ତୁ ଏହି ଜୟ ମଧ୍ୟରେ ଲୁଚି ରହିଥାଏ ସେମାନଙ୍କ ମୃତ୍ୟୁ ।

କୌଣସି ଲୋକକୁ ତା'ର ଛାୟା କେବେ ହତ୍ୟା କରେ ନାହିଁ । କିନ୍ତୁ ବୃକ୍ଷମାନଙ୍କ କ୍ଷେତ୍ରରେ, ଅନେକ ସମୟରେ ଏହା ଘଟିଥାଏ । ଡାଳପତ୍ର ଭରା ଆମ୍ବ ଗଛଗୁଡ଼ିକ ତଳେ ଛୋଟ ଛୋଟ ବିକଳାଙ୍ଗ ଫାରଗଛସବୁ ଲୁଚି ରହିଥାନ୍ତି । ସମୟ ଉଣ୍ଡି ଏହିସବୁ ଛୋଟ ଶତ୍ରୁମାନେ ମୁଣ୍ଡଟେକି ଉଠନ୍ତି । ଉପରୁ ପଡ଼ୁଥିବା ଆମ୍ବ ପତ୍ରର

ଏକ ଆସ୍ତରଣ କମ୍ବଳ ପରି ମାଟିକୁ ଉଷୁମ ରଖେ ଏବଂ ଛୋଟ ଛୋଟ ଫାରଗଛସବୁ ଶୀଘ୍ର ତାକୁ ଢାଙ୍କି ଦିଅନ୍ତି । କୋଡ଼ିଏ ବର୍ଷ ମଧ୍ୟରେ ଏହିସବୁ ଫାରଗଛର ଅଗ ଯାଇ ଆସ୍ପଗଛର ଅଗକୁ ଛୁଇଁ ପକାଏ । ଜଙ୍ଗଲରେ ଖୋଲା ପବନ ଆତଯାତ କରେ, ଉଜ୍ଜ୍ୱଳ ଖରା ପଡ଼େ । ଫଳରେ ଫାରସବୁ ଆହୁରି ଡେଙ୍ଗା ହୋଇ ଯାଆନ୍ତି । ସମୟ ଆସେ ଯେତେବେଳେ ସେସବୁର ଗହଳିଆ ଛୁଞ୍ଚି ଭଳି ସବୁଜ ପତ୍ରର ଛାୟା ଆସ୍ପକୁ ମାଡ଼ି ବସେ ।

ଆସ୍ପମାନଙ୍କର କାଳ ଶେଷ ହୋଇ ଆସେ । ଫାରଗଛମାନଙ୍କର ଛାୟା ତଳେ ସେମାନେ ଶୁଖି ଶୁଖି ମରିବାକୁ ଆରମ୍ଭ କରନ୍ତି । ପୁଣି ଜଙ୍ଗଲରେ ପ୍ରତିଷ୍ଠିତ ହୁଏ ଫାରମାନଙ୍କ ରାଜତ୍ୱ । ସେମାନେ ସେମାନଙ୍କର ପୂର୍ବ କ୍ଷମତା ଫେରି ପାଆନ୍ତି ।

ମଣିଷ ଏବଂ କୁରାଢ଼ି ଜଙ୍ଗଲମାନଙ୍କ ଜୀବନରେ ହସ୍ତକ୍ଷେପ କରୁଥିଲା ବେଳେ ଜଙ୍ଗଲମାନଙ୍କ ମଧ୍ୟରେ ଲଢ଼େଇ ଏହିଭଳି ଘଟିଥାଏ ।

କିନ୍ତୁ ଜଙ୍ଗଲମାନଙ୍କର ଯୁଦ୍ଧ ଆହୁରି ଘମାଘୋଟ ହୋଇ ଉଠେ, ଯେତେବେଳେ ତୁଷାର ଯୁଗର ଶୀତଳ ହାତ ସେମାନଙ୍କ ଜୀବନକୁ ଜାବୁଡ଼ି ଧରେ ।

ବରଫର ଅଣ୍ଡାରେ ଉଷ୍ଣତାପ୍ରିୟ ଗଛ ସବୁ ମରି ଗଲେ ଏବଂ ଉତ୍ତରାଞ୍ଚଳରେ ଜଙ୍ଗଲମାନଙ୍କ ପାଇଁ ସୁବିଧାର ରାସ୍ତା ଖୋଲି ଗଲା । ପାଇନ୍ ଫାର ଏବଂ ବାର୍ଚ୍ଚସବୁ ଓକ୍ ଏବଂ ଲିଣ୍ଡେନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଦେଲେ । ଓକ୍ ଏବଂ ଲିଣ୍ଡେନକୁ ପଛକୁ ଘୁଞ୍ଚିବାକୁ ପଡ଼ିଲା । ଏହି ପଛଘୁଞ୍ଚା ଦେଲା ବେଳେ ସେମାନେ ଚିରସବୁଜ ବୃକ୍ଷ–ଲରେଲ. ମାଗ୍ନୋଲିଆ ଏବଂ ତିମ୍ବିରି ଗଛକୁ ଘେରି ଗଲେ ।

ସୁକୁମାରିଆ, ଉତ୍ତାପପ୍ରିୟ ଗଛମାନେ ଥଣ୍ଡା ହାଓ୍ୱା ବହୁଥିବା ଆଶ୍ରୟହୀନ ଜାଗାରେ ବଞ୍ଚି ପାରନ୍ତି ନାହିଁ । ତେଣୁ ସେସବୁ ମରିଗଲେ ଏବଂ ଅନ୍ୟମାନେ ସେମାନଙ୍କ ଜାଗା ଦଖଲ କରି ନେଲେ ।

ସେମାନଙ୍କ ପାଇଁ ଏକମାତ୍ର ଆଶ୍ରୟ ସ୍ଥାନ ଥିଲା ପାହାଡ଼ ପର୍ବତ । ସୁରକ୍ଷିତ ଉପତ୍ୟକାମାନଙ୍କରେ ଉତ୍ତାପପ୍ରିୟ ଗଛମାନେ ନିଜକୁ ଲୁଚେଇ ନେଲେ । ତା'ପରେ ଅନ୍ୟ ହିମବାହ ସବୁ ପର୍ବତର ଉପରିଦେଶରୁ ତଳକୁ ଖସିବାକୁ ଲାଗିଲେ । ସାଙ୍ଗରେ ସେମାନେ ବହି ଆଣିଲେ ପାର୍ବତ୍ୟ ଚୁନ୍ଦ୍ରା, ପାହାଡ଼ିଆ ଫାର ଏବଂ ବାର୍ଚ୍ଚ ଗଛସବୁ ।

ଜଙ୍ଗଲମାନଙ୍କ ମଧ୍ୟରେ ଏହି ଲଢ଼େଇ ଘଟିଥିଲା ହଜାର ହଜାର ବର୍ଷ ଧରି । ଏବଂ ଉତ୍ତାପପ୍ରିୟ ଗଛମାନେ, ଶେଷ ପରାଭୂତ ସେନାବାହିନୀ ଭଳି ଆହୁରି ଦକ୍ଷିଣକୁ ପଛଘୁଞ୍ଚା ଦେଲେ ।

ଜଙ୍ଗଲମାନେ ସେମାନଙ୍କ ଆକ୍ରମଣକାରୀଙ୍କ ବିରୁଦ୍ଧରେ ଲଢ଼େଇରେ ନିଃଶେଷ ତ ହୋଇଗଲେ, କିନ୍ତୁ ଜୀବମାନଙ୍କର ଦଶା କ'ଣ ହେଲା ?

ଆଜିକାଲି ନିଆଁ ଲଗି କୌଣସି ବଣ ପୋଡ଼ିଗଲେ କିମ୍ବା ବଣ କଟା ହୋଇ ଗଲେ, ଜଙ୍ଗଲବାସିନ୍ଦା ପ୍ରାଣୀମାନଙ୍କ ମଧ୍ୟରୁ କେତେକ ମୃତ୍ୟୁ ମୁଖରେ ପଡ଼ନ୍ତି, ଆଉ କେତେକ ପଳାଇ ଯାଆନ୍ତି । ଫାର ଗଛର କୌଣସି ଜଙ୍ଗଲକୁ କାଟି ସଫା କଲାବେଳେ କ୍ରସ୍‌ବିଲ ପକ୍ଷୀ, ସୁନାଚୂଡ଼ା ପକ୍ଷୀ ଏବଂ ଅନ୍ୟମାନେ କୁଆଡ଼େ ଉଡ଼ି ପଳାନ୍ତି ।

ସେମାନଙ୍କର ପୁରୁଣା ବାସସ୍ଥାନ ଗଛ ଫାର ଜଙ୍ଗଲ ସ୍ଥାନରେ ନୂଆ ଆସ୍ପଗଛର ଜଙ୍ଗଲ ମୁଣ୍ଡ ଟେକି ଉଠେ । ନୂଆ ନୂଆ ପକ୍ଷୀ ପଶୁ ସେମାନଙ୍କ ନୂଆ ଘରକୁ ପୁଣି ଚାଲି ଆସନ୍ତି ।

ଅନେକ ବର୍ଷ ପରେ ଫାରମାନେ ଯେତେବେଳେ ପୁଣି ଆସ୍ପମାନଙ୍କୁ ପରାସ୍ତ କରି ଦେଲେ, ସେତେବେଳେ ଫାର ଜଙ୍ଗଲ କିନ୍ତୁ ଖାଲି ରହିଲା ନାହିଁ । ପୁଣି ସୁନାଚୂଡ଼ା ପକ୍ଷୀ, କ୍ରସ୍‌ବିଲ ସମେତ ଅନ୍ୟ ପକ୍ଷୀମାନେ ଆସି ସେଥିରେ ଭରି ଗଲେ ।

କୌଣସି ଜଙ୍ଗଲ ମରିଯିବା ଏବଂ ପୁଣି ପୁନର୍ଜନ୍ମ ଲାଭ କରିବାଟା କେବଳ ଗଛ ଏବଂ ଜନ୍ତୁମାନେ ଆସି ଏକଜୁଟ ହୋଇ ଯିବାକୁ ବୁଝାଏ ନାହିଁ, ଏହା ଗଢ଼ି ଉଠେ ଏକ ଐକ୍ୟବଦ୍ଧ, ସୁସ୍ୱସ୍ଥ ରୂପେ ସଜ୍ଜିତ ଦୁନିଆ ଭଳି ।

ତାହାହିଁ ଘଟିଥିଲା ତୁଷାର ଯୁଗରେ । ଗ୍ରୀଷ୍ମ ମଣ୍ଡଳୀୟ ଜଙ୍ଗଲସବୁ ଅନ୍ତର୍ଦ୍ଧାନ ହୋଇଯିବା ସଙ୍ଗେ ସଙ୍ଗେ ପ୍ରାଣୀମାନେ ମଧ୍ୟ ଲୋପ ପାଇ ଯାଇଥିଲେ । ବିଶାଳକାୟ ହାତୀସବୁ ମରିଗଲେ, ଗଣ୍ଡା ଏବଂ ଜଳଘୋଟକ ସବୁ ଦକ୍ଷିଣକୁ ପଳାଇଗଲେ । ପ୍ରାଗୈତିହାସିକ ମଣିଷର ଘୋର ଶତ୍ରୁ ଖଣ୍ଡାଦାନ୍ତିଆ ବାଘମାନଙ୍କର ଶେଷକୁ ମୃତ୍ୟୁ ଘଟିଲା ।

ଏମାନଙ୍କ ବ୍ୟତୀତ ଆହୁରି ଅସଂଖ୍ୟ ଛୋଟ ଛୋଟ ଜୀବ ଏବଂ ପକ୍ଷୀମାନେ ହୁଏତ ମରିଗଲେ, ନତୁବା ଦକ୍ଷିଣକୁ ଖସି ପଳାଇଲେ ।

ଏହା ଛଡ଼ା ଆଉ ବା କ'ଣ ହୋଇ ଥାନ୍ତା ! ପ୍ରତ୍ୟେକଟି ପ୍ରାଣୀତ ତା'ର କ୍ଷୁଦ୍ର ଦୁନିଆ, ସେହି ଜଙ୍ଗଲ ସହିତ ବନ୍ଧା । ସେହି ଜଙ୍ଗଲ ଦୁନିଆଟା ଯେତେବେଳେ ଧସି ପଡ଼ିଲା, ସେତେବେଳେ ତା'ର ଅନେକ ବାସିନ୍ଦା ଧ୍ୱଂସ ହୋଇଗଲେ ।

ଗଛବୃକ୍ଷ, ଘାସ ବୁଦା ଆଦି ମରି ଯିବା ସଙ୍ଗେ ସଙ୍ଗେ ସେସବୁଥିରେ ଲୁଚିକି ରହୁଥିବା ଏବଂ ଖାଦ୍ୟପେୟ ପାଇଁ ସେମାନଙ୍କ ଉପରେ ନିର୍ଭର କରୁଥିବା ପ୍ରାଣୀମାନେ ଖାଦ୍ୟ ଆଉ ଆଶ୍ରୟ ପାଇଲେ ନାହିଁ । ଏହିସବୁ ଶାନ୍ତିପ୍ରିୟ ତୃଣଭୋଜୀ ପ୍ରାଣୀ

ମରିଗଲା ପରେ ସେମାନଙ୍କ ମାଂସ ଖାଇ ବଞ୍ଚୁଥିବା ମାଂସାସୀ ପ୍ରାଣୀମାନେ ମଧ୍ୟ ଉପାସରେ ପ୍ରାଣ ହରେଇଲେ ।

"ପୁଷ୍ଟି ଚକ୍ର" ସହିତ ଛଡା ସମସ୍ତ ପ୍ରାଣୀ ଏବଂ ଉଦ୍‌ଭିଦ ମରିଗଲେ, ସେମାନଙ୍କ ଜଙ୍ଗଲ ମରିଗଲା ।

ପ୍ରାଚୀନ ଯୁଗରେ ପାଲଟଣା ଜାହାଜରେ ଆହୁଲା ବାହୁଥିବା କ୍ରୀତଦାସମାନଙ୍କୁ ଜାହାଜରେ ନେଇ ଗଲାବେଳେ ସେମାନଙ୍କ ଆହୁଲା ସହିତ ସେମାନଙ୍କୁ ଜଂଜିରରେ ବାନ୍ଧି ଦିଆ ଯାଉଥିଲା ।

କୌଣସି ପ୍ରାଣୀକୁ ବଞ୍ଚିବା ପାଇଁ ତା'ର ଶୃଙ୍ଖଳକୁ ଛିଡ଼େଇବାକୁ ପଡ଼ୁଥିଲା : ସେ ଯେଉଁ ଖାଦ୍ୟ ଖାଉଥିଲା, ତାଠାରୁ ଭିନ୍ନ ଖାଦ୍ୟ ଖାଇବାକୁ ହେଲା, ତା'ର ଥାବା ଏବଂ ଦାନ୍ତକୁ ବଢ଼େଇବାକୁ ପଡ଼ିଲା, ଶୀତରୁ ରକ୍ଷା ପାଇବା ପାଇଁ ଦେହର ଲୋମ ମଧ୍ୟ ବଢ଼ିଲା । ଅନ୍ୟ କଥାରେ କହିବାକୁ ଗଲେ ଖୋଦ ପ୍ରାଣୀ ବି ବଦଳି ଯାଉଥିଲା ।

ଇତି ପୂର୍ବରୁ ଆମେ ଜାଣିଛେ ପ୍ରାଣୀମାନଙ୍କ ପକ୍ଷରେ ପରିବର୍ତ୍ତନ ହେବାଟା କେତେ କଷ୍ଟକର । ଘୋଡ଼ା କଥା ତମମାନଙ୍କ ମନେ ଥିବ । ତାକୁ କୋଟି କୋଟି ବର୍ଷ ଲାଗି ଯାଇଥିଲା, ଏବେ ଆମେ ଯେଉଁ ଏକଖୁରିଆ ଘୋଡ଼ା ଦେଖୁଛେ, ସେଭଳି ହେବା ପାଇଁ ।

ଦକ୍ଷିଣାଞ୍ଚଳର ଏକ ପ୍ରାଣୀ ପକ୍ଷରେ ଉତ୍ତରାଞ୍ଚଳର ଜଙ୍ଗଲରେ ବଞ୍ଚିବା ଅତୀବ କଷ୍ଟକର ।

କେବଳ ସେତିକି ନୁହେଁ, ଉତ୍ତରାଞ୍ଚଳ ଜଙ୍ଗଲର ଲୋମଶ ଅଧିବାସୀମାନେ ସେମାନଙ୍କ ସେ ଲୋମଶ ଦେହ ନେଇ ଦକ୍ଷିଣାଞ୍ଚଳକୁ ଆସିଲେ । ସେସବୁ ପ୍ରାଣୀମାନଙ୍କ ମଧ୍ୟରେ ଥିଲେ ଲୋମଶ ଗଣ୍ଡା, ମାମଥ୍ ବା ବିଶାଳକାୟ ହାତୀ, ଗୁହାରେ ରହୁଥିବା ସିଂହ ଏବଂ ଭାଲୁ । ଏମାନେ ସମସ୍ତେ ଉତ୍ତରାଞ୍ଚଳ ଜଙ୍ଗଲର ଅଧିବାସୀ ।

ସେମାନଙ୍କର ସେ ବହଳ ଲୋମଶ ଚମଡ଼ା ଥିଲା ସେମାନଙ୍କର ସବୁଠାରୁ ମୂଲ୍ୟବାନ ସଂପଦ । ମାମଥ୍ ଏବଂ ଲୋମଶ ଗଣ୍ଡାମାନେ ଥଣ୍ଡାକୁ ଭୟ କରୁ ନଥିଲେ । ସେମାନଙ୍କର ଚମଡ଼ା ଥିଲା ଉଷ୍ମ, ଲୋମଶ–ଦକ୍ଷିଣାଞ୍ଚଳର ହାତୀ, ଜଳଘୋଟକ ଏବଂ ଗଣ୍ଡାଙ୍କ ଚମଡ଼ାରେ ଯେମିତି ଛୋଟ ଛୋଟ ଲୋମ ଥାଏ, ସେମାନଙ୍କ ଚମଡ଼ା ସେପରି ନଥିଲା ।

ଆଉ କେତେକ ଉତ୍ତରାଞ୍ଚଳୀୟ ଜୀବ ଆଉ ଏକ ଉପାୟରେ ଥଣ୍ଡାରୁ ରକ୍ଷା ପାଇ ଗଲେ–ଗୁହାମାନଙ୍କରେ ସେମାନେ ଲୁଚି ଯାଉଥିଲେ ।

ଉତ୍ତରାଞ୍ଚଳର ପ୍ରାଣୀମାନେ ଖାଦ୍ୟ ପାଇଁ ନୂଆ ଜଙ୍ଗଲରେ ଲୁଚି ଲୁଚି ବୁଲୁ

ନଥିଲେ, କାରଣ ସେଟା ଥିଲା ସେମାନଙ୍କର ଜଙ୍ଗଲ ଏବଂ ସେମାନଙ୍କ ଦୁନିଆ ।

ପରାଜିତ ଜଙ୍ଗଲର ପ୍ରାଣୀମାନେ ଉତ୍ତରାଞ୍ଚଳୀୟ ଜଙ୍ଗଲର ନୂଆ ଶାସକମାନଙ୍କ ସହିତ ଲଢ଼େଇ କରିବାକୁ ହେବ ।

ସେମାନଙ୍କ ମଧ୍ୟରୁ କେହି ଏବେ ବଞ୍ଚି ନାହାନ୍ତି ବୋଲି, ତମେ କ'ଣ ଆଶ୍ଚର୍ଯ୍ୟ ହେଉଛ ?

କିନ୍ତୁ ପ୍ରାଗୈତିହାସିକ ମଣିଷର ଅବସ୍ଥା କ'ଣ ହେଲା ?

ଯେଉଁମାନେ ବର୍ତ୍ତିଗଲେ ସେମାନଙ୍କ ମଧ୍ୟରେ ପ୍ରାଗୈତିହାସିକ ମଣିଷ ଥିଲା ନିଶ୍ଚିତ ଭାବେ ଅନ୍ୟତମ । କାରଣ ସିଏ ଯଦି ବର୍ତ୍ତି ନଥାନ୍ତା, ତେବେ ଏ ବହିଟି ଆଜି ତମେମାନେ ପଢ଼ିବାକୁ ପାଇ ନଥାନ୍ତ ।

ଯେଉଁ ଲୋକେ ଉଷ୍ମ ଜଳବାୟୁରେ ବାସ କରୁଥିଲେ ସେମାନଙ୍କୁ ଥଣ୍ଡା ବିରୁଦ୍ଧରେ ଲଢ଼େଇ କରିବାକୁ ପଡ଼ିଲାନି, ଯଦିଓ ସେଠାକାର ଜଳବାୟୁ ଅଧିକ ଶୀତଳ ହୋଇ ଗଲା ।

ମାଡ଼ି ଆସୁଥିବା ହିମାବାହଗୁଡ଼ିକର ପ୍ରବଳ ଭୟଙ୍କରତାର ସମ୍ମୁଖୀନ ହୋଇଥିଲେ ସେମାନଙ୍କ ଅବସ୍ଥା ବଡ଼ ଦୟନୀୟ ହୋଇ ଉଠିଥିଲା ।

ପ୍ରତିବର୍ଷ ସେମାନେ ନୂଆ ନୂଆ ଶୀତ ଋତୁ ଭୋଗ କରୁଥିଲେ । ସେସବୁ ଶୀତ ଋତୁ ଥିଲା ବଡ଼ ଭୟଙ୍କର । ଥରି ଥରି ସେମାନେ ଜମାଟ ବାନ୍ଧି ଯାଉଥିଲେ, ଜାକିଜୁକି ହୋଇ ଦେହକୁ ଦେହ ଲଗେଇ ନିଜକୁ ଏବଂ ପିଲାମାନଙ୍କୁ ପ୍ରବଳ ଶୀତରୁ ରକ୍ଷା କରୁଥିଲେ ।

କ୍ଷୁଧା, ପ୍ରବଳ ବରଫ ଏବଂ ବନ୍ୟ ଜନ୍ତୁମାନଙ୍କ କବଳରେ ପ୍ରାଣ ହରେଇବାର ଭୟ ସବୁବେଳେ ସେମାନଙ୍କୁ ଆତଙ୍କିତ କରି ରଖିଥିଲା ।

ଏହି ଆଦିମ ମଣିଷମାନେ ଯଦି ସେମାନଙ୍କ ଚତୁଃପାର୍ଶ୍ୱରେ କ'ଣ ସବୁ ଘଟୁଛି ବୁଝି ପାରୁଥାନ୍ତେ, ତେବେ ନିଶ୍ଚୟ ଭାବିଥାନ୍ତେ ପ୍ରଳୟ ଆସିଗଲା ଏଥର ।

## ଜଗତର ଅବସାନ ।

ଏ ପୃଥିବୀ ଦିନେ ରସାତଳକୁ ଗ୍ଲଲି ଯିବ ବୋଲି ଅନେକ ଲୋକ ଅନେକ ଥର ଭବିଷ୍ୟଦ୍‌ବାଣୀ କରିଛନ୍ତି ।

ମଧ୍ୟ ଯୁଗରେ ଆକାଶରେ କେବେ ଲମ୍ବା ତାରାଟି ତା'ର ନିଆଁ ଭଳି ଲାଙ୍ଗୁଳକୁ ମେଲି ଗ୍ଲଲିଗଲେ ଲୋକେ ଭଗବାନଙ୍କୁ ଡାକି କହୁଥିଲେ :

"ଏଥର ପୃଥିବୀ ଧ୍ୱଂସ ହୋଇ ଯିବ !"

ପୁଣି କେବେ ଭୟଙ୍କର ମଡ଼କରେ, ସହର ଏବଂ ଗାଁର ଲୋକେ ମରି ସଫା ହୋଇ ଗ୍ରାମ ମଶାଣି ହୋଇଗଲେ ଲୋକେ କହୁଥିଲେ :

"ଆଉ ଏଥର ରକ୍ଷା ନାହିଁ, ପ୍ରଳୟ ନିଶ୍ଚୟ ଆସିଗଲାଣି !"

ଯୁଦ୍ଧ ଆଉ ଅନାହାରର ଦାଉରେ ଭୟଭୀତ ହୋଇ କହି ପକାଉଥିଲେ : "ଏ ଦୁନିଆ ଆଉ ରହିବ ନାହିଁ, ଧ୍ୱଂସ ପାଇଯିବ..."

କିନ୍ତୁ ଏ ପୃଥିବୀର ଅବସାନ କେବେ ଘଟିନି ।

ଏବେ ଆମେ ଅନେକ ଲାଞ୍ଜତାରା ଆକାଶରେ ଦେଖୁଛେ । କେହି କିନ୍ତୁ ତାକୁ ଏକ ଅଶୁଭ ଲକ୍ଷଣ ବୋଲି ଆଉ ଭାବୁ ନାହାନ୍ତି । ଲାଞ୍ଜତାରା ତା ପଥରେ ସୂର୍ଯ୍ୟ ଘେରି ପାଖରେ ଘୂରୁଛି, ପୃଥିବୀର ଲୋକେ ତା ସଂପର୍କରେ କ'ଣ ଭାବୁଛନ୍ତି ସେଥିରେ ତା'ର କିଛି ଯାଏ ଆସେ ନାହିଁ ।

ଆମେ ଆହୁରି ଜାଣିଛେ ଯେ, କ୍ଷୁଧା, ମହାମାରି ଏପରିକି ଯୁଦ୍ଧ ଲାଗିଗଲେ ବି ପୃଥିବୀ ଧ୍ୱଂସ ହୋଇ ଯିବନି । ସବୁଠାରୁ ବଡ଼ କଥା ହେଉଛି ସେସବୁ ବିପର୍ଯ୍ୟର କାରଣ କ'ଣ ଜାଣିବା । କାରଣ ଜାଣିଥିଲେ ସେଇ ସବୁ ବିପର୍ଯ୍ୟୟ ବିରୁଦ୍ଧରେ ଲଢ଼ିବା ସହଜ ହୁଏ ।

କେତେକ ଅଜ୍ଞ ଆଉ କୁସଂସ୍କାରାଚ୍ଛନ୍ନ ଲୋକେ ଯେ ପୃଥିବୀ ଧ୍ୱଂସ ପାଇ ଯିବ ବୋଲି କହନ୍ତି, ତା ନୁହେଁ । ଅନେକ ବିଜ୍ଞାନୀ ମଧ୍ୟ ମଣିଷଜାତି ଧ୍ୱଂସ ପାଇଯିବ ବୋଲି ଭବିଷ୍ୟଦ୍‌ବାଣୀ କରିଥାନ୍ତି । ସେମାନଙ୍କ ମଧ୍ୟରୁ କେତେକ କହନ୍ତି ଜାଳେଣି ଅଭାବରୁ ମଣିଷଜାତି ମରିଯିବ । ସେମାନେ ହିସାବ କଷି ଦେଖାନ୍ତି ଯେ, ପୃଥିବୀର



ଗୁମ୍ଫା କାନ୍ଥରେ ଅଙ୍କାଯାଇଥିବା ଏହି ଗଣ୍ଡାର ଚିତ୍ର ଓ ବର୍ତ୍ତମାନ ଯୁଗର ଗଣ୍ଡା ମଧ୍ୟରେ ପ୍ରଭେଦ ରହିଛି । କାରଣ, ତା'ର ଚର୍ମ ଲୋମଯୁକ୍ତ ଥିଲା ।

ମାଟି ତଳେ ଥିବା କୋଇଲା କମି କମି ଯାଉଛି । ଜଙ୍ଗଲସବୁ ସଫା ହୋଇ ଆସୁଛି ଏବଂ ଆଉ କେଇଶ ବର୍ଷ ପରେ ତେଲ ବି ଶେଷ ହୋଇ ଯିବ । ପୃଥିବୀରେ ଜାଳେଣି ନ ମିଳିଲେ କଳକାରଖାନାସବୁ ବନ୍ଦ ହୋଇ ଯିବ , ରେଳଗାଡ଼ି ଚଳିବ ନାହିଁ , ରାସ୍ତା ଏବଂ ଘରେ ଆଲୁଅ ଜଳିବ ନାହିଁ । ଫଳରେ ଅଧିକାଂଶ ଲୋକ ଶୀତ ଏବଂ କ୍ଷୁଧାରେ ମରିଯିବେ ଏବଂ ଯେଉଁମାନେ ବଞ୍ଚିବେ ସେମାନେ ବର୍ବର ପରି କେବଳ ରହିବେ ।

ଏସବୁ ହେଉଛି ନିଶ୍ଚୟ ଭୟାବହ ଛବି !

କିନ୍ତୁ ଏଭଳି କ'ଣ ସତରେ ଘଟିବ ?

ପୃଥିବୀରେ ଅପରିମେୟ ଜାଳେଣି ରହିଛି । ପ୍ରତିବର୍ଷ ନୂଆ ନୂଆ ତୈଳ ଏବଂ କୋଇଲା ଖଣି ଆବିଷ୍କାର ହେଉଛି ଏବଂ ଆହୁରି ମଧ୍ୟ ଆବିଷ୍କାର ହେବ ।

ଜଙ୍ଗଲ କେବଳ କଟା ହେଉନି , ନୂଆ ନୂଆ ଜଙ୍ଗଲ ବି ସୃଷ୍ଟି କରାଯାଉଛି ।

କିନ୍ତୁ ପୃଥିବୀରେ କେବେ ଯଦି ଜାଳେଣି ସବୁ ଶେଷ ହୋଇ ଯାଏ , ତେବେ ଆମ ପୃଥିବୀ କ'ଣ ସତରେ ଧ୍ୱଂସ ପାଇଯିବ ?

ନା , ସେପରି ଘଟିବ ନାହିଁ ।

କାରଣ , ଆଲୋକ ଏବଂ ଶକ୍ତିର ଉତ୍ସ କେବଳ ଜାଳେଣି ନୁହେଁ । ସମସ୍ତ ଶକ୍ତିର ମୁଖ୍ୟ ଉତ୍ସ ହେଉଛି ସୂର୍ଯ୍ୟ । ଜାଳେଣି ସବୁ ଶେଷ ହୋଇ ଯିବା ପୂର୍ବରୁ ବିଜ୍ଞାନୀମାନେ ଜାଣି ଯାଇଥିବେ , ସୂର୍ଯ୍ୟାଲୋକ ଦ୍ୱାରା ରାସ୍ତା ଏବଂ ଘରକୁ କିପରି ଆଲୋକିତ କରିବାକୁ ହେବ , ରେଳଗାଡ଼ି ଏବଂ ଯନ୍ତ୍ରକୁ କିପରି ଚଳେଇବାକୁ ପଡ଼ିବ , ଏପରିକି ଆମ ଖାଦ୍ୟ କିପରି ରାନ୍ଧିବାକୁ ହେବ । ସୂର୍ଯ୍ୟ ଆଲୋକରୁ ଶକ୍ତି ଉତ୍ପାଦନକାରୀ ପ୍ରଥମ ପରୀକ୍ଷାମୂଳକ କେନ୍ଦ୍ର ଏବଂ ଚୁଲୀ ଏବେ ବି ଆବିଷ୍କୃତ ହୋଇ ଗଲଣି ।

କିନ୍ତୁ ଯେଉଁମାନେ ପୃଥିବୀ ଧ୍ୱଂସ ପାଇ ଯିବ ବୋଲି କହନ୍ତି , ସେ ସଙ୍ଗେ ସଙ୍ଗେ କହିବେ , "କିନ୍ତୁ , ସୂର୍ଯ୍ୟତ ଦିନେ ନା ଦିନେ ଥଣ୍ଡା ହୋଇଯିବ । ସେତ ନୂଆ ତାରକାମାନଙ୍କ ଭଳି ଏତେ ଉତପ୍ତ ଏବଂ ଉଜ୍ଜ୍ୱଳ ନୁହେଁ । କୋଟି କୋଟି ବର୍ଷ ପରେ ସୂର୍ଯ୍ୟର ଉତାପ କମି ଯିବ ଏବଂ ଫଳରେ ପୃଥିବୀ ଆହୁରି ଥଣ୍ଡା ପାଇଟି ଯିବ ।"

"ବିଶାଳ ବିଶାଳ ହିମବାହସବୁ ପୃଥିବୀ ପୃଷ୍ଠରୁ ଉସାଇ ନେବ ମଣିଷର ଦୁର୍ବଳ ଦେହ ସବୁକୁ । ଗ୍ରୀଷ୍ମମଣ୍ଡଳରେ ମେରୁ ଅଞ୍ଚଳର ଭାଲୁମାନେ ଘୂରି ବୁଲିବେ । ମଣିଷ ବଞ୍ଚି ପାରିବ ନାହିଁ ।"

ଏଥିରେ ସନ୍ଦେହ ନାହିଁ ଯେ , ନୂଆ ଏକ ତୁଷାର ଯୁଗର ଯଦି ସୂତ୍ରପାତ ହୁଏ , ତେବେ ଦୁଃଖକଷ୍ଟର ସୀମା ରହିବ ନାହିଁ । କିନ୍ତୁ ଆମ ପ୍ରାଗୈତିହାସିକ ମଣିଷ ତ ସେ

ଭୟଙ୍କର ବରଫ ମଧ୍ୟରେ ବଞ୍ଚି ପାରିଥିଲ : ଆମେ କାହିଁକି ଭାବିବା ଯେ, ଭବିଷ୍ୟତ୍ ମଣିଷ (ବିଜ୍ଞାନ ଯେତେବେଳେ ବର୍ତ୍ତମାନ ଅପେକ୍ଷା ଆହୁରି ଅନେକ ଆଗେଇ ଯାଇଥିବ) ତୁଷାର ଯୁଗରେ ଲୋପ ପାଇଯିବ ବୋଲି ।

ଆମେ ବରଂ ଭବିଷ୍ୟଦ୍‌ବାଣୀ କରି ପାରିବା ଯେ, ସେମାନେ କିପରି ସେ ପ୍ରବଳ ଶୀତକୁ ଜୟ କରିବେ । କ୍ଷୟମାଣ ସୂର୍ଯ୍ୟର ଶକ୍ତିକୁ ସେମାନେ ପରିପୂରଣ କରିବେ ପାରମାଣବିକ ଶକ୍ତି ବ୍ୟବହାର କରି ।

ବସ୍ତୁର ଅଣୁରାଶିରେ ଯେତେ ପାରମାଣବିକ ଶକ୍ତି ଅଛି, ତା'ର କେବେ ଶେଷ ହେବ ନାହିଁ । ଏକମାତ୍ର ସମସ୍ୟା ହେଉଛି ସେସବୁକୁ ନିରାପଦରେ କେମିତି ସୃଷ୍ଟି କରିବାକୁ ହେବ ।

ସେସବୁ କଥା ଭବିଷ୍ୟତ୍ ଉପରେ ଛାଡ଼ି ଦେବା ଦରକାର । ଆମେ ଆମର ସେହି ସୁଦୂର ଅତୀତ ଏବଂ ପ୍ରାଗୈତିହାସିକ ମଣିଷ ପାଖକୁ ଫେରି ଯିବା ।

## ପୃଥିବୀର ଉପଶି ।

ମଣିଷକୁ ଜଙ୍ଗଲ ସହିତ ଯେଉଁ ଶୃଙ୍ଖଳ ବାନ୍ଧି ରଖିଥିଲା ମଣିଷ ଯଦି ତାକୁ ଭାଙ୍ଗି ନଥାନ୍ତା, ତେବେ ଜଙ୍ଗଲର ବିଲୋପ ସଙ୍ଗେ ସଙ୍ଗେ ତା'ର ବି ବିଲୋପ ଘଟିଥାନ୍ତା ।

କିନ୍ତୁ ପୃଥିବୀର ବିଲୋପ ଘଟୁ ନଥିଲା, କେବଳ ତା'ର ପରିବର୍ତ୍ତନ ହେଉଥିଲା । ପୁରୁଣା ପୃଥିବୀ ଶେଷ ହେଉଥିଲା ଏବଂ ନୂଆ ଏକ ପୃଥିବୀ ଆରମ୍ଭ ହେଉଥିଲା ।

ଏହି ନୂଆ ଏବଂ ପରିବର୍ତ୍ତିତ ପୃଥିବୀରେ ବଞ୍ଚିବା ପାଇଁ ମଣିଷ ନିଜର ମଧ୍ୟ ପରିବର୍ତ୍ତନ ଘଟାଉଥିଲା । ସେ ଯେଉଁ ଖାଦ୍ୟ ଖାଉଥିଲା ସେସବୁ ଆଉ ମିଳିଲା ନାହିଁ, ତେଣୁ ନୂଆ ଖାଦ୍ୟ କେମିତି ପାଇବାକୁ ହେବ, ସେ କଥା ତାକୁ ଶିଖିବାକୁ ହେଲା । ପାଇନ୍ ଏବଂ ଫାର ଗଛ ମଞ୍ଜିସବୁ ଥିଲା ତା ଦାନ୍ତ ପାଇଁ ଖୁବ୍ କଠିନ, ସେସବୁ ଦକ୍ଷିଣର ସେହିସବୁ ରସାଳ ଏବଂ କଅଁଳିଆ ଫଳ ପରି ତାକୁ ଲାଗିଲା ନାହିଁ ।

ଉଷ୍ଣମ ଦିନ ସବୁ କ୍ରମଶଃ ଶୀତଳ ହୋଇ ଆସିଲା । ମନେ ହେଲା, ସୂର୍ଯ୍ୟ ଯେମିତି ପୃଥିବୀକୁ ପାସୋରି ପକାଇଲଣି । ମଣିଷକୁ ଏଥର ଉଜ୍ଜ୍ୱଳ ଉଷ୍ମ ସୂର୍ଯ୍ୟକିରଣ ବିନା ବଞ୍ଚିବାକୁ ହେବ ।

ତେଣୁ ସେମାନଙ୍କୁ ଯେତେ ଶୀଘ୍ର ସମ୍ଭବ ନିଜକୁ ବଦଳେଇବାକୁ ହେବ !

ସମସ୍ତ ଜୀବନ୍ତ ପ୍ରାଣୀମାନଙ୍କ ମଧ୍ୟରେ ପ୍ରାଗୈତିହାସିକ ମଣିଷ ହିଁ କେବଳ ଶୀଘ୍ର ନିଜକୁ ପରିବର୍ତ୍ତନ କରି ପାରୁ ଥିଲା ।

ସେ ସେତେବେଳେ ନିଜକୁ ଏତେ ପରିବର୍ତ୍ତନ କରି ଶିଖିଥିଲା ଯେ, ଅନ୍ୟ ପଶୁମାନେ ସେଭଳି କେବେ କରି ପାରି ନଥିଲେ ।

ମଣିଷର ସବୁଠାରୁ ବଡ଼ ଶତ୍ରୁ ଖଣ୍ଡାଦାନ୍ତିଆ ବାଘ ହଠାତ୍ ନିଜ ଦେହରେ ଲୋମଶ ଚମଡ଼ା ସୃଷ୍ଟି କରି ପାରି ନଥିଲା, ମଣିଷ କିନ୍ତୁ କରି ପାରିଲା । ସେ କଥାଟି କରିବା ପାଇଁ ତାକୁ ଦରକାର ପଡ଼ୁଥିଲା ଗୋଟାଏ ଭାଲୁ ଶିକାର କରି ତା ଚମଡ଼ାକୁ ଛାଲିବା ।

ଖଣ୍ଡାଦାନ୍ତିଆ ବାଘ ନିଆଁ ସୃଷ୍ଟି କରି ପାରି ନଥିଲା, ମଣିଷ ସେ କଥା ପାରି ଥିଲା ଏବଂ ତାକୁ ବ୍ୟବହାର ବି କରୁଥିଲା ।

ନିଜକୁ ଏବଂ ପ୍ରକୃତିକୁ ବଦଳାଇବା ଦିଗରେ ପ୍ରାଗୈତିହାସିକ ମଣିଷ ସେତେବେଳକୁ ଆଗେଇ ଯାଇଥିଲା ଅନେକ ।

ତା'ପରେ ଅନେକ ବର୍ଷ ବିତି ଗଲାଣି । ଆମ ପକ୍ଷରେ ଏବେ ବି ଜାଣିବାର ଅଛି ସେ ପ୍ରାଗୈତିହାସିକ ମଣିଷ ପ୍ରକୃତି ଏବଂ ନିଜକୁ କେତେ ବଦଳାଇ ଥିଲା ।

## ପଥର ପୁସ୍ତକ ।

ଆମ ପାଦ ତଳେ ପୃଥିବୀ ଏକ ବିରାଟ ପୁସ୍ତକ ଭଳି ପଡ଼ି ରହିଛି ।

ପୃଥିବୀ ପୃଷ୍ଠର ପ୍ରତିଟି ସ୍ତର ଯେମିତି ସେ ବହିର ଗୋଟିଏ ଗୋଟିଏ ପୃଷ୍ଠା ।

ଆମେ ସେଇ ବହିର ଶେଷ ଏବଂ ସବା ଉପର ପୃଷ୍ଠାଗୁଡ଼ିକରେ ଅଛେ । ପ୍ରଥମ ପୃଷ୍ଠାଗୁଡ଼ିକ ଅଛି ମହାସାଗର ତଳେ ଏବଂ ମହାଦେଶଗୁଡ଼ିକର ଭିତିର ନିମ୍ନ ଦେଶରେ ।

ଆଧୁନିକ ମଣିଷ ସେ ପୁସ୍ତକର ପ୍ରଥମ ଅଧ୍ୟାୟ ଏବଂ ତା'ର ପୃଷ୍ଠାଗୁଡ଼ିକରେ ଏ ପର୍ଯ୍ୟନ୍ତ ପହଞ୍ଚି ପାରିନି । ଏ ପର୍ଯ୍ୟନ୍ତ ଆମେ କେବଳ ଅନୁମାନ କରୁଛେ, ସେଥିରେ କ'ଣ ଲେଖା ହୋଇଥିବ ।

ପୁସ୍ତକଟିର ଯେଉଁ ପୃଷ୍ଠାସବୁ ଅଧିକ ଉପରକୁ ରହିଛି, ଆମ ପକ୍ଷରେ ସେସବୁ ପଢ଼ିବା ସେତେ ସହଜ ହେଉଛି ।

କେତେକ ପୃଷ୍ଠା ଗଳିତ ଲାଭାର ସ୍ରୋତରେ ପୋଡ଼ି ବିକୃତ ହୋଇ ଯାଇଛି । ସେସବୁଥିରୁ ଆମେ ଜାଣି ପାରୁଛେ ପୃଥିବୀ ପୃଷ୍ଠରେ ପର୍ବତ ଶ୍ରେଣୀସବୁ କିପରି ମୁଣ୍ଡଟେକି ଉଠିଥିଲା । ଆଉ କେତେକ ପୃଷ୍ଠାରୁ ଆମେ ଜାଣି ପାରେ ପୃଥିବୀ ପୃଷ୍ଠ

କେମିତି ଉଚ୍ଚା ନୀଚ୍ଚା ହୋଇଛି, ମହା ସମୁଦ୍ର ସବୁ କିପରି ଦୂରକୁ ଠେଲି ହୋଇ ଯାଇ ପୁଣି ପାଖକୁ ପଶି ଆସିଛନ୍ତି ।

ଆଉ କେତେକ ସ୍ତର ସମୁଦ୍ରର ଶାମୁକା ଭଳି ଦେଖିବାକୁ ଧଳା । ପ୍ରକୃତରେ ସେସବୁ ତିଆରି ହୋଇଛି ଶାମୁକାର ଖୋଳପାରେ । ଏହା ଛଡ଼ା ଆଉ କେତେକ ପୃଷ୍ଠା ଦେଖିବାକୁ କୋଇଲା ଭଳି କଳା ।

ସତରେ ସେସବୁ କୋଇଲାରେ ତିଆରି । ଏହି ଘନ କୋଇଲା ସ୍ତର ଦେଖି ଆମେ ଜାଣି ପାରେ, ପୃଥିବୀ ପୃଷ୍ଠରେ ଏକଦା ବିଶାଳ ବିଶାଳ ଜଙ୍ଗଲସବୁ ସୃଷ୍ଟି ହୋଇଥିଲା ।

ସେଇସବୁ ପୃଷ୍ଠାରେ ଚିତ୍ରପଟ ପରି ଏଠି ସେଠି ଦେଖିବାକୁ ମିଳେ ପତ୍ର ଆଉ ପଶୁପକ୍ଷୀଙ୍କର ଛବି । ଏକ ସମୟରେ ସେମାନେ ଏହିସବୁ ଜଙ୍ଗଲରେ ରହୁଥିଲେ, ପରେ ସେ ଜଙ୍ଗଲ ସମେତ କୋଇଲା ପାଲଟି ଯାଇଛନ୍ତି ।

ଏହି ଭାବେ ପୃଷ୍ଠା ପରେ ପୃଷ୍ଠା ଲେଉଟାଇ ଆମେ ପୃଥିବୀର ଇତିହାସ ଜାଣି ପାରୁ । ପୁସ୍ତକଟିର ସବା ଉପରେ ଥିବା ଶେଷ ପୃଷ୍ଠାରେ ଲେଖା ହୋଇଛି ନୂଆ ଏକ ନାୟକ, ମଣିଷର କଥା । ତୁମେ ହୁଏତ ଭାବୁଥିବ ପ୍ରଥମେ ସେ ଏହି ପୁସ୍ତକର ନାୟକ ନଥିଲା । କାରଣ ବିଶାଳକାୟ ପ୍ରାଗୈତିହାସିକ ହାତୀ ବା ଗଣ୍ଡାମାନଙ୍କ ତୁଳନାରେ ସେ ଥିଲା ଅତି କ୍ଷୁଦ୍ରକାୟ । କିନ୍ତୁ ବହିଟିର ପୃଷ୍ଠାଗୁଡ଼ିକୁ ଯେତେ ଥର ପଢ଼ିବା, ସେତେ ଥର ଦେଖିବାକୁ ପାଇବା ଆମ ନାୟକ କିପରି ସାହସ ସଂଗ୍ରହ କରି ପ୍ରଥମ ସ୍ଥାନକୁ ଆଗେଇ ଆସିଛି ।

କ୍ରମଶଃ ଏଭଳି ଏକ ସମୟ ଆସିଗଲା, ଯେତେବେଳେ ମଣିଷ ସେ ବିଶାଳ ପୁସ୍ତକର କେବଳ ମୁଖ୍ୟ ଚରିତ୍ର ହେଲା ନାହିଁ, ତା'ର ଲେଖକ ବି ପାଲଟି ଗଲା ।

ନଦୀ ସ୍ରୋତର ଛକମାନଙ୍କରେ, ତୁଷାର ଯୁଗର ଜିନିଷ ସାଙ୍ଗକୁ ପରିଷ୍କାର ଭାବେ ଚିହ୍ନିତ କଳା କଳା ରେଖାଗୁଡ଼ିଏ ଦେଖିବାକୁ ମିଳେ ।

ଏହିସବୁ କଳା ରେଖା ହେଉଛି କୋଇଲା ସବୁ । ବାଲି ଆଉ କାଦୁଅ ମଧ୍ୟକୁ ହଠାତ୍ କୋଇଲା କୁଆଡୁ ପଶି ଆସିଲା ? ସମ୍ଭବତଃ, ଜଙ୍ଗଲରେ ନିଆଁ ଲଗି କି ଏଭଳି ହୋଇଛି ?

କିନ୍ତୁ ଜଙ୍ଗଲରେ ନିଆଁ ଲଗିଲେ ତ ବିରାଟ ପୋଡ଼ା ଜଙ୍ଗଲ ପଡ଼ି ରହିଥାନ୍ତା, କିନ୍ତୁ ଏହି କୋଇଲାସବୁ ମଝାଏ ମଝାଏ ଜାଗାରେ ଜମି ରହିଲା କିପରି । ହୁଏତ ଡାଳପତ୍ର ଏକାଠି କରି ସେଥିରେ ନିଆଁ ଲଗାଇ ଦିଆ ଯାଇଥିଲା କେବେ ।

ତମେ ଜାଣିଛ ନିଆଁ ଆଉ କିଏ ଜଳେଇ ପାରେ—ନିଶ୍ଚୟ ମଣିଷ ।

ଏହି ନିଆଁ ପାଖକୁ ଲାଗି ଆମେ ଦେଖିବାକୁ ପାଏ ମଣିଷ ହାତରେ ତିଆରି ଆଉ

କେତେକ ଜିନିଷ – ଦିଇଧାରିଆ ପଥର ଏବଂ ଶିକାର କରାଯାଇଥିବା ପଶୁର ହାଡ଼ ଗୋଡ଼ ।

ନିଆଁ ଏବଂ ଶିକାର ସାହାଯ୍ୟରେ ପ୍ରାଗୈତିହାସିକ ମଣିଷ ନିଜକୁ ରକ୍ଷା କରି ପାରିଥିଲା ତୁଷାର ଯୁଗରେ ।

## ମଣିଷ ଜଙ୍ଗଲ ଛାଡ଼ି ଦେଲା ।

ଉତ୍ତରାଞ୍ଚଳର ଜଙ୍ଗଲମାନଙ୍କରେ ପ୍ରାଗୈତିହାସିକ ମଣିଷ ପାଇଁ ଖାଦ୍ୟ ପ୍ରାୟ ମିଳିଲା ନାହିଁ । ତେଣୁ ସେ ବଣ ଜଙ୍ଗଲରେ ବୁଲିବାକୁ ଲାଗିଲା ଶିକାର ପାଇଁ । ତମେ ଜାଣିଥିବ ଶିକାର ତ ଶିକାରୀ ପାଇଁ ଗୋଟାଏ ଜାଗାରେ ଅପେକ୍ଷା କରି ବସି ରହେନା । ଶିକାରୀ ଦେଖିଲେ ସେ ଦୌଡ଼ିକି ପଳାଏ , ଲୁଚି ଯାଏ ବା ବଞ୍ଚିବା ପାଇଁ ଲଢ଼େଇ ବି କରେ ।

ଉଷ୍ଣ ଦେଶମାନଙ୍କରେ ମଧ୍ୟ ସେତେବେଳେ ମଣିଷ ତା'ର ଖାଦ୍ୟ ତାଲିକାରେ ମାଂସ ଯୋଗ କରି ସାରିଥିଲା ।

ଖାଦ୍ୟ ହିସାବରେ ମାଂସ ହେଉଛି ଅଧିକ ତୃପ୍ତିକର । ସେଥିରୁ ଦେହ ପାଇଁ ଶକ୍ତି ମିଳିଥାଏ ଏବଂ ସମୟ ବି ବଞ୍ଚେ । ତା'ଛଡ଼ା ମଣିଷର କ୍ରମବର୍ଦ୍ଧମାନ ମସ୍ତିଷ ପାଇଁ ଦରକାର ହେଉଥିଲା ଅଧିକ ପୁଷ୍ଟିକର ଖାଦ୍ୟ ।

ମଣିଷର ଅସ୍ତ୍ରଶସ୍ତ୍ର ଯେତେ ଅଧିକ ଉନ୍ନତ ହେଲା ଶିକାର କରିବାଟା ତା ପକ୍ଷରେ ସେତେ ଅଧିକ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଲା ।

ଉତ୍ତରାଞ୍ଚଳରେ ଶିକାର ବିନା ବଞ୍ଚିବା ମଧ୍ୟ ତା ପକ୍ଷରେ ଅସମ୍ଭବ ଥିଲା ।

କ୍ରମଶଃ ସେ ମୂଷା ଭଳି ଛୋଟ ଛୋଟ ଜୀବଙ୍କ ମାଂସରେ ତା'ର କ୍ଷୁଧା ମେଣ୍ଟିଲା ନାହିଁ । ସେ ଖୋଜିଲା ବଡ଼ ବଡ଼ ଶିକାର । କିନ୍ତୁ ଗହୀରିଆ ବରଫର ଗାଡ଼ , ବରଫ ଝଡ଼ ଏବଂ ତୁଷାର ପାତ ହେଉଥିବା ଉତ୍ତରାଞ୍ଚଳର ଜଙ୍ଗଲମାନଙ୍କରେ ଶିକାର କରିବା ପକ୍ଷରେ ଭୟଙ୍କର ଅସୁବିଧା ସୃଷ୍ଟିକଲା । ତେଣୁ ମଣିଷ ପକ୍ଷରେ କିଛି କିଛି ମାଂସ ସାଇତି ରଖିବାଟା ଆବଶ୍ୟକ ହୋଇ ପାଡ଼ିଲା ।

ପ୍ରାଗୈତିହାସିକ ମଣିଷ କେଉଁ କେଉଁ ଜନ୍ତୁ ଶିକାର କରୁଥିଲା ଜାଣିଛ ?

ସେତେବେଳେ ଜଙ୍ଗଲମାନଙ୍କରେ ବହୁତ ବଡ଼ ବଡ଼ ଜୀବଜନ୍ତୁ ବାସ କରୁଥିଲେ । ହରିଣମାନେ ଫାଙ୍କା ଘାସୁଆ ଜାଗାମାନଙ୍କରେ ଚରୁଥିଲେ । ବଣୁଆ ଘୁଷୁରିସବୁ ଜଙ୍ଗଲରେ ମାଟିକୁ ଖୋଳୁଥିଲେ । କିନ୍ତୁ ସେମାନଙ୍କ ଛଡ଼ା ସମତଳ ଅଞ୍ଚଳରେ ବାସ କରୁଥିଲେ ଅନେକ ପ୍ରକାରର ଜୀବଜନ୍ତୁ । ବଣୁଆ ଲୋମଶ ଘୋଡ଼ା ପଲସବୁ ବଡ଼

ବଡ଼ ତୃଣଭୂଇଁରେ ଚରୁଥିଲେ । ବଡ଼ ବଡ଼ ହାଙ୍କୁଡ଼ ଥିବା ବାଇସନ୍ ନାମକ ଏକ ପ୍ରକାର ବଣୁଆ ଷଣ୍ଢଙ୍କ ଗର୍ଜନରେ ଥରହର ହେଉଥିଲା ପୃଥିବୀ । ଲମ୍ବାଲମ୍ବା ଲୋମଯୁକ୍ତ ବିଶାଳକାୟ ମାମଥ୍ ସବୁ ପାହାଡ଼ ଭଳି ଘୂରି ବୁଲୁଥିଲେ ।

ଏହିସବୁ ଚଳମାନ ମାଂସ ପିଣ୍ଡସବୁକୁ ଦେଖି ସେମାନଙ୍କ ପଛରେ ଧାଇଁବାକୁ ମଣିଷ ଉଦ୍‌ଗ୍ରୀବ ହୋଇ ପଡ଼ିଲା ।

ଏବଂ ଏହିସବୁ ଶିକାର ପଛରେ ଗୋଡ଼େଇ ଗୋଡ଼େଇ ପ୍ରାଗୈତିହାସିକ ମଣିଷ ତା'ର ବାସସ୍ଥାନ—ଜଙ୍ଗଲର ବାହାରକୁ ଚାଲି ଆସିଲା ।

ତା'ପରେ ଛୋଟ ଛୋଟ ଦଳ ହୋଇ ମଣିଷମାନେ କ୍ରମଶଃ ସମତଳ ଅଞ୍ଚଳକୁ ଆସିବାକୁ ଲାଗିଲେ । ତା'ର ପ୍ରମାଣ ସ୍ୱରୂପ, ଜଙ୍ଗଲଠାରୁ ଅନେକ ଦୂରରେ ତାଳପତ୍ର ପୋଡ଼ା ଏବଂ ଶିକାର କରୁଥିବା ଜାଗାର ଚିହ୍ନସବୁ ଦେଖିବାକୁ ମିଳେ । ଏହିସବୁ ଜାଗାରେ ଫଳମୂଳ ସଂଗ୍ରହକାରୀ ମଣିଷ ଇତିପୂର୍ବରୁ କେବେ ବାସ କରୁ ନଥିଲା ।

## ଠିକ୍ ଭାବେ ପଢ଼ିବାକୁ ହେବ।

ଆଦିମ ମଣିଷର ବାସସ୍ଥଳୀ ନିକଟରେ ଶିକାରକରା ଜୀବମାନଙ୍କର ହାଡ଼ ଗୋଡ଼ ଦେଖିବାକୁ ମିଳେ । ସେସବୁ ମଧ୍ୟରେ ଅଛି ଘୋଡ଼ାମାନଙ୍କର ହଳଦିଆ ପଞ୍ଜରାହାଡ଼, ଷଣ୍ଢର ଶିଙ୍ଗଲଗା ଖପୁରି, ବଣୁଆ ଘୁଷୁରିର ବଙ୍କାବଙ୍କା ଦାନ୍ତ । ବେଳେ ବେଳେ କେତେକ ଜାଗାରେ ହାଡ଼ ଗୋଡ଼ ଗଦାସବୁ ଦେଖିବାକୁ ମିଳିଥାଏ । ତା ଅର୍ଥ ମଣିଷ ସେତେବେଳେ ଗୋଟାଏ ଗୋଟାଏ ଜାଗାରେ ଅନେକ ଦିନ ପର୍ଯ୍ୟନ୍ତ ରହୁଥିଲା ।

ବଣୁଆ ଷଣ୍ଢ, ବଣୁଆ ଘୁଷୁରି ଏବଂ ଘୋଡ଼ାମାନଙ୍କର ଅସ୍ଥି କଙ୍କାଳ ସାଙ୍ଗକୁ ବିଜ୍ଞାନୀମାନେ କେବେ କେବେ ମାମଥ୍ ବା ବିଶାଳକାୟ ହାତୀର ବିରାଟ ବିରାଟ ହାଡ଼ସବୁ ଆବିଷ୍କାର କରିଛନ୍ତି । ସେସବୁ ହାଡ଼ ମଧ୍ୟରେ ଅଛି ବିରାଟ ବିରାଟ ଖପୁରି, ଲମ୍ବା ବଙ୍କା ଦାନ୍ତ ଏବଂ ଦେହର ବିରାଟ ବିରାଟ ହାଡ଼ ଖଣ୍ଡ ସବୁ ।

ଟିକେ ଭାବି ଦେଖତ, ଏଭଳି ବିଶାଳକାୟ ଜନ୍ତୁକୁ ମାରିବା ପାଇଁ କେତେ ଶକ୍ତି ଆଉ ସାହସ ଦରକାର । ଖାଲି ମାରି ଦେଲେ ହେଲା ନାହିଁ । ତା'ର ଦେହକୁ ଖଣ୍ଡ ଖଣ୍ଡ କରି କାଟିବା ଏବଂ ମଣିଷ ବାସ କରୁଥିବା ଜାଗାକୁ ତାକୁ ଟାଣିଟାଣି ଆଣିବା ପାଇଁ ଆହୁରି ଅଧିକ ବଳ ଦରକାର । ଗୋଡ଼ଗୁଡ଼ାକ ତା'ର କେଇ ମହଣ

ଲେଖାଏଁ ଓଜନ, ଖପୁରିଗୁଡ଼ିକ ଏତେ ବଡ଼ ବଡ଼ ଯେ, ମଣିଷ ସେଥିରେ ପଶି ଯାଇ ପାରିବ ।

ଆଜିକାଲି ଖୁବ୍ ଶକ୍ତିଶାଳୀ ବନ୍ଧୁକରେ ହାତୀ ଶିକାର କରୁଥିବା ଶିକାରୀମାନଙ୍କ ପକ୍ଷରେ ସେସବୁ ମାମଥ୍‌କୁ ଶିକାର କରିବା ମଧ୍ୟ ସହଜ ନୁହେଁ । ଆମ ସେ ପ୍ରାଗୈତିହାସିକ ମଣିଷ ବନ୍ଧୁକ କ'ଣ ଜାଣି ନଥିଲା । ଅସ୍ତ୍ର ହିସାବରେ ତା ହାତରେ ଥିଲା ମୁନିଆ ପଥର ଛୁରି ବା ମୁନିଆ ପଥରର ବର୍ଚ୍ଛା କେଇଟା ।

ଏହି ଭାବେ ହଜାର ହଜାର ବର୍ଷ ବିତି ଗଲିବା ସଙ୍ଗେ ତା'ର ସେ ପଥରର ଧାରୁଆ ଅସ୍ତ୍ରସବୁ ବଦଳିବାକୁ ଲାଗିଲା, ଆହୁରି ତୀକ୍ଷ୍ଣ ଏବଂ ନାନା ଧରଣର ହେଲା । ଏହି ଭାବେ ଆଦିମ ମଣିଷ ପଥରରେ ମୁନିଆ ଛୁରି ଏବଂ ତୀର ତିଆରି କରିବାକୁ ମନ ବଳେଇଲା । ପ୍ରଥମେ ସେ ପଥରର ଉପର ଅଂଶଟାକୁ ବାଡ଼େଇଲା ଏବଂ ଆବୁଡ଼ା ଖାବୁଡ଼ା ଅଂଶଗୁଡ଼ାକୁ ସଫା କରି ଦେଇ ତାକୁ ଖଣ୍ଡ ଖଣ୍ଡ କରି ଦେଲା । ଶେଷରେ ସେ ଏହି ଖଣ୍ଡ ଖଣ୍ଡ ପଥରକୁ ବ୍ୟବହାର କଲା କାଟିବା ଯନ୍ତ୍ର ହିସାବରେ ।

ଏହି ଭଳି ବେଖାପ ଧାରୁଆ ପଥର ଖଣ୍ଡରେ ଛୁରି ତିଆରି କରିବା ପାଇଁ ଦରକାର ପଡ଼ିଥିଲା ଅନେକ ଦକ୍ଷତା । ତେଣୁ କରି ସେ ଅସ୍ତ୍ରସବୁକୁ ବ୍ୟବହାର କଲା ପରେ ଫିଙ୍ଗି ଦେଉ ନଥିଲା । ସେସବୁ ଥିଲା ତା ପକ୍ଷରେ ଖୁବ୍ ମୂଲ୍ୟବାନ ଏବଂ ଦରକାରୀ ହୋଇଗଲା ପରେ ତାକୁ ସେ ଯତ୍ନ ସହକାରେ ପୁଣି ପଜାଉଥିଲା । ଏହିସବୁ ଅସ୍ତ୍ରକୁ ସେ ସାଇତି ରଖୁଥିଲା, କାରଣ ତା'ର ଶ୍ରମ ଏବଂ ସମୟକୁ ସେ ସମ୍ମାନ ଦେଉଥିଲା ।

କିନ୍ତୁ ସେ ଯେତେ ଚେଷ୍ଟା କଲେ ମଧ୍ୟ, ତା'ର ସେ ଅସ୍ତ୍ରସବୁ ପଥର ହୋଇ ରହି ଯାଇଥିଲା । ମାମଥ୍ ଭଳି ବିଶାଳକାୟ ପଶୁ ଆଗରେ ସେସବୁ ସାମାନ୍ୟ ମୁନିଆ ପଥର ଥିଲା ନଗଣ୍ୟ । ମାମଥ୍ ଦେହର ଚମଡ଼ା ଥିଲା ମୋଟା ଏବଂ ସାଞ୍ଜୁଆଗାଡ଼ିର ଇସ୍‌ପାତ ଚଦର ପରି ।

ତା ସତ୍ତ୍ୱେ ସେ ଆଦିମ ମଣିଷ ମାମଥ୍‌କୁ ମାରି ଦେଉଥିଲା । ତା'ର ପ୍ରମାଣ ମିଳେ ମଣିଷ ରହୁଥିବା ସ୍ଥାନମାନଙ୍କରେ ଆବିଷ୍କୃତ ମାମଥ୍‌ର ଖପୁରି ଆଉ ଦାନ୍ତସବୁରୁ ।

ତମେ ଜାଣିଛ, ସେ ଆଦିମ ମଣିଷ ମାମଥ୍‌କୁ କେମିତି ଆକ୍ରମଣ କରୁଥିଲା ? ଯେଉଁମାନେ "ମଣିଷ" କହିଲେ "ଜନସାଧାରଣ" ବୋଲି ବୁଝନ୍ତି, ସେମାନେ ବୁଝି ପାରିବେ । ଜଣେ ମଣିଷ ସେସବୁ କରୁ ନଥିଲା । ଲୋକମାନେ ସେମାନଙ୍କ ମସ୍ତିଷ୍କ ଏବଂ ହାତକୁ ଏକାଠି ଲଗେଇ ଅସ୍ତ୍ର ତିଆରି କରିବା, ଶିକାର କରିବା, ନିଆଁ ଜାଳିବା, ଆଶ୍ରୟସ୍ଥଳ ନିର୍ମାଣ କରିବା ଏବଂ ଜମି ଚାଷ କରିବାକୁ ଶିଖିଥିଲେ । ଜଣେ ମଣିଷ

ଦ୍ୱାରା ନୁହଁ, ମଣିଷ ସମାଜ, ଲକ୍ଷ ଲକ୍ଷ ମଣିଷର ଶ୍ରମ ବଳରେ ସଂସ୍କୃତି ଏବଂ ବିଜ୍ଞାନ ସୃଷ୍ଟି କରିଛି ।

ଜଣ ଜଣ ହୋଇ ମଣିଷ ବଞ୍ଚିଥିଲେ ସେ ବଣୁଆ ପଶୁ ହୋଇ ଚିରଦିନ ରହି ଯାଇଥାନ୍ତା ।

ମଣିଷ ସମାଜରେ ଶ୍ରମ ହିଁ ପଶୁକୁ ମଣିଷରେ ପରିଣତ କରିଛି ।

ତୁମେ କେତେକ ବହି ପଢ଼ିବ, ଯେଉଁଥିରେ ଆଦିମ ଶିକାରୀ ମଣିଷକୁ ଏକ ରବିନ୍‌ସନ୍ କ୍ରୁଶୋ ହିସାବରେ ଚିତ୍ରଣ କରାଯାଇଛି, ଯିଏକି ଅଦମ୍ୟ ଉଦ୍ୟମ ବଳରେ ଶେଷକୁ ବିରାଟ ସାଫଲ୍ୟ ଅର୍ଜନ କରିଥିଲା ।

କିନ୍ତୁ ଆଦିମ ମଣିଷ ଯଦି ସତରେ ସେଉଳି ସନ୍ନ୍ୟାସୀ ଥିଲା ଏବଂ ପ୍ରଥମ ମଣିଷମାନେ ଯଦି ଦଳ ଦଳ ହୋଇ ବାସ ନକରି ପରିବାରରେ ବାସ କରୁଥିଲେ, ତେବେ ସେମାନେ କେବେ ଜନସାଧାରଣ ହୋଇ ନଥାନ୍ତେ କି ମାନବ ସଂସ୍କୃତି ସୃଷ୍ଟି କରି ନଥାନ୍ତେ ।

ଡାନିଏଲ ଡେଫୋ ଯେଉଳି ଭାବେ ରବିନ୍‌ସନ୍ କ୍ରୁଶୋଙ୍କୁ ଚିତ୍ରଣ କରିଛନ୍ତି, ପ୍ରକୃତରେ ତାଙ୍କର ଅଦୃଷ୍ଟ ସେପରି ନଥିଲା । ଡେଫୋ ତାଙ୍କ ବହିଟିକୁ ଏକ ନାବିକର ଜୀବନକୁ ଭିତ୍ତି କରି ରଚନା କରିଥିଲେ । ସେ ନାବିକଟି ଜାହାଜରେ ଏକ ବିଦ୍ରୋହ ସଂଗଠିତ କରିଥିଲା । ଏହି ବିଦ୍ରୋହୀ ନାବିକକୁ ସମୁଦ୍ର ମଧ୍ୟରେ ଏକ କ୍ଷୁଦ୍ର ନିର୍ଜନ ଦ୍ୱୀପରେ ଛାଡ଼ି ଦିଆ ଯାଇଥିଲା ମାରି ଦେବା ଉଦ୍ଦେଶ୍ୟରେ । ଏହି ଘଟଣାର ଅନେକ ବର୍ଷ ପରେ ସମୁଦ୍ରଯାତ୍ରୀ ଏହି ଦ୍ୱୀପଟିରେ ପହଞ୍ଚି ସେ ବଣ୍ୟ ମଣିଷଟିକୁ ଦେଖିବାକୁ ପାଇଲେ । ସେତେବେଳକୁ ସେ ବୁଢ଼ା ହୋଇ ଯାଇଥିଲା ଏବଂ କଥା କହିବାକୁ ଭୁଲି ଯାଇଥିଲା । ମଣିଷ ଭଳି ଦେଖା ନଯାଇ ସେ ଦେଖା ଯାଉଥିଲା ଏକ ବଣୁଆ ପଶୁ ପରି ।

ତେଣୁ ଆଧୁନିକ ମଣିଷ ପକ୍ଷରେ ମଣିଷ ସମାଜ ବାହାରେ ମଣିଷ ହୋଇ ବଞ୍ଚିବା ଯଦି ସହଜ ନହୁଏ, ତେବେ ପ୍ରାଗୈତିହାସିକ ଲୋକଙ୍କ ଅବସ୍ଥା କ'ଣ ହୋଇଥାନ୍ତା ?

ସେମାନେ ମଣିଷରେ ପରିଣତ ହେବା ପଛରେ ଏକମାତ୍ର କାରଣ ହେଉଛି ସେମାନେ ଏକତ୍ର ବାସ କରୁଥିଲେ, ଏକାଠି ଶିକାର କରୁଥିଲେ ଏବଂ ଏକାଠି ସେମାନଙ୍କ ଅସ୍ତ୍ର ତିଆରି କରୁଥିଲେ ।

ମାମଥକୁ ମାରିଲା ବେଳେ ସମଗ୍ର ମଣିଷ ଦଳଟି ଏକସଙ୍ଗରେ ଆଘାତ କରୁଥିଲେ । ଗୋଟିଏ ତୀର ସେ ଲୋମଶ ମୋଟା ଚମଡ଼ାରେ ବିଦ୍ଧ ନହୋଇ କୋଟି କୋଟି ତୀର ଏକାବେଳକେ ବିଦ୍ଧ ହେଉଥିଲା । ବହୁ ପାଦ ଏବଂ ବହୁ ହାତ ବିଶିଷ୍ଟ

ଏକ ବିରାଟ ପଶୁ ପରି ସମଗ୍ର ମଣିଷ ଦଳଟି ତା ପଛରେ ଖେଦି ଯାଉଥିଲେ । କେବଳ କୋଟି କୋଟି ହାତ ନୁହଁ, କୋଟି କୋଟି ମୁଣ୍ଡ ମଧ୍ୟ ଏକାଠି କାର୍ଯ୍ୟ କରୁଥିଲା ।

ମାମଥ୍ ମଣିଷଠାରୁ ଅନେକ ବଡ଼ ଏବଂ ବହୁ ଶକ୍ତିଶାଳୀ ହୋଇଥିଲେ ବି ମଣିଷ ଥିଲା ତାଠାରୁ ଅଧିକ ବୁଦ୍ଧିମାନ ।

ମାମଥ୍‌ର ଏତେ ଶକ୍ତି ଥିଲା ଯେ, ସେ ଅନାୟସରେ ମଣିଷକୁ ଗୋଡ଼ରେ ଦଳି ମାରି ଦେଇ ପାରିଥାନ୍ତା । କିନ୍ତୁ ଆଦିମ ମଣିଷ ମାମଥ୍‌ର ବିପୁଳ ଓଜନକୁ ତା ବିରୁଦ୍ଧରେ ବ୍ୟବହାର କଲା ଏବଂ ଯା'ର ଗ୍ଧଲିରେ ମାଟି କଂପି ଉଠୁଥିଲା, ତାକୁ ଜୟ କରି ନେଲା ।

ମାମଥ୍‌କୁ ଶିକାରୀମାନେ ଘେରି ନେଲା ପରେ ଗ୍ଧରି ପାଖରେ ଥିବା ଶୁଖିଲା ବୁଦାରେ ନିଆଁ ଲଗାଇ ଦେଉଥିଲେ । ନିଆଁ ଶିଖା ଦେଖି ସେ ଡରି ଯାଉଥିଲା, କାଳେ ତା'ର ସେ ଲୋମଶ ଚମଡ଼ାରେ ନିଆଁ ଲଗି ଜଳି ଯିବ । ତେଣୁ ସେ ଛାଟି ପିଟି ହୋଇ ଦୌଡ଼ି ପଳାଉଥିଲା । ଲୋକେ ନିଆଁ ହୁଳା ଧରି ତା ପଛେ ପଛେ ଧାଉଁଥିଲେ । ଜନ୍ତୁଟା ବି ନିଆଁ ଭୟରେ କାଦୁଅପୂର୍ଣ୍ଣ ଜଳାଭୂଇଁକୁ ପଶିଯାଉଥିଲା । ଶିକାରୀମାନଙ୍କର ଚତୁରତାପୂର୍ଣ୍ଣ କୌଶଳଟିର ଉଦ୍ଦେଶ୍ୟ ତାହାହିଁ ଥିଲା । ତା'ର ବିରାଟ ଦେହଟା ସେ କାଦୁଅ ପଙ୍କ ଭିତରେ ଦବି ଯାଉଥିଲା, ଯେମିତି ବହୁମହଣ ଓଜନର ପଥରଟାଏ ଦବି ଯାଏ । ତା'ର ଗୋଟିଏ ଗୋଡ଼ ଉପରକୁ ଉଠେଇଲା ବେଳକୁ ଆଉ ଗୋଟିଏ ପାଦ ପଙ୍କ ମଧ୍ୟକୁ ଗଳି ଯାଏ । ବାଇବିଳା ହୋଇ ଜନ୍ତୁଟା ଚିତ୍କାର ଛାଡ଼େ । ଏହା ଦ୍ୱାରା ତା'ର କିଛି ଲାଭ ହୁଏ ନା, ବରଂ ସେ ଆହୁରି ତଳକୁ ଗଳି ପଡ଼େ ।

ତା'ର ଏହି ଭଳି ଦଶା ବେଳେ ଶିକାରୀମାନେ ତାକୁ ମାରିବା ପାଇଁ ପାଖେଇ ଆସନ୍ତି ।

ମାମଥ୍‌କୁ ଯନ୍ତାରେ ପକାଇ ମାରିବାଟା ସହଜ ନୁହେଁ । କିନ୍ତୁ ତାକୁ ଟାଣି ଟାଣିକି ସେମାନଙ୍କ ବାସସ୍ଥାନକୁ ଆଣିବାଟା ଆହୁରି କଷ୍ଟକର । ଲୋକେ ସେତେବେଳେ ନଈ କୂଳରେ ଶୁଖିଲା ଉଚ୍ଚା ଜାଗାରେ ବାସ କରୁଥିଲେ । ନଦୀ ସେମାନଙ୍କୁ ପାନୀୟ ଜଳ ଯୋଗାଉଥିଲା, ତା'ର ଅଗଭୀର ଶଯ୍ୟା ଏବଂ ତଟ ଦେଶରୁ ସେମାନେ ସଂଗ୍ରହ କରୁଥିଲେ ମୁନିଆ ପଥରସବୁ । ସେଇସବୁ ପଥରରୁ ସେମାନେ ତିଆରି କରୁଥିଲେ ସେମାନଙ୍କର ମୁଖ୍ୟ ଅସ୍ତ୍ରଶସ୍ତ୍ର ।

ଏଥର ସେମାନଙ୍କୁ ସେ ମାମଥ୍‌କୁ ଜଳାଭୂଇଁ ମଧ୍ୟରୁ ତାଲୁ ନଈ କୂଳକୁ ଟାଣି ଟାଣି ଆଣିବାକୁ ପଡ଼ିବ ।

ଏକାମଟା ଜଣେ ଦୁଇ ଜଣଙ୍କ ଦ୍ୱାରା ସମ୍ଭବ ନୁହେଁ, ତେଣୁ ପୁଣି କୋଟି କୋଟି ହାତକୁ ଏକାଠି ହେବାକୁ ପଡ଼େ । ଲୋକେ ସେମାନଙ୍କର ସେଇ ଧାରୁଆ ପଥର ଖଣ୍ଡରେ ତା'ର ଦେହକୁ ଖଣ୍ଡ ଖଣ୍ଡ କରି କାଟନ୍ତି – ତା ଚମଡ଼ାକୁ ଛାଇନ୍ତି, ଶକ୍ତ ଗ୍ରନ୍ଥୀ ଏବଂ ବିରାଟ ବିରାଟ ମାଂସପେଶୀକୁ କାଟନ୍ତି । ବୟସ ଏବଂ ଅଧିକ ଅଭିଜ୍ଞ ଶିକାରୀମାନେ କମ୍ ବୟସର ଶିକାରୀମାନଙ୍କୁ ବତାଇ ଦିଅନ୍ତି, କେଉଁ ଜାଗାରେ କାଟିଲେ ଖପୁରି ଏବଂ ଗୋଡ଼ଗୁଡ଼ାକୁ ଦେହଠାରୁ ଅଲଗା କରି ଦେଇ ହେବ । ଶେଷରେ ଦେହଟାକୁ ଖଣ୍ଡ ଖଣ୍ଡ କରି କାଟି ପକାଇଲା ପରେ ସେମାନେ ପାହାଡ଼ ଉପରକୁ ଯାତ୍ରା କରନ୍ତି ।

କାମଟାକୁ ଆହୁରି ଚଞ୍ଚଳ କରିବା ପାଇଁ ସେମାନେ ଏକାଠି ଉଲ୍ଲାସରେ ଚିତ୍କାର ଛାଡ଼ୁଥିଲେ । ତା'ପରେ ବଡ଼ ବଡ଼ ଦଳ ହୋଇ ମାମଥ୍‌ର ଗୋଟାଏ ଗୋଟାଏ ବିରାଟ ଗୋଡ଼ ବିରାଟ ଖୁଣ୍ଟ ଲାଗିଥିବା ମୁଣ୍ଡକୁ ମାଟିରେ ଘୋଷାରି ଘୋଷାରି ଘରକୁ ଫେରୁଥିଲେ ।

ଘରେ ପହଞ୍ଚିଲା ବେଳକୁ ସେମାନେ ସମସ୍ତେ ଧଇଁସଇଁ ହୋଇ ପଡ଼ିଥାନ୍ତି । କିନ୍ତୁ ସେମାନଙ୍କ ଆନନ୍ଦ ଦେଖେ କିଏ ! କାରଣ ମାମଥ୍ ବୋଇଲେ ସେମାନେ ଭାବୁଥିଲେ ସତରେ ଗୋଟାଏ ଭୋଜି । ସେ ଭଳି ଏକ ଭୋଜି ପାଇଁ ସେମାନେ ଯେମିତି କେବେଠୁଁ ଅପେକ୍ଷା କରି ରହିଛନ୍ତି । ତା ଛଡ଼ା ମାମଥ୍‌ମାନେ ହେଉଛି ଅନେକ ଦିନ ପାଇଁ ଗଚ୍ଛିତ ଖାଦ୍ୟ ।

## ପ୍ରତିଦ୍ୱନ୍ଦ୍ୱିତାର ଅବସାନ ।

ଅନ୍ୟାନ୍ୟ ପ୍ରାଣୀମାନଙ୍କ ସହିତ ମଣିଷର ଲାଗିଥିବା ପ୍ରତିଦ୍ୱନ୍ଦ୍ୱିତା ଏଥର ଶେଷ ହେଲା : ସିଏହିଁ ଯାଇ ପ୍ରଥମେ ପହଞ୍ଚି ଗଲା ଶେଷ ବିନ୍ଦୁରେ – ପ୍ରାଣୀମାନଙ୍କ ମଧ୍ୟରେ ସର୍ବବୃହତ୍ ପ୍ରାଣୀକୁ ସେ ଜୟ କରି ନେଲା ।

ପୃଥିବୀରେ ତା'ର ବଂଶ ବି ବଢ଼ିବାରେ ଲାଗିଲା । ପ୍ରତିଟି ଶତାବ୍ଦୀ ଏବଂ ସହସ୍ରାବ୍ଦ ବିତି ଚାଲିବା ସଙ୍ଗେ ସଙ୍ଗେ ସେମାନଙ୍କ ସଂଖ୍ୟା ବୃଦ୍ଧି ପାଇ ପୃଥିବୀ ସାରା ସେମାନେ ବ୍ୟାପି ଗଲେ ।

ପଶୁପକ୍ଷୀମାନେ କିନ୍ତୁ ମଣିଷ ପରି ବଢ଼ି ପାରିଲେ ନାହିଁ ।

ଦୃଷ୍ଟାନ୍ତ ସ୍ୱରୂପ, ଠେକୁଆମାନେ କ'ଣ ମଣିଷ ଭଳି ଏତେ ହୋଇ ପାରିଲେ ?

ନିଶ୍ଚିତ ଭାବେ ନୁହେଁ । କାରଣ ଠେକୁଆମାନଙ୍କ ସଂଖ୍ୟା ବଢ଼ିବା ସଙ୍ଗେ

ସଙ୍ଗେ ହେଟାଙ୍କ ସଂଖ୍ୟା ମଧ୍ୟ ବଢ଼ିଗଲା । ବେଶି ଠେକୁଆ ଯେପରି ନରହନ୍ତି ତା'ର ବ୍ୟବସ୍ଥା କରି ଦେଲେ ହେଟାମାନେ ।

ତେଣୁ ବଣ୍ୟ ଜୀବଜନ୍ତୁଙ୍କ ସଂଖ୍ୟା ଅସରନ୍ତି ଭାବେ ବଢ଼ି ପାରେ ନାହିଁ । ନିର୍ଦ୍ଦିଷ୍ଟ ଏକ ସୀମା ବାହାରକୁ ସଂଖ୍ୟାଟା ଟପି ଯିବାଟା ଖୁବ୍ କଷ୍ଟକର ।

ପ୍ରକୃତି ମଣିଷ ଏବଂ ଅନ୍ୟାନ୍ୟ ପ୍ରାଣୀମାନଙ୍କ ପାଇଁ ଯେଉଁସବୁ ସୀମା ସରହଦ ତିଆରି କରିଥିଲା ମଣିଷ ତାକୁ ଅନେକ ଦିନରୁ ଅତିକ୍ରମ କରି ଆସିଛି । ସେ ନୂଆ ନୂଆ ଅସ୍ତ୍ର ନିର୍ମାଣ କରିବା ସଙ୍ଗେ ସଙ୍ଗେ ନୂଆ ନୂଆ ଖାଦ୍ୟ ଖାଇବାକୁ ଲାଗିଲା, ଯାହାକୁ ସେ କେବେ ଖାଇ ନଥିଲା । ଏହି ଭାବେ ସେ ପ୍ରକୃତିକୁ ବାଧ୍ୟ କଲା ତା ପ୍ରତି ଆହୁରି ଦୟାଳୁ ହେବା ପାଇଁ । ଯେଉଁ ଅଞ୍ଚଳରେ ଗୋଟିଏ ମଣିଷ ଦଳ ଖାଦ୍ୟ ପାଇଁ ନିର୍ଭର କରୁଥିଲେ ଏବେ ଗୋଟିଏ, ଦୁଇଟି ବା ତିନୋଟି ଦଳ ସେଠି ଚଳି ପାରିଲେ ।

ତା'ପରେ ସେ ଯେତେବେଳେ ବଡ଼ ବଡ଼ ପଶୁ ଶିକାର କଲା, ତା'ର ସେ ସୀମା ପାଚିରୀକୁ ସେ ଆହୁରି ଦୂରକୁ ଘୁଞ୍ଚେଇ ଦେଲା ।

ଏଣିକି ମଣିଷକୁ ଦିନ ସାରା ଖାଦ୍ୟ ସଂଗ୍ରହ ଏବଂ ଖାଇବାରେ ବିତେଇବାକୁ ପଡ଼ିଲା ନାହିଁ । ତା ପାଇଁ ବାଇସନ୍, ଘୋଡ଼ା ଏବଂ ମାମଥ୍‌ମାନେ ଘାସ ଫଳ ଆଦି ଖାଇଲେ । ପଲ ପଲ ହୋଇ ଏହିସବୁ ଚତୁଷ୍ପଦ ପ୍ରାଣୀ ତୃଣଭୂମିରେ ବିଚରଣ କରି ପାହାଡ଼ ପ୍ରମାଣ ଘାସ ଖାଉଥିଲେ । ଦିନ ପରେ ଦିନ ସେସବୁକୁ ଖାଇ ସେମାନଙ୍କ ଓଜନ ବୃଦ୍ଧି କରୁଥିଲେ ଏବଂ ଫଳରେ ମହଣ ମହଣ ଓଜନର ଘାସ ସେର ସେର ମାଂସରେ ପରିଣତ ହେଲା । ମଣିଷ ଗୋଟାଏ ବାଇସନ୍ ବା ମାମଥ୍ ଶିକାର କରିବା ଦ୍ୱାରା ଏତେ ଶକ୍ତି ଗଚ୍ଛିତ କରି ପାରିଲା, ଯିଏକି ସୃଷ୍ଟି ହେବା ପାଇଁ ବର୍ଷ ପରେ ବର୍ଷ ଲାଗୁଥିଲା ।

ଖାଦ୍ୟ ମହଜୁଦ କରିବାଟା ତା ପକ୍ଷରେ ଖୁବ୍ ଆବଶ୍ୟକ ହୋଇ ଦେଖା ଦେଲା । କାରଣ ଝଡ଼, ବରଫ ଝଡ଼ କିମ୍ବା ପ୍ରବଳ ଶୀତ ପଡ଼ିଲେ ସେ ଶିକାର ପାଇଁ ବାହାରକୁ ବାହାରି ପାରୁ ନଥିଲା । ଶୀତ ଏବଂ ଗ୍ରୀଷ୍ମ କାଳର ସେହି ସବୁ ଉଷ୍ମ ଦିନ ଆଉ ଫେରିଲା ନାହିଁ ।

ଗୋଟାଏ ପରିବର୍ତ୍ତନ ପରେ ଆସିଲା ଆଉ ଗୋଟାଏ ପରିବର୍ତ୍ତନ ।

କିନ୍ତୁ ମଣିଷକୁ ତା'ର ମହଜୁଦ ଜିନିଷ ପାଖରେ ବସିକି ରହିବା ଅର୍ଥ ତା ପକ୍ଷରେ ସେଇ ଜାଗା ଛାଡ଼ି ଅନ୍ୟତ୍ର ଯିବା ସମ୍ଭବ ହେଉ ନଥିଲା । ତା ଅର୍ଥ ତା'ର ବାସସ୍ଥାନ ବଦଳେଇବା ଆହୁରି କଷ୍ଟକର ହେଲା । ତା'ଛଡ଼ା ମାମଥ୍ ଭଳି ଗୋଟାଏ ଜୀବର ମୃତ ଦେହକୁ ଧରି ସେତ ଯେଣେ ପାରି ତେଣେ ବୁଲି ପାରିବ ନାହିଁ ।

ଏହା ଛଡ଼ା ଆଉ କେତେକ କାରଣ ଥିଲା ତାର ସ୍ଥାୟୀ ଭାବେ ବାସ କରିବା ପଛରେ । ଅତୀତରେ ବନ୍ୟ ପ୍ରାଣୀମାନଙ୍କ କବଳରୁ ବଞ୍ଚିବା ପାଇଁ ପ୍ରତିଟି ରାତି ସେ କଟାଉଥିଲା ଗୋଟିଏ ଗୋଟିଏ ଗଛରେ । ବର୍ତ୍ତମାନ , କିନ୍ତୁ ସେ ସେସବୁ ପ୍ରାଣୀଙ୍କୁ ସେତେ ଭୟ କଲା ନାହିଁ । କିନ୍ତୁ ସେମାନଙ୍କ ସ୍ଥାନରେ ଦେଖା ଦେଇଥିଲା ତା'ର ଆଉ ଏକ ବଡ଼ ଶତ୍ରୁ—ସେ ହେଉଛି ପ୍ରବଳ ଶୀତ ।

ଶୀତ ଏବଂ ବରଫ ଝଡ଼ରୁ ନିଜକୁ ବଞ୍ଚାଇବା ପାଇଁ ମଣିଷ ଖୋଜିଲା ଏକ ନିର୍ଭର ଯୋଗ୍ୟ ଆଶ୍ରୟସ୍ଥଳୀ ।

## ମଣିଷ ତିଆରି କଲା ତା'ର ନିଜସ୍ୱ ଦୁନିଆ ।

ମଣିଷର ଚତୁଃପାର୍ଶ୍ୱରେ ଥିଲା ବିରାଟ ଶୀତଳ ଦୁନିଆ । ସମୟ ଆସିଲା , ସେତେବେଳେ ସେ ତା ମଧ୍ୟରେ ତିଆରି କରିବାକୁ ଆରମ୍ଭ କରି ଦେଲା ତା'ର କ୍ଷୁଦ୍ର ଉଷ୍ମତାପୂର୍ଣ୍ଣ ଦୁନିଆଟିକୁ । ପର୍ବତର ଗୁହା କିମ୍ବା ସୁଡ଼ଙ୍ଗର ପ୍ରବେଶପଥରେ ସେ ଜୀବଜନ୍ତୁଙ୍କର ଚମଡ଼ା କିମ୍ବା ତାଳପତ୍ର ଢାଙ୍କି ଦେଇ ବର୍ଷା , ବରଫ ଏବଂ ପବନରୁ ନିଜକୁ ରକ୍ଷା କଲା । ତା'ର ସେଇ କ୍ଷୁଦ୍ର ଦୁନିଆରେ ସେ ଏଭଳି ଏକ ସୂର୍ଯ୍ୟକୁ ଜାଳି ଦେଲା , ଯିଏକି ରାତିରେ ଆଲୋକ ଏବଂ ଶୀତରେ ଉଷ୍ମତା ପ୍ରଦାନ କଲା ।

ଆଦିମ ଶିକାରୀ ମଣିଷର ବସତି ନିକଟରେ ତମ୍ବୁଟଣା ଖୁଣ୍ଟ ପାଇଁ ଖୋଳା ହୋଇଥିବା ଗାତର ଚିହ୍ନ ମଧ୍ୟ ଏବେ ଦେଖିବାକୁ ମିଳେ । ଘରି ପାଖରେ ପୋତା ହୋଇଥିବା ଖୁଣ୍ଟସବୁ ମଧ୍ୟରେ ପୋଡ଼ା ପଥରସବୁ ବାହାରିଛି । ସେସବୁ ଥିଲା ତା'ର ଚୁଲୀ , ପ୍ରାଗୈତିହାସିକ ମଣିଷର କୃତ୍ରିମ ସୂର୍ଯ୍ୟ ।

ତା'ର ସେହି ତମ୍ବୁର କାଛସବୁ କେବେଠୁଁ ଧୂଳିରେ ପରିଣତ ହୋଇ ଯାଇଛି । କିନ୍ତୁ ସେସବୁ କେଉଁଠି ଥିଲା ସେ କଥା ଠିକ୍ ଭାବେ ଆମେ ଏବେ କହି ଦେଇ ପାରିବା । କେମିତି ଜାଣିବା କୁହତ ? ତା'ର ସେଇ କ୍ଷୁଦ୍ର ଦୁନିଆ ମଧ୍ୟରେ ଥିବା ପୂରା ଚଟାଣଟା ତାକୁ ତିଆରି କରିଥିବା ମଣିଷର କାହାଣୀ କହି ଦିଏ ।

ସେଠି ଆମେ ଦେଖିବାକୁ ପାଏ ପଥରର ଛୁରି , ମୁନିଆ ପଥର ଖଣ୍ଡ ଜୀବଜନ୍ତୁଙ୍କର ଫଟା ହାଡ଼ ଗୋଡ଼ , ଏବଂ ଚୁଲୀରେ ଥିବା ଦରପୋଡ଼ା କୋଇଲା ଏବଂ ପାଉଁଶ । ସେସବୁ ବାଲି ଏବଂ ମାଟିରେ ମିଶି ଏଭଳି ଏକ ମିଶ୍ରିତ ବସ୍ତୁରେ ପରିଣତ ହୋଇ ଯାଇଛି , ଯାହାକୁ ତୁମେ ପ୍ରକୃତିରେ ଅନ୍ୟତ୍ର ପାଇ ପାରିବ ନାହିଁ ।

ବହୁ ଯୁଗ ଧରି ସେସବୁ ତନ୍ନ ଆଉ ନାହିଁ । କିନ୍ତୁ ତା'ର ସେହି ଅଦୃଶ୍ୟ କାନ୍ଥଗୁଡ଼ିକର ବାହାରେ ମଣିଷର କ୍ରିୟାକଳାପ ସଂପର୍କରେ କୌଣସି ଚିହ୍ନବର୍ଣ୍ଣ ଦେଖିବାକୁ ମିଳେ ନାହିଁ । ସେଠି କୌଣସି ହତିଆର, ଦରପୋଡ଼ା କୋଇଲା କିମ୍ବା ଚୁଲୀର ପାଉଁଶ ବା ଜୀବଜନ୍ତୁଙ୍କର ଫଟା ହାଡ଼ ଗୋଡ଼ ପୋତି ହୋଇ କି ନାହିଁ ।

ତେଣୁ ମଣିଷ ଦ୍ୱାରା ସୃଷ୍ଟ ଏକ ଭିନ୍ନ ରକମର ପ୍ରକୃତି ତା ଚତୁର୍ପାର୍ଶ୍ୱରେ ସବୁ କିଛିଠାରୁ ଏକ ଅଦୃଶ୍ୟ ରେଖା ଦ୍ୱାରା ପୃଥକ୍ ହୋଇ ରହିଛି ।

କର୍ମରତ ମଣିଷ ହାତର ଚିହ୍ନ ପାଇବା ପାଇଁ ଆମେ ପୃଥିବୀକୁ ଖୋଳିଲା ବେଳେ ଏବଂ ପଥରର ଛୁରି, ଧାତୁଆ ପଥର ଖଣ୍ଡଗୁଡ଼ିକୁ ପରୀକ୍ଷା କଲାବେଳେ ଏବଂ ହଜାର ହଜାର ବର୍ଷ ଧରି ଜଳି ନଥିବା ଏବଂ ଶୀତଳ ପାଲଟି ଯାଇଥିବା ସେଇ ଚୁଲୀର ଦରଜଳା କାଠକୁ ଖେଳେଇ ଦେଖିଲା ବେଳେ ଆମେ ପରିଷ୍କାର ଭାବେ ଦେଖିବାକୁ ପାଉ, ମଣିଷର ପ୍ରଥମ ଦୁନିଆର ବିନାଶ ମାନେ, ମଣିଷ ଜାତିର ବିନାଶ ନୁହେଁ । କାରଣ ମଣିଷ ତା ପାଇଁ ଆଉ ଏକ ନୂଆ କ୍ଷୁଦ୍ର ଦୁନିଆ ତିଆରି କରି ପାରିଥିଲା ।

# ପଞ୍ଚମ ଅଧ୍ୟାୟ

## ଅତୀତ ମଧ୍ୟକୁ ପ୍ରଥମ ଯାତ୍ରା ।

ବାଇସନ୍ ଏବଂ ମାମଥ୍ ଶିକାର କରୁଥିବା ଆଦିମ ମଣିଷର ବାସସ୍ଥାନମାନଙ୍କରେ ଯେଉଁ ସବୁ ହତିଆର ମିଳିଛି, ସେସବୁ ମଧ୍ୟରେ ଦୁଇଟି ପଥରର ଅସ୍ତ୍ର ହେଉଛି ସାଧାରଣ । ଗୋଟିଏ ହେଉଛି ତ୍ରିଭୁଜାକାର ଏବଂ ଦୁଇଧାରୁଆ । ଆଉ ଗୋଟିଏ ହେଉଛି ଅର୍ଦ୍ଧବୃତ୍ତାକାର, ଗୋଟିଏ ପାଖକୁ ଧାରୁଆ ।

ଏହି ଦୁଇଟି ଅସ୍ତ୍ର ମଧ୍ୟରୁ ପ୍ରତ୍ୟେକଟି ନିର୍ମିତ ହୋଇଥିଲା ବିଶେଷ କାର୍ଯ୍ୟ ପାଇଁ । ତା ନହୋଇଥିଲେ ସେ ଦୁଇଟିର ଚେହେରା ଭିନ୍ନ ଭିନ୍ନ ହୋଇ ନଥାନ୍ତା ।

ତେବେ, ଆମେ ସେ ଦୁଇଟି କେଉଁ ଭିନ୍ନ ଭିନ୍ନ କାମ ପାଇଁ ତିଆରି ହୋଇଥିଲା କେମିତି ଜାଣିବା ?

ହଁ, ଜାଣି ପାରିବା । ସେ ଦୁଇଟିର ଆକାର ପ୍ରକାର ସେ ସଂପର୍କରେ ସୂଚନା ଦେଇଥାଏ ।

ତାହେଲେ, ଆମକୁ ଟିକିଏ ସେଇ ପଥର ଯୁଗକୁ ଫେରି ଯିବାକୁ ହେବ ଏବଂ ଦେଖିବାକୁ ହେବ, ସେ ପ୍ରାଗୈତିହାସିକ ମଣିଷ କିପରି ତା'ର ପଥର ହତିଆର ବ୍ୟବହାର କରୁଥିଲା ?

ଉପନ୍ୟାସ ପଢ଼ିଲା ବେଳେ ଅନେକ ସମୟରେ ତମେ ଗୋଟିଏ ବାକ୍ୟ ଦେଖିବାକୁ ପାଉଥିବ – "ଏଥର ଦଶ ବର୍ଷ ତଳକୁ ଫେରି ଯିବା ଚାଲ ।" ଏହା ଦ୍ୱାରା ସେ ଉପନ୍ୟାସ ଲେଖକଙ୍କ ପକ୍ଷରେ ସୁବିଧା ହୋଇଥାଏ ଯେତେବେଳେ ପାରି ସେତେବେଳେ ଏବଂ ଯେଉଁଠିକି ପାରି ସେଠିକୁ ଚାଲି ଯିବା ପାଇଁ । ଏହା ଫଳରେ ସେ ତାଙ୍କ ଚରିତ୍ରଗୁଡ଼ିକ ସଂପର୍କରେ ଅଦ୍ଭୁତ କାହାଣୀ ସବୁ କହି ପାରନ୍ତି ।

କିନ୍ତୁ, ଆମର ଏ କାହାଣୀଟି ମନଗଢ଼ା ନୁହେଁ । ଏଠାରେ ଆମେ କ'ଣ କରିବା ? ଏଠାରେ କୌଣସି କିଛି ମନରୁ କାଢ଼ି କହିବାର ଅଧିକାର ନାହିଁ । ତା'ଛଡ଼ା, ଆମକୁ ଯେତେବେଳେ ଫେରି ଯିବାକୁ ହେବ, ସେତେବେଳେ ଦଶ କୋଡ଼ିଏ ବର୍ଷ ପାଇଁ ନୁହେଁ, ଲକ୍ଷ ଲକ୍ଷ ବର୍ଷ ପଛକୁ ଫେରି ଯିବାକୁ ହେବ !

ତା ସତ୍ତ୍ୱେ ଆମେ ଫେରି ଯିବା ଆସ ସେଇ ପ୍ରସ୍ତର ଯୁଗକୁ ।

କିନ୍ତୁ ଆମକୁ ଯିବାକୁ ହେଲେ ସେ ସୁଦୀର୍ଘ ଯାତ୍ରା ପାଇଁ ଦରକାରୀ ସମସ୍ତ ଯନ୍ତ୍ରପାତି ସାଙ୍ଗରେ ଧରି ଯିବାକୁ ପଡ଼ିବ । ପ୍ରଥମତଃ ଆମକୁ କେରପାଇର ଏପରି ଏକ ତମ୍ବୁ ନେବାକୁ ହେବ ଯାହାକୁ ଆମେ ଭାଙ୍ଗି ଭୁଙ୍ଗିକି ଏକ ଥଳି ଭଳି କରି ପାରିବା । ସାଙ୍ଗରେ ନେବାକୁ ହେବ ତମ୍ବୁ, ଖୁଣ୍ଟ ଆଉ ବାନ୍ଧିବା ପାଇଁ ଦଉଡ଼ି । ଖୁଣ୍ଟଗୁଡ଼ିକୁ ମାଟିରେ ପୋତିବା ପାଇଁ ଟାଙ୍ଗିଆଟିଏ ନେବାକୁ ଭୁଲିଗଲେ ଚଳିବ ନାହିଁ । ଏହା ଛଡ଼ା ଆମକୁ ଆଉ କେତେକ ଜିନିଷ ମଧ୍ୟ ନେବାକୁ ପଡ଼ିବ, ଯଥା ଖରାରୁ ମୁଣ୍ଡକୁ ଢାଙ୍କିବା ପାଇଁ ଏକ ହାଲୁକା ଟୋପି, ଗୋଟିଏ କଡ଼େଇ, ରାନ୍ଧିବା ଷ୍ଟୋପ୍, ଗୋଟିଏ ମଗ, ଛୁରି, କଣ୍ଟା ଚାମଚ ଏବଂ ଗୋଟିଏ ମାନଚିତ୍ର ଆଉ ଦିଗ୍‌ବାରିଣୀ ଯନ୍ତ୍ର । ଏସବୁକୁ ବାନ୍ଧି ବୁନ୍ଧି ସାରିଲା ପରେ ବନ୍ଧୁକଟି ଧରି ବାହାରିବାକୁ ହେବ (କାରଣ, ଶିକାର ବିନା ପ୍ରସ୍ତର ଯୁଗରେ ଆମେ ବଞ୍ଚି ପାରିବା ନାହିଁ) । ତା'ପରେ କିଣିବାକୁ ହେବ ଟିକଟ । କୌଣସି ବନ୍ଦରରୁ ପାଣି ଜାହାଜ ପାଇଁ ଟିକଟ କିଣିବାକୁ ହେବ ।

କିନ୍ତୁ ଟିକଟ କିଣିଲା ବେଳେ ପ୍ରସ୍ତର ଯୁଗକୁ ଯିବା ବୋଲି କହିବା ନାହିଁ । ସେ କଥା ଯଦି କହିବା, ଟିକଟ ବିକୁଥିବା ଲୋକ ଆମକୁ ପାଗଳ ବୋଲି ଭାବି ପାଗଳଖାନାକୁ ପଠାଇବାର ବନ୍ଦୋବସ୍ତ କରି ପାରନ୍ତି ।

ଟିକଟରେ ଅବଶ୍ୟ ଲେଖା ନଥିବ, "ପ୍ରସ୍ତର ଯୁଗକୁ ପ୍ରସ୍ଥାନ ଯାତ୍ରା" ବୋଲି । ସେଥିରେ କେବଳ ଲେଖା ଥିବ ଗୋଟିଏ ଶବ୍ଦ । ସେ ଶବ୍ଦଟି ହେଉଛି "ମେଲବର୍ଣ୍ଣ" । ସହରଟି ଅଷ୍ଟ୍ରେଲିଆ ମହାଦେଶରେ ଅବସ୍ଥିତ । ସେଇଠିକୁ ଆମେ ଯାତ୍ରା କରିବା ।

ଟିକଟଟି ଆମ ହାତକୁ ଆସିଗଲା ପରେ ଅଷ୍ଟ୍ରେଲିଆକୁ ଯାଉଥିବା ଜାହାଜରେ ଯାଇ ବସିବା । ତା'ପରେ, ଦେଖୁ ଦେଖୁ କେଇ ସପ୍ତାହ ମଧ୍ୟରେ ଆମେ ଯାଇ ପହଞ୍ଚିଯିବା ମେଲବର୍ଣ୍ଣରେ ।

ପୃଥିବୀରେ ଏବେବି କେତେକ ସ୍ଥାନ ଅଛି, ଯେଉଁଠି ମଣିଷ ପଥର ହତିଆର ବ୍ୟବହାର କରେ । ଅଷ୍ଟ୍ରେଲିଆ ମହାଦେଶଟି ହେଉଛି ସେସବୁ ମଧ୍ୟରେ ଅନ୍ୟତମ । ଏ କ୍ଷେତ୍ରରେ ସ୍ଥାନ ସ୍ଥାନ ମଧ୍ୟରେ ଯାତ୍ରାଟା ମଧ୍ୟ କାଳ ମଧ୍ୟରେ ଯାତ୍ରାରେ ପରିଣତ ହୋଇ ପାରେ । ଏହା ମଧ୍ୟ ଯୁକ୍ତିଯୁକ୍ତ । ବିଜ୍ଞାନୀମାନେ ଏହାହିଁ କରିଥାନ୍ତି, ଯେତେବେଳେ ସେମାନେ ଜାଣିବାକୁ ଚାହାନ୍ତି ସୁଦୂର ଅତୀତରେ ଲୋକେ କେମିତି ବାସ କରୁଥିଲେ ।

ସୋଭିଏତ୍ ୟୁନିଅନ୍‌ରେ ଅଧିକ ଉନ୍ନତ ଜାତିମାନେ ଅନୁନ୍ନତ ଜାତିମାନଙ୍କୁ

ସାହାଯ୍ୟ କରିଥିଲେ ଆଧୁନିକ ସମାଜରେ ପୂର୍ଣ୍ଣ ଅଧିକାରସଂପନ୍ନ ଏବଂ ଆଧୁନିକ ସଂସ୍କୃତିସଂପନ୍ନ ସଦସ୍ୟ ହେବା ପାଇଁ ।

କିନ୍ତୁ ପୃଥିବୀରେ ଏଭଳି ସବୁ ଦେଶ ଅଛି, ଯେଉଁଠି ବଡ଼ ବଡ଼ ସହରମାନଙ୍କରେ ଆଧୁନିକ ଆକାଶଛୁଆଁ ପ୍ରାସାଦର କିଛି ଦୂରରେ ଏଭଳି ଆଦିମ ବସତିସବୁ ଦେଖିବାକୁ ମିଳେ, ଯେଉଁଠି ଲୋକେ ତମ୍ବୁ କିମ୍ବା ମାଟିତଳ ଗାତମାନଙ୍କରେ ବାସ କରନ୍ତି ।

ଅଷ୍ଟ୍ରେଲିଆରେ କେତେକ ଆଦିମ ଅଧିବାସୀ ଏବେବି ପଥର ହତିଆର ବ୍ୟବହାର କରୁଛନ୍ତି । ସେମାନଙ୍କ ସହିତ ଆମେ ଦେଖା କରିବାକୁ ଯାଉଛେ । ଦେଖିବା, ସେମାନେ କେମିତି ସେସବୁକୁ ବ୍ୟବହାର କରୁଛନ୍ତି ।

ଶୁଷ୍କ ଜନଶୂନ୍ୟ ସମତଳ ଭୂମିର ବୁଦିବୁଦିକିଆ କଣ୍ଟାକଣ୍ଟା ଜଙ୍ଗଲ ମଧ୍ୟ ଦେଇ ଆମକୁ ଯିବାକୁ ହେବ ସେମାନେ ଯେଉଁଠି ରହନ୍ତି । ଗଛର ଛାଲ ଆଉ ଡାଳରେ ତିଆରି ସେମାନଙ୍କ କୁଡ଼ିଆସବୁ ନଇକୂଳସ୍ଥ ଗଛବୁଦା ମଧ୍ୟରେ ଅବସ୍ଥିତ ।

ପିଲମାନେ କୁଡ଼ିଆ ଆଗରେ ଖେଳୁଥିବେ । ସ୍ତ୍ରୀ ଏବଂ ପୁରୁଷ ସମସ୍ତେ ଏକାଠି ବସି କାମ କରୁଥିବେ ମାଟି ଉପରେ । ଦଳ ମଧ୍ୟରେ ସବୁଠାରୁ ଦାଢ଼ିଆ ଆଉ ଝଙ୍କାବାଳୁଆ ବୁଢ଼ା ଜଣକ ବସି ଗୋଟାଏ କଂଗାରୁ ଦେହରୁ ଚମଡ଼ା ଛାଲୁଥିବ । ବୁଢ଼ାଟି ଯେଉଁ ଯନ୍ତ୍ରରେ ଚମଡ଼ା ଛାଲୁଥିବ ସେ ଯନ୍ତ୍ରଟା ହେଉଛି ତିନିକୋଣିଆ ଏକ ପଥର ଛୁରି । ଆମେ କାହିଁକି ଏଭଳି ଏକ ତିନିକୋଣିଆ ଛୁରି ବିଷୟରେ ଜାଣିବା ପାଇଁ ଏତେ ଦୂର ଯାଇଛେ !

ଅଷ୍ଟ୍ରେଲିଆର ଏହି ଆଦିମ ଅଧିବାସୀମାନେ ତ ପ୍ରାଗୈତିହାସିକ ଯୁଗର ମଣିଷ ନୁହନ୍ତି ! ସେମାନଙ୍କର ସେଇ ପ୍ରାଗୈତିହାସିକ ଯୁଗର ପୂର୍ବପୁରୁଷ ଆଉ ସେମାନଙ୍କ ମଧ୍ୟରେ ହଜାର ହଜାର ପୁରୁଷର ତଫାତ୍ । ସେମାନଙ୍କର ଏହିସବୁ ପଥର ହତିଆର ହେଉଛି ଅତୀତର ଏକ କ୍ଷୁଦ୍ର ଅବଶେଷାଂଶ ଭଳି । କିନ୍ତୁ ଅତୀତର ଏହିସବୁ ଅବଶେଷାଂଶ ଆମର ବହୁ ପ୍ରଶ୍ନର ଉତ୍ତର ଦେଇ ପାରିବ । ଅଷ୍ଟ୍ରେଲିଆର ଏହି ଅଧିବାସୀମାନେ କାମ କରୁଥିଲା ବେଳେ ଆମେ ଯଦି ଲକ୍ଷ କରିବା, ତେବେ ଦେଖିବା ଏହି ତିନିକୋଣିଆ ପଥର ହତିଆରଟି ହେଉଛି ଶିକାରୀର ହତିଆର । ସେଥିରେ ସେ ଜାଲରେ ପଡ଼ିଥିବା ବା ଆଘାତ ପାଇଥିବା ଜନ୍ତୁକୁ ହତ୍ୟା କରେ, ତାକୁ ଚିରେ ଏବଂ ତା ଚମଡ଼ାକୁ ଛାଲେ ।

ଆଉ ଏକ ପ୍ରାଚୀନ ହତିଆରରେ କିପରି କାମ କରିବାକୁ ହୁଏ ଦେଖିବା ପାଇଁ ଆମକୁ ଆହୁରି ଦୂରକୁ – ଦକ୍ଷିଣ ଅଷ୍ଟ୍ରେଲିଆର ତାସ୍‌ମାନିଆ ଦ୍ୱୀପକୁ ଯିବାକୁ ହେବ । ସେ ହତିଆରଟା ଦେଖିବାକୁ ଅର୍ଦ୍ଧଗୋଲକାର । ଏବେବି ସେଠାକାର ସ୍ତ୍ରୀଲୋକମାନେ

ଏହି ହତିଆର ସାହାଯ୍ୟରେ କପଡ଼ା କାଟନ୍ତି, ଚମଡ଼ାକୁ କାଟି ଫିତା କରନ୍ତି, ଚମଡ଼ାକୁ ଘଷି ସଫା ଏବଂ ପତଳା କରନ୍ତି ।

ହତିଆରଗୁଡ଼ିକ ମଧ୍ୟରେ ଏ ଧରଣର କର୍ମ ବିଭାଜନ ଅର୍ଥ ଲୋକମାନଙ୍କ ମଧ୍ୟରେ ମଧ୍ୟ କର୍ମ ବିଭାଜନ । ଏହି ବିଭାଜନ ଆରମ୍ଭ ହୋଇଥିଲା ପ୍ରସ୍ତର ଯୁଗର ଶିକାରୀମାନଙ୍କ ମଧ୍ୟରେ ।

ସମୟ ଆଗେଇବା ସଙ୍ଗେ ସଙ୍ଗେ ଲୋକଙ୍କୁ ଅଧିକ ପ୍ରକାରର କାମ କରିବାକୁ ପଡ଼ିଲା । ସେସବୁକୁ ସୁରୁଖୁରୁରେ ଚଳାଇବା ପାଇଁ କେତେକ ଲୋକଙ୍କୁ ନିର୍ଦ୍ଦିଷ୍ଟ ଏକ କାମ କରିବାକୁ ପଡ଼ିଲା ବେଳେ ଆଉ କେତେକଙ୍କୁ ଅନ୍ୟ ଏକ କାମ କରିବାକୁ ପଡ଼ିଲା । ପୁରୁଷମାନେ ଶିକାର ପାଇଁ ବାହାରି ଗଲା ପରେ ସ୍ତ୍ରୀଲୋକମାନେ ଚୁଲୀ ପାଖରେ ହାତ ଗୋଡ଼ ଛାକି ବସିଲେ ନାହିଁ । ସେମାନେ ନୂଆ ତମ୍ବୁ, ଜୀବଜନ୍ତୁଙ୍କ ଚମଡ଼ାରୁ ପୋଷାକ ତିଆରି କଲେ, ଖାଦ୍ୟଯୋଗ୍ୟ ମୂଳ ସଂଗ୍ରହ କଲେ ଏବଂ ଖାଦ୍ୟକୁ ମହଜୁଦ୍ କଲେ ।

ଏସବୁ ଛଡ଼ା ଯୁବକ ଏବଂ ବୃଦ୍ଧମାନଙ୍କ ମଧ୍ୟରେ ମଧ୍ୟ ଆଉ ଏକ କାମ ବିଭାଜନ ହୋଇଥିଲା ।

## ହଜାର ବର୍ଷର ସ୍କୁଲ ।

କୌଣସି କାମ କରିବାକୁ ଗଲେ ପ୍ରଥମେ ସେ କାମ ଶିଖିବା ଦରକାର । କିନ୍ତୁ କିପରି କରିବାକୁ ହେବ, ସେ କଥାଟା ତ ହାଉଆରୁ ଶିଖିବାକୁ ପଡ଼େ ନାହିଁ । ଜ୍ଞାନ ହେଉଛି ଏପରି ଏକ ଜିନିଷ, ଯାହାକୁ ଅନ୍ୟଠାରୁ ଶିଖିବାକୁ ହୁଏ ।

ଯଦି ପ୍ରତ୍ୟେକ ମିସ୍ତ୍ରୀକୁ କାମ କରିବା ପାଇଁ କରତ ବଟାଳି ବାରିସି ଆବିଷ୍କାର କରିବା ସଙ୍ଗେ ସଙ୍ଗେ ସେସବୁକୁ କିପରି ବ୍ୟବହାର କରିବାକୁ ହୁଏ ସେ କଥା ଆବିଷ୍କାର କରିବାକୁ ପଡ଼ୁଥାନ୍ତା, ତେବେ ଏ ପୃଥିବୀରେ ଜଣେ ହେଲେ ମିସ୍ତ୍ରୀ ବି ନଥାନ୍ତେ ।

ସେଇ ଭଳି ଭୂଗୋଳ ପଢ଼ିବା ପାଇଁ ଆମ ସମସ୍ତଙ୍କୁ ଯଦି ପୁଣି ପୃଥିବୀ ଘୂରି ପଟେ ବୁଲିବାକୁ ପଡ଼ନ୍ତା, ଆମେରିକା ଆବିଷ୍କାର କରିବାକୁ ହୁଅନ୍ତା, ଆଫ୍ରିକାକୁ ଯିବାକୁ ପଡ଼ନ୍ତା, ଏଭେରେଷ୍ଟ ଉପରକୁ ଉଠିବାକୁ ହୁଅନ୍ତା, ପୃଥିବୀରେ କେତେ ପୟଃପ୍ରଣାଳୀ ଆଉ ଉପସାଗର ଅଛି ତାକୁ ଗଣିବାକୁ ହୁଅନ୍ତା, ତେବେ ଏସବୁ କରିବା ପାଇଁ ଆମ ଜୀବନ କାଳ ତ ଦୂରର କଥା କେଇ ହଜାର ବର୍ଷ ବଞ୍ଚିଲେ ମଧ୍ୟ କରିବା ସମ୍ଭବ ହୁଅନ୍ତା ନାହିଁ ।

ମଣିଷ ଯେତେ ଆଗକୁ ଆଗଉଛି ସେତେ ତା'ର ଶିଖିବାର ଜିନିଷ ବଢ଼ି ଚାଲିଛି । ପ୍ରତିଟି ନୂତନ ବଂଶଧର ତା'ର ପୂର୍ବବର୍ତ୍ତୀ ବଂଶଧରଠାରୁ ଅଧିକରୁ ଅଧିକ ଜ୍ଞାନ ତଥ୍ୟ ଆହରଣ କରୁଛି । ପ୍ରତିବର୍ଷ ପ୍ରତିଟି ବିଜ୍ଞାନରେ ନୂଆ ନୂଆ ଆବିଷ୍କାରମାନ ହେବାରେ ଲାଗିଛି । ବିଜ୍ଞାନର ଶାଖା ପ୍ରଶାଖାସବୁ ବଢ଼ିବାରେ ଲାଗିଛି । ଏପରି ସମୟ ଥିଲା କେବଳ ପଦାର୍ଥ ବିଦ୍ୟା ଥିଲା । ଏବେ ଭୂପଦାର୍ଥ ବିଦ୍ୟା ଏବଂ ଜ୍ୟୋତିଃ ପଦାର୍ଥ ବିଦ୍ୟା ସୃଷ୍ଟି ହେଲାଣି । ଆଗେ କେବଳ ରସାୟନ ବିଦ୍ୟା ଥିଲା । ଏବେ ଭୂରସାୟନ ବିଦ୍ୟା, ଜୈବରସାୟନ ବିଦ୍ୟା ଏବଂ କୃଷି ରସାୟନ ବିଦ୍ୟା ଆଦି ବିକାଶ ଲାଭ କଲାଣି । ନୂତନ ଜ୍ଞାନର ଚାପ ଫଳରେ ବିଜ୍ଞାନ ସଂପ୍ରସାରିତ ହେଉଛି, ଭାଗ ଭାଗ ହେଉଛି, ବହୁଗୁଣିତ ହେଉଛି, ସତେ ଯେମିତି ସେ ଏକ ଜୀବନ୍ତ ଜୀବ କୋଷ ।

ପ୍ରସ୍ତର ଯୁଗରେ ଅବଶ୍ୟ ଆଜିକାଲି ଭଳି ବିଜ୍ଞାନ ନଥିଲା । ମଣିଷ କେବଳ ନୂଆ ନୂଆ ଅଭିଜ୍ଞତା ଲାଭ କରୁଥିଲା । ମଣିଷର କାର୍ଯ୍ୟ ମଧ୍ୟ ସେତେବେଳେ ଏତେ ଜଟିଳ ଏବଂ ବିଚିତ୍ର ନଥିଲା । ତେଣୁକରି ମଣିଷକୁ ତା'ର ଶିକ୍ଷା ସମାପ୍ତ କରିବାକୁ ଏତେ ବର୍ଷ ଲାଗୁ ନଥିଲା । କିନ୍ତୁ ତା ସତ୍ତ୍ୱେ ସେତେବେଳେ ଅନେକ କିଛି ଥିଲା, ଯାହାକୁ ଶିକ୍ଷା କରିବାକୁ ପଡୁଥିଲା ।

ଜନ୍ତୁ ଜାନୁଆର ପଛରେ ଗୋଡ଼େଇ କି କେମିତି ଧରିବାକୁ ହୁଏ, ଚମଡ଼ାକୁ କିପରି ଛାଲିବାକୁ ହୁଏ, ତମ୍ବୁ କେମିତି ତିଆରି କରିବାକୁ ପଡ଼େ ଏବଂ ମୁନିଆ ପଥର ହତିଆର ଆଦି କିପରି ତିଆରି କରିବାକୁ – ସେସବୁକୁ ତାକୁ ଶିଖିବାକୁ ପଡୁଥିଲା ।

କିନ୍ତୁ ଏ ଜ୍ଞାନ ସେ ଲାଭ କରୁଥିଲା କେଉଁଠୁ ?

ମଣିଷ ତ ତା ମା ପେଟରୁ କିଛି ଶିଖିକି ଆସି ନଥାଏ । ସେସବୁ ତାକୁ ଶିକ୍ଷା କରିବାକୁ ପଡ଼େ ।

ଏହିଥିରୁ ଜାଣି ହୁଏ ମଣିଷ ପଶୁ ଜଗତଠାରୁ କେତେ ଦୂରେଇ ଆସିଛି ।

ପଶୁପକ୍ଷୀମାନେ ସେମାନଙ୍କର ଜୀବନ୍ତ ହତିଆର ଏବଂ ଜ୍ଞାନକୁ ତା'ର ବାପମାଙ୍କଠାରୁ ଲାଭ କରିଥାନ୍ତି, ଠିକ୍ ଯେପରି ସେମାନେ ସେମାନଙ୍କ ଦେହର ରଙ୍ଗ, ଚେହେରା ସେମାନଙ୍କ ବାପମାନଙ୍କଠାରୁ ବଂଶାନୁକ୍ରମେ ପାଇଥାନ୍ତି । ଘୁଷୁରିକୁ ଶିଖିବାକୁ ପଡ଼େନା କିପରି ମାଟି ଖୋଳିବାକୁ ହୁଏ, କାରଣ ଏହି ଉଦ୍ଦେଶ୍ୟରେ ଜନ୍ମବେଳୁ ତା'ର ଥାଏ ଏକ ଶକ୍ତ ନାକ । ବିରାଡ଼ିକୁ ଶିଖିବାକୁ ପଡ଼େନା କିପରି କାଠ କାଟିବାକୁ ହୁଏ । ଏଥି ପାଇଁ ତା'ର ମୁନିଆଁ ଦାନ୍ତ ସବୁ ନିଜକୁ ନିଜେ ବଢ଼ିଥାଏ । ତେଣୁକରି ପଶୁପକ୍ଷୀମାନଙ୍କର କାରଖାନା ନାହିଁ କି ସ୍କୁଲ ନାହିଁ ।

ଅଣ୍ଡା ଫୁଟେଇ ବାହାରି ଆସିଥିବା ବତକ ଛୁଆକୁ କେହି ଶିଖାଏ ନାହିଁ, କିପରି ମାଛ ଧରିବାକୁ ହେବ, ପାଣିରୁ ପୋକ ଖାଇବାକୁ ହେବ । ସେ ଜନ୍ମ ହେଲା କ୍ଷଣି ସେସବୁ କାମ କରିଥାଏ । କୋଇଲିର ଛୁଆମାନେ ଅନ୍ୟ ପକ୍ଷୀର ବସାରେ ବଢ଼ିଥାନ୍ତି । ସେମାନଙ୍କ ନିଜ ବାପମା ସେମାନଙ୍କର ଯତ୍ନ ନେଇ ପାରନ୍ତି ନାହିଁ । କିନ୍ତୁ ହେମନ୍ତ ଋତୁ ଆସିଗଲା କ୍ଷଣି ସେମାନେ ଉଡ଼ି ବୁଲନ୍ତି ଏବଂ ଶେଷରେ ଆଫ୍ରିକାକୁ ପଳାନ୍ତି । ଆଫ୍ରିକାକୁ ଯିବା ପାଇଁ ରାସ୍ତା ସେମାନଙ୍କୁ କେହି ଆଗରୁ ଦେଖାଇ ନଥାଏ ।

ଜୀବଜନ୍ତୁମାନେ ନିଶ୍ଚିତ ରୂପେ ସେମାନଙ୍କ ବାପମାଙ୍କ ସଂପର୍କରେ ଅନେକ କିଛି ଜାଣିଥାନ୍ତି । କିନ୍ତୁ ସେସବୁର ସ୍କୁଲ ସହିତ କୌଣସି ସାମଞ୍ଜସ୍ୟ ନଥାଏ ।

ମଣିଷ ସହିତ ଏସବୁର କୌଣସି ସଂପର୍କ ନାହିଁ ।

ମଣିଷ ନିଜେ ତା'ର ହତିଆର ତିଆରି କରେ । କାରଣ ଜନ୍ମରୁ ସେସବୁକୁ ସେ ଧରିକି ଆସି ନଥାଏ । ତା ଅର୍ଥ ସେ ତା ବାପମାଙ୍କଠାରୁ ଏହିସବୁ ହତିଆର କିପରି ବ୍ୟବହାର କରିବାକୁ ହୁଏ ସେ ବିଷୟରେ ଏବଂ ତା'ର ଦକ୍ଷତା ସଂପର୍କରେ ଉତ୍ତରାଧିକାର ସୂତ୍ରରେ ଜନ୍ମରୁ କିଛି ଲାଭ କରି ନଥାଏ । ସେସବୁକୁ ସେ ଲାଭ କରିଥାଏ ତା'ର ଗୁରୁଜନମାନଙ୍କଠାରୁ ବା ଶିକ୍ଷକଙ୍କଠାରୁ ।

ପ୍ରତ୍ୟେକ ଅଳସୁଆ ଛାତ୍ର ଖୁସି ହୁଅନ୍ତେ ଯଦି ଜନ୍ମରୁ ମଣିଷ ବ୍ୟାକରଣ ଆଉ ଗଣିତ ସଂପର୍କରେ ଜ୍ଞାନ ନେଇକି ଜନ୍ମିଥାନ୍ତା । ତାହେଲେ ତ ସ୍କୁଲର ଆବଶ୍ୟକତା ରହନ୍ତା ନାହିଁ । କିନ୍ତୁ ତା ଦ୍ୱାରା ତା'ର ବିଶେଷ ଲାଭ ହୁଅନ୍ତା ନାହିଁ । ସ୍କୁଲ ଯଦି ନଥାନ୍ତା ତେବେ ଲୋକେ ତ ନୂଆ କିଛି ଶିଖି ପାରନ୍ତେ ନାହିଁ । ମଣିଷର ସମସ୍ତ କୌଶଳ ଏବଂ ଜ୍ଞାନ ତ ସେଇ ଏକା ସ୍ତରରେ ରହି ଯାଆନ୍ତା – ଗୁଣ୍ଡୁଚିମୂଷାର ଯେମିତ ରହି ଯାଇଛି ।

ମଣିଷ ପକ୍ଷରେ ସୁଖର କଥା ହେଉଛି, ଲୋକେ ଜନ୍ମରୁ ସବୁ କିଛି ଜାଣିକି ଜନ୍ମି ନଥାନ୍ତି । ସେମାନଙ୍କୁ ପଢ଼ିବାକୁ ହୁଏ ଏବଂ ଶିଖିବାକୁ ହୁଏ । ମଣିଷ ଜାତିର ଅଭିଜ୍ଞତା ଭଣ୍ଡାରକୁ ପ୍ରତ୍ୟେକଟି ବଂଶଧର କିଛି ନା କିଛି ନୂଆ ଅଭିଜ୍ଞତା ଦାନ କରିଥାନ୍ତି । ଏହି ଅଭିଜ୍ଞତା କ୍ରମଶଃ ବଢ଼ି ଚାଲିଛି । ଅଜଣାର ସୀମାରେଖାକୁ ମଣିଷ ଆହୁରି ବ୍ୟାପକ କରି ଚାଲିଛି ।

ଆମ ସୋଭିଏତ୍ ୟୁନିଅନ୍‌ରେ ପ୍ରତ୍ୟେକ ପିଲାକୁ ସାତବର୍ଷ ହେଲା କ୍ଷଣି ତାଙ୍କୁ ସ୍କୁଲକୁ ଯିବାକୁ ପଡ଼େ ।

ଆମର ସାରା ଦେଶଟା ମଧ୍ୟ ଶିକ୍ଷା ଲାଭ କରି କରିକା ଚାଲିଛି ।

ସମସ୍ତ ମଣିଷଜାତିକୁ ନିତ୍ୟ ନୂତନ ଜିନିଷ ଶିଖିବାକୁ ହୋଇଛି । ତା'ର ସେ

ହଜାର ବର୍ଷର ସୁଲଭୁ । ସେ ସୁଲ ତାକୁ ଦେଇଛି ବିଜ୍ଞାନ, କାରୁକୌଶଳ ଏବଂ କଳା ତଥା ତା'ର ସାଂସ୍କୃତିକ ପରମ୍ପରା ।

ମଣିଷ ପ୍ରଥମେ ସେ ସୁଲରେ ପ୍ରବେଶ କରିଥିଲା ପ୍ରସ୍ତର ଯୁଗରେ । ବୟସ୍କ ବୃଦ୍ଧ ଅଭିଜ୍ଞ ଶିକାରୀମାନେ ତରୁଣ ଶିକାରୀମାନଙ୍କୁ ଶିକ୍ଷା ଦେଉଥିଲେ କିପରି ଶିକାର କରିବାକୁ ହୁଏ : ପଶୁର ପାଦଚିହ୍ନ ଦେଖି ସେ କି ପଶୁ ବୋଲି ଜାଣିବାକୁ ହୁଏ, ପଶୁକୁ ଭୟ ନକରି ତା'ର ନିକଟବର୍ତ୍ତୀ କିପରି ହେବାକୁ ହୁଏ ।

ଆଜିକାଲି ମଧ୍ୟ ଶିକାର ପାଇଁ ବିପୁଳ ଦକ୍ଷତା ଦରକାର । କିନ୍ତୁ ସେ କାଳ ଅପେକ୍ଷା ଏବେ ଶିକାରୀ ହେବା ସହଜ । କାରଣ ଏବେ ଶିକାରୀକୁ ଅନ୍ତତଃ ତା'ର ଅସ୍ତ୍ର ନିଜକୁ ତିଆରି କରିବାକୁ ପଡ଼େ ନାହିଁ । ପ୍ରସ୍ତର ଯୁଗରେ ଶିକାରୀମାନଙ୍କୁ ସେମାନଙ୍କ ଛୁରୀ, କଟାଯନ୍ତ୍ର ଏବଂ ବର୍ଚ୍ଛା ଆଦି ନିଜକୁ ତିଆରି କରିବାକୁ ପଡ଼ୁଥିଲା । ତେଣୁ ପ୍ରତ୍ୟେକ ଗୋଷ୍ଠୀ ମଧ୍ୟରେ ଏ କାମଟା କେବଳ ଜଣେ ବୟବୃଦ୍ଧ ଶିକାରୀ ହିଁ ନୂତନ ବଂଶଧରମାନଙ୍କୁ ଶିକ୍ଷା ଦେଉଥିଲା ।

ସ୍ତ୍ରୀମାନଙ୍କ କାମ ପାଇଁ ଅନ୍ୟ କୌଶଳ ଦରକାର । ସ୍ତ୍ରୀମାନେ ତ ଏକ ଧାରାରେ ଗୃହିଣୀ, ସପତି, କାଠକଟାଳୀ ଏବଂ ଦରଜି ।

ପ୍ରତ୍ୟେକଟି ଗୋତ୍ରରେ କେତେକ ବୟବୃଦ୍ଧ ଅଭିଜ୍ଞ ନାରୀ ପୁରୁଷ ଥିଲେ । ସେମାନଙ୍କ ଦୀର୍ଘ ଜୀବନକାଳ ମଧ୍ୟରେ ସେମାନେ ଯେଉଁ ଜ୍ଞାନ ଆଉ ଅଭିଜ୍ଞତା ଲାଭ କରିଥିଲେ ସେସବୁକୁ ସେମାନେ ଦାନ କରୁଥିଲେ ସେମାନଙ୍କ ଗୋଷ୍ଠୀର ତରୁଣ ବଂଶଧରମାନଙ୍କୁ ।

କିନ୍ତୁ ଏହି କୌଶଳ ଏବଂ ଅଭିଜ୍ଞତା କିପରି ସେମାନେ ଦାନ କରୁଥିଲେ ?

ସେମାନେ ଯାହା ସବୁ ଜାଣିଥିଲେ ସେସବୁକୁ କାର୍ଯ୍ୟ କ୍ଷେତ୍ରରେ ଦେଖାଇ ଏବଂ ବିଶ୍ଳେଷଣ କରି ଶିକ୍ଷା ଦେଉଥିଲେ ।

ଏଥି ପାଇଁ ମଣିଷର ଦରକାର ହୁଏ ଭାଷା ।

ପଶୁପକ୍ଷୀମାନଙ୍କ ପକ୍ଷରେ କିନ୍ତୁ ସେମାନଙ୍କ ପିଲା ଛୁଆମାନଙ୍କୁ ଶିକ୍ଷା ଦେବାକୁ ପଡ଼େ ନାହିଁ କିପରି ସେମାନଙ୍କ ଜୀବନ୍ତ ହତିଆର ନଖ ଏବଂ ଦାନ୍ତକୁ ବ୍ୟବହାର କରିବାକୁ ହୁଏ । ତେଣୁ କରି ସେମାନେ ଜାଣନ୍ତି ନାହିଁ କେମିତି କଥା କହିବାକୁ ପଡ଼େ ।

କିନ୍ତୁ ପ୍ରାଗୈତିହାସିକ ମଣିଷକୁ ଜାଣିବାକୁ ପଡ଼ିଥିଲା ।

ଅନ୍ୟମାନଙ୍କ ସହିତ ଏକାଠି ମିଳି କାମ କରିବା ପାଇଁ ତା'ର ଦରକାର ପଡ଼ିଥିଲା ଏକ ସାଧାରଣ ଭାଷା । ପୁରୁଣା ବଂଶଧରଙ୍କ ଦ୍ୱାରା ନୂଆ ବଂଶଧରଙ୍କୁ

ଅଭିଜ୍ଞତା ଏବଂ କୌଶଳ ଶିକ୍ଷା ଦେବା ପାଇଁ ସେମାନଙ୍କର ଦରକାର ହେଉ ଛଦସବୁ ।

ପ୍ରାଗୈତିହାସିକ ଲୋକ ତେବେ କିଭଳି ନିଜ ନିଜ ମଧ୍ୟରେ କଥାବାର୍ତ୍ତା ହେଉଥିଲେ ।

# ଅତୀତ ମଧ୍ୟକୁ ଦ୍ୱିତୀୟ ଥର ଯାତ୍ରା !

ପୁଣି ଆଉ ଥରେ ଆମକୁ ଅତୀତ ମଧ୍ୟକୁ ଯିବାକୁ ହେବ । କିନ୍ତୁ ଏଥର ଚେଷ୍ଟା କରିବା ପୂର୍ବ ଅପେକ୍ଷା ସହଜରେ ଯିବା ପାଇଁ ।

ଦୂର ଦେଶକୁ ଗଲବେଳେ କେବଳ ଜାହାଜରେ ଯିବାକୁ ପଡ଼େ ନାହିଁ । ସେ କାମଟି ଆମେ ଘରେ ବସି ବି କରି ପାରିବା ।

ଯେଉଁମାନଙ୍କର ରେଡିଓ ଅଛି ସେମାନେ ବୋତାମ ଟିପି ଦେଇ କ୍ଷଣି ଯେକୌଣସି ଦେଶରେ ଯାଇ ପହଞ୍ଚି ପାରିବେ । ଡମର ଟେଲିଭିଜନ ଥିଲେ କେବଳ ଶୁଣିବ ନାହିଁ, ବହୁ ଦୂର ଦେଶରେ ଥିବା ଲୋକମାନଙ୍କୁ ମଧ୍ୟ ଦେଖି ପାରିବ । ରେଡିଓ ଏବଂ ଟେଲିଭିଜନ ସାହାଯ୍ୟରେ ଆମେ ଅନେକ ଦୂରତ୍ୱକୁ ଅତିକ୍ରମ କରି ପାରୁଛେ ।

କିନ୍ତୁ ଯେଉଁ ଲୋକମାନଙ୍କ ସହିତ ଆମର ଯୁଗଯୁଗାନ୍ତରର ବ୍ୟବଧାନ ସେମାନଙ୍କ କଥା ଶୁଣିବା କିପରି ?

ରେଡିଓ ଏବଂ ଟେଲିଭିଜନ ଯେପରି ଆମକୁ ଦୂରଦୂରାନ୍ତକୁ ନେଇଯାଏ ସେଇ ଭଳି ସମୟ ମଧ୍ୟରେ ଯାତାୟତ କରିବା ପାଇଁ କ'ଣ କୌଣସି ଉପାୟ ନାହିଁ ?

ହଁ, ଅଛି । ସେ ହେଉଛି ଚଳଚ୍ଚିତ୍ର ।

ଚଳଚ୍ଚିତ୍ର ପରଦା ଉପରେ ଆମେ କେବଳ ସାରା ଦୁନିଆକୁ ଏବଂ ବର୍ତ୍ତମାନକୁ ଦେଖୁନା, ଅତୀତର ଦୁନିଆକୁ ମଧ୍ୟ ଦେଖିବାକୁ ପାଉଥାଏଁ ।

ଦକ୍ଷିଣ ମେରୁ ଅଭିଯାନରୁ ଫେରିଥିବା ପ୍ରଥମ ବୀରମାନଙ୍କୁ ମସ୍କୋର ଲାଲ ସ୍କୋୟାରରେ ଆୟୋଜିତ ସମ୍ବର୍ଦ୍ଧନାର ଦୃଶ୍ୟକୁ ଟେଲିଭିଜନରେ ଆମେ ଦେଖି ପାରିବା । ତା'ଛଡ଼ା ଟେଲିଭିଜନରେ ଦେଖି ପାରିବା ଏକ ବିରାଟ ସଫେଦ ବେଲୁନ୍‌କୁ । ବେଲୁନ୍‌ଟା ପୃଥିବୀର ଏକ କୃତ୍ରିମ ଉପଗ୍ରହ ଭଳି ଆକାଶ ଉପରକୁ ଉଡ଼ି ଯାଉଛି । ଏହାକୁ ଇଂରେଜୀ ଭାଷାରେ କହନ୍ତି ଷ୍ଟ୍ରାଟୋସ୍ଫିଅରିକ୍ ବେଲୁନ ।

କିନ୍ତୁ ଚଳଚ୍ଚିତ୍ରର ଫଟୋ ଉଠାଉଥିବା କ୍ୟାମେରାଟା ଏକ ଜାହାଜ ଭଳି କେବଳ ସେତିକି ଦୂରକୁ ଘେନି ଯାଇ ପାରେ, ଯେବେଠୁଁ ତା'ର ଆବିଷ୍କାର ହୋଇଛି । ତମେ ଜାଣିଥିବା ଚଳଚ୍ଚିତ୍ର କ୍ୟାମେରାର ଆବିଷ୍କାର ଖୁବ୍ ବେଶି ବର୍ଷ ଆଗେ ହୋଇନି ।

୧୯୨୭ ମସିହାରେ ପ୍ରଥମ 'ଟକି' (ସବାକ୍) ସିନେମା ନିର୍ମିତ ହୋଇଥିଲା ।

ଆମକୁ ସମୟ ମଧ୍ୟ ଦେଇ ଗତି କରିବାକୁ ହେବ, ତେଣୁ ବାଟରେ ଜାହାଜ ବଦଳେଇବାକୁ ପଡ଼ିବ । ଏବଂ ଯେତେ ଜାହାଜ ବଦଳେଉଥିବା, ସେତେ ଖରାପ ଜାହାଜରେ ବସୁଥିବା, ଅର୍ଥାତ୍ ବାଷ୍ପଚାଳିତ ଜାହାଜରୁ ପାଲବନ୍ଧା ଜାହାଜକୁ ଯିବାକୁ ହେବ ।

ଏଥର ଆମେ ଦେଖିବା ଅବାକ୍ ଚଳଚ୍ଚିତ୍ରକୁ । ଏଥିରେ ଆମେ କେବଳ ଅତୀତକୁ ଦେଖିବା, କିଛି ଶୁଣି ପାରିବା ନାହିଁ ।

ତା'ପରେ ଦେଖିବା ଫନୋଗ୍ରାଫ୍‌କୁ । ଏଥିରେ ଆମେ କଥା ଶୁଣି ପାରିବା, କିନ୍ତୁ କିଏ କହୁଛି ତାକୁ ଦେଖି ପାରିବା ନାହିଁ ।

ତା'ଛଡ଼ା ଆମ ସେ ଜାହାଜ କେବଳ ସେଇ ସମୁଦ୍ର କୂଳକୁ ନେଇ ଯାଇ ପାରିବ, ଯେଉଁଠୁ ତାହା ଏକଦା ଯାତ୍ରାରମ୍ଭ କରିଥିଲା ।

୧୮୯୫ ମସିହା ପୂର୍ବର କୌଣସି ଜିନିଷକୁ ଆମେ ଦେଖି ପାରିବା ନାହିଁ କୌଣସି ସିନେମାରେ ।

ଏବଂ ସେଇ ଭଳି ଫନୋଗ୍ରାଫ୍ ମଧ୍ୟ ୧୮୭୭ ମସିହା ପୂର୍ବର କୌଣସି କଥାକୁ ଶୁଣାଇ ପାରିବ ନାହିଁ । କାରଣ ୧୮୭୭ ପୂର୍ବରୁ ଫନୋଗ୍ରାଫ୍ ଆବିଷ୍କୃତ ହୋଇ ନଥିଲା ।

କଥା କହିଲା ପରେ ତାହା ହାଉଆରେ ମିଳେଇ ଯାଏ । ଏହା କେବଳ ବଞ୍ଚି ପାରେ ଲେଖା ଆକାରରେ ବା ଛପା ବହି ପତ୍ରରେ ।

ପୁରୁଣା ଧରଣର ଫଟୋରେ କେବଳ ଦେଖିବାକୁ ମିଳେ ନିର୍ଜୀବ ହସ ଏବଂ ବିଭିନ୍ନ ଅଙ୍ଗଭଙ୍ଗି ।

ତମେ କୌଣସି ପରିବାରର ଫଟୋ ଆଲବମ୍ ଦେଖିଥିବ । ସେଥିରେ ତମେ ମଖମଲିକନାରେ ବନ୍ଧେଇ ମଲଟ ଭିତରେ ଆବିଷ୍କାର କରି ପାରିବ ବହୁ ବଂଶଧରଙ୍କର ଜୀବନକୁ ।

ସେଇସବୁ ଫଟୋ ମଧ୍ୟରେ ତମେ ଦେଖି ପାରିବ ମୋଟା କାଗଜ ଉପରେ ଏକ ଛୋଟ ଝିଅର ଛବି । ଝିଅଟିର ପୋଷାକପତ୍ର ୧୮୭୦ ଦଶକର ଢଙ୍ଗଢାଙ୍ଗରେ ତିଆରି । ଏକ ବଗିଚାର ଫାଟକରେ ସେ ଆଉଜି କି ଛିଡ଼ା ହୋଇଛି । ସେଭଳି ଫାଟକ ତମେ କେବଳ ଫଟୋ ଉଠାଳୀଙ୍କ ଷ୍ଟୁଡିଓରେ ଦେଖିବାକୁ ପାଇବ ।

ଆଲବମ୍‌ଟିର ସେଇ ପୃଷ୍ଠାରେ ସଫେଦ ଗାଉନ ପିନ୍ଧି କନ୍ୟାଟିଏ ଜଣେ ଚନ୍ଦାମୁଣ୍ଡିଆ ମୋଟା ବର ପାଖରେ ଛିଡ଼ା ହୋଇଛି, ବରର ବୟସ କନ୍ୟାଠାରୁ ତିରିଶ ବର୍ଷ ଅଧିକ ହେବ । ବରଟି ହାତରେ ବଡ଼ ମୁଦି ପିନ୍ଧିଛନ୍ତି ଏବଂ ତାଙ୍କ ହାତଟି ଅଧାକଟା ହୋଇଥିବା ମର୍ମରପ୍ରସ୍ତର ସ୍ତମ୍ଭ ଉପରେ ରହିଛି । ଝିଅଟିର ଆଖି ଦୁଇଟି ପ୍ରଥମ ଛବିଟିର ସେଇ ଛୋଟ ଝିଅଟିର ଆଖି ଦୁଇଟି ପରି ସରଳ ଏବଂ ଭୟଭୀତ ।

ଏଥର ଆଉ ଗୋଟିଏ ଛବି ଦେଖ । ଏଇଟି ହେଉଛି ତା'ର ଚାଳିଶ କିମ୍ବା ପଚାଶ ବର୍ଷ ପରର ଛବି । ଏଠି ତାକୁ ଚିହ୍ନିବା କଷ୍ଟକର । କଳା ଲେସଲଗା ଟୋପି ତଳେ କପାଳରେ ତା'ର ବଳି ରେଖା, ଆଖି ଦୁଇଟିରେ କ୍ଳାନ୍ତି ଏବଂ ଗାଲ ଦୁଇଟି ଭିତରକୁ ପଶି ଗଲଣି । ଛବିଟିର ପଛ ପାଖରେ ମରା ହୋଇଛି ଛବି ଉଠିଥିବା ଷ୍ଟୁଡିଓର ଟ୍ରେଡ୍‌ମାର୍କା : ଏକ କ୍ଷୁଦ୍ର ସ୍ୱର୍ଗୀୟ ଦେବଦୂତ ହାତରେ କ୍ୟାମେରାଟିଏ । ସେହି ଟ୍ରେଡ୍‌ମାର୍କା ଉପରେ ଜଣେ ବୃଦ୍ଧ ବା ବୃଦ୍ଧାର ଥର ଥର ହାତରେ ଲେଖା : "ମୋ ନାତୁଣୀକୁ – ସ୍ନେହଶୀଳା ବୁଢ଼ୀମା" ।

ଏଠାରେ ଏକ ଆଲବମ୍‌ର ଗୋଟିଏ ପୃଷ୍ଠା ମଧ୍ୟରେ ଜଣେ ଲୋକର ସମଗ୍ର ଜୀବନର ଇତିହାସ ।

ଛବିଗୁଡ଼ିକ ଯେତେ ପୁରୁଣା ହେଉଛି ସେତେ ଫଟୋରେ ଥିବା ଲୋକଟିର ଚେହେରା ଏବଂ ଭାବଭଙ୍ଗି ଅସ୍ପଷ୍ଟ ହୋଇ ଉଠୁଛି । ଏବେ ଆମେ ଅତି ସହଜରେ ଧାବମାନ ଏକ ଅଶ୍ୱ ବା ଡୁବନ୍ତ ଏକ ସନ୍ତରଣକାରୀର ଚମତ୍କାର ଫଟୋ ଉଠାଇ ପାରିବା । କିନ୍ତୁ ଆଗେ ଫଟୋଗ୍ରାଫରମାନେ ଯେଉଁ ଲୋକର ଫଟୋ ଉଠାଉଥିଲେ ସେମାନଙ୍କ ମୁଣ୍ଡ ଏବଂ କାନ୍ଧକୁ ଏମିତି ଭିଡ଼ିକି ଚେୟାରରେ ବାନ୍ଧି ଦେଉଥିଲେ ଯେ, ସେମାନେ ଇଞ୍ଚିଏ ହେଲେ ଏପାଖ ସେପାଖ ହୋଇ ପାରୁ ନଥିଲେ । ତେଣୁ ସେ କ୍ଷେତ୍ରରେ ସେମାନେ ସ୍ୱାଭାବିକ ମନେ ନହୋଇ ପ୍ରାଣହୀନ ଏବଂ ଅପରିଚିତ ଦିଶିବା ବ୍ୟତୀତ ଆଉ କ'ଣ ଦେଖା ଯାଇ ପାରନ୍ତେ ।

କିନ୍ତୁ ୧୮୩୮ ମସିହା ପୂର୍ବରୁ ତ ଆମ ପୃଥିବୀରେ କୌଣସି ଛବି ଉଠି ନଥିଲା । ତେଣୁ ଆମ ଯାତ୍ରା ପଥରେ ଆମକୁ ମୁଖ୍ୟତଃ ଅତୀତର ସାକ୍ଷୀମାନଙ୍କ ଉପରେ ନିର୍ଭର କରିବାକୁ ପଡ଼ିବ । ସେସବୁ ଅବଶ୍ୟ କ୍ୟାମେରାର ଆଖି ଭଳି ଅବିକଳ ଏବଂ ବସ୍ତୁନିଷ୍ଠ ହେବେ ନାହିଁ ।

ଅତୀତକୁ ପୁଣି ପୁନର୍ଗଠନ କରିବାକୁ ହେଲେ ସେଇସବୁ ସାକ୍ଷୀମାନଙ୍କୁ ମିଉଜିଅମ୍, ମହାଫିଜ୍‌ଖାନା ଏବଂ ଲାଇବ୍ରେରିରେ ଥିବା ଜିନିଷ ସହିତ ତୁଳନା କରିବାକୁ ପଡ଼ିବ ।

ତା'ପରେ ହଜାର ହଜାର ବର୍ଷ ଆଖି ଆଗରେ ଆମର ଏମିତି ଉଡ଼ିଯିବ ଯେମିତି ଆମ ଜାତୀୟ ରାଜପଥମାନଙ୍କରେ ମାଇଲ ଚିହ୍ନ ଥିବା ପଥରଗୁଡ଼ିକ ଗୋଟାକ ପରେ ଗୋଟାଏ ପଛକୁ ଗୁଞ୍ଚିଯାଏ ।

ଏଥର ଆମେ ଯାଇ ପହଞ୍ଚି ଯିବା ୧୪୪୦ ମସିହାରେ । ତା ପୂର୍ବରୁ କୌଣସି ଛାପା ବହି ମିଳିବ ନାହିଁ । ସେତେବେଳେ ଆଜିକାଲିକା ଭଳି ଚକ୍ ଚକ୍ ଛପା ଅକ୍ଷରର ବହି ସବୁ ନଥିଲ, ଥିଲ ହାତଲେଖା ପୋଥିସବୁ । ଚମଡ଼ା ଉପରେ ପକ୍ଷୀର ପର ଦେଇ ଲେଖା ପୋଥିସବୁ ମିଳିବ ।

ଆମର ଏହି ଯାତ୍ରା ଆହୁରି ଅତୀତକୁ ଯାଇ ଚମଡ଼ା ପୋଥିରୁ ପାପିରସ ପୋଥିରେ ଏବଂ ତା'ପରେ ମନ୍ଦିର କାନ୍ଥରେ ଥିବା ଲେଖାରେ ପହଞ୍ଚିଯିବ ।

ଯେତେ ଅତୀତକୁ ଯିବା ସେତେ ଲୋକମାନଙ୍କର ଲେଖାସବୁ ଆମକୁ ଅବୋଧ୍ୟ ଏବଂ ରହସ୍ୟପୂର୍ଣ୍ଣ ମନେ ହେବ ।

ଶେଷକୁ ଆମେ ଏଭଳି ଏକ ଯୁଗରେ ଯାଇ ପହଞ୍ଚିଯିବା ଯେତେବେଳେ ଆଉ ହାତଲେଖା ମିଳିବ ନାହିଁ । ଅତୀତର ସ୍ୱର ସବୁ ସେଠାରେ ସବୁ ଦିନ ପାଇଁ ସ୍ଥିର ହୋଇ ରହିଯାଇଛି ।

ତାହେଲେ କ'ଣ କରିବା ?

ତା'ପରେ ଆମକୁ ପୃଥିବୀରେ ମଣିଷର ଚିହ୍ନ ସବୁକୁ ଖୋଳିବାକୁ ହେବ । ଉଚ୍ଚା ଉଚ୍ଚା ସମାଧିସ୍ଥାନକୁ ଖୋଳିବାକୁ ପଡ଼ିବ, ପ୍ରାଚୀନ ହତିଆର ଥିବା ଅତୀତର ଆଶ୍ରୟସ୍ଥାନଗୁଡ଼ିକୁ ପରୀକ୍ଷା କରିବାକୁ ହେବ ଏବଂ ହଜାର ହଜାର ବର୍ଷ ଧରି ଭିତର ଚୁଲୀରେ ପଡ଼ିଥିବା ଦରପୋଡ଼ା କାଠକୁ ଦେଖିବାକୁ ହେବ ।

ଅତୀତର ଏହିସବୁ ଧ୍ୱଂସାବଶେଷ ଆମକୁ କହେ ମଣିଷ କିପରି ବଞ୍ଚୁଥିଲ ଏବଂ କାମ କରୁଥିଲ ।

କିନ୍ତୁ ସେସବୁରୁ କ'ଣ ଆମେ ଜାଣି ପାରିବା ଯେ, ମଣିଷ କିପରି କଥା କହୁଥିଲ ଏବଂ ଚିନ୍ତା କରୁଥିଲ ?

## ବାକ୍ୟହୀନ ଭାଷା ।

ପର୍ବତ ଗୁହା ଭିତରେ ବା ପ୍ରାଗୈତିହାସିକ ଶିକାରୀମାନଙ୍କର ବାସସ୍ଥାନମାନଙ୍କରେ ବିଜ୍ଞାନୀମାନେ ଅନେକ ସମୟରେ ସେମାନଙ୍କୁ କିମ୍ବା ସେମାନଙ୍କର ଅବଶେଷାଂଶକୁ ଦେଖିବାକୁ ପାଇଥାନ୍ତି ।

୧୯୨୪ ମସିହାରେ ସୋଭିଏତ୍ ପ୍ରତ୍ନତତ୍ତ୍ୱବିତ୍‌ମାନେ ସିମ୍ଫେରୋପୋଲ ନିକଟବର୍ତ୍ତୀ କିକ୍-କୋବା ଗୁହାରେ ଏକ ପ୍ରାଗୈତିହାସିକ ମଣିଷର କଙ୍କାଳ ଆବିଷ୍କାର କରିଥିଲେ । କଙ୍କାଳଟା ଗୁହାର ମଧ୍ୟସ୍ଥଳରେ ଏକ ଆୟତ କ୍ଷେତ୍ରାକାର ଗାତ ମଧ୍ୟରେ ପୋତା ହୋଇଥିଲା । ନିକଟବର୍ତ୍ତୀ ପର୍ବତ ଶୃଙ୍ଗକୁ ଲାଗି ଏକ ସ୍ଥାନରେ ସେମାନେ ଦେଖିବାକୁ ପାଇଥିଲେ ଏକ ହରିଣର କେତେକ ହାଡ଼ ଗୋଡ଼ ଆଉ କେତେକ ପଥର ହତିଆର ।

ପ୍ରାଗୈତିହାସିକ ମଣିଷର ଆଉ ଏକ ବାସସ୍ଥଳୀ ଆବିଷ୍କୃତ ହୋଇଛି ଉଜ୍‌ବେକିସ୍ଥାନର ତେସିକ୍-ତାସ୍ ଗୁହାରେ ।

ପ୍ରାଗୈତିହାସିକ ଶିକାରୀମାନେ ପାହାଡ଼ ପର୍ବତର ଗଡ଼ାଣିରେ ବାସ କରୁଥିଲେ ଏବଂ ସମ୍ଭବତଃ ଗ୍ଭଲିବାରେ ପାରଙ୍ଗମ ଥିଲେ । କାରଣ ସେମାନଙ୍କର ମୁଖ୍ୟ ଶିକାର ଥିଲା ପାହାଡ଼ିଆ ଛେଳି । ଏହି ଛେଳି ଏପରି ଏକ ଜୀବ ଯେ, ତାକୁ ଧରିବା ଏବଂ ମାରିବା କଷ୍ଟକର ଥିଲା ।

ଏହି ଗୁହାଟିରୁ ଆଠ ବର୍ଷର ଏକ ପିଲାର ଖପୁରି ଏବଂ ହାଡ଼ ଗୋଡ଼ ମଧ୍ୟ ମିଳିଛି । ତା'ର ପାଖକୁ ଲାଗି ଜମା ହୋଇଛି ପଥର ହତିଆର ଏବଂ ଜୀବଜନ୍ତୁଙ୍କର ହାଡ଼ସବୁ ।

ଆଦିମ ପ୍ରସ୍ତର ଯୁଗର ମଣିଷର ଦେହାବଶେଷ କେବଳ ସୋଭିଏତ୍ ୟୁନିଅନ୍‌ରେ ମିଳିନି, ଅନ୍ୟାନ୍ୟ ଅନେକ ଦେଶରେ ମଧ୍ୟ ଆବିଷ୍କୃତ ହୋଇଛି । ବାସ୍ତବରେ କହିବାକୁ ଗଲେ, ଆମେରିକା ମହାଦେଶ ଛଡ଼ା ଆଉ ସମସ୍ତ ମହାଦେଶରେ ସେସବୁ ଆବିଷ୍କୃତ ହୋଇଛି ।

ଏହି ଧରଣର ପ୍ରଥମ ଆବିଷ୍କାରଗୁଡ଼ିକ ମଧ୍ୟରେ ଜର୍ମାନୀର ରାଇନ୍ ପ୍ରଦେଶର ନିଆଣ୍ଡେର୍‌ଥାଲ୍ ଉପତ୍ୟକାର ଆବିଷ୍କାର ଥିଲା ଅନ୍ୟତମ । ତେଣୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ସେସବୁ ହାଡ଼ ଗୋଡ଼କୁ ନିଆଣ୍ଡେର୍‌ଥାଲ୍ ମଣିଷର ହାଡ଼ଗୋଡ଼ ବୋଲି ନାମିତ କରିଥିଲେ ।

ଏଥର ଆମେ ଆମ ନାୟକକୁ ନିଆଣ୍ଡେର୍‌ଥାଲ୍ ମଣିଷ ବୋଲି ଡାକିବା । ଆମେ ତାକୁ ଏ ନୂଆ ନାମଟି ଦେବାର କାରଣ ହେଉଛି ସେ ତା'ର ପୂର୍ବପୁରୁଷ ପିଥେକ୍ୟାନ୍‌ଥ୍ରପାସ୍‌ଠାରୁ ହଜାର ହଜାର ବର୍ଷ ମଧ୍ୟରେ ଅନେକ ବଦଳି ଯାଇଥିଲା ।

ତା'ର ପିଠି ଅନେକ ସଳଖ ହୋଇଥିଲା, ହାତ ଅନେକ କର୍ମପଟୁ ହୋଇଥିଲା ଏବଂ ମୁହଁର ଗଢ଼ଣ ମଣିଷ ଭଳି ଅନେକ ହୋଇ ଆସିଥିଲା ।

ଲେଖକମାନେ ସେମାନଙ୍କ ନାୟକର ରୂପ ବର୍ଣ୍ଣନା ଖୁବ୍ କଳ୍ପନା ସହକାରେ ବିଶଦ ଭାବେ କରିଥାନ୍ତି । ଦୃଷ୍ଟାନ୍ତ ସ୍ୱରୂପ, "ତା'ର ଉଜ୍ଜ୍ୱଳ ଆଖି", "ଗର୍ବିତ




ବାମରେ – ନିଆଣ୍ଡେରଥାଲ୍ ମନୁଷ୍ୟର ଚିତ୍ର, ତା'ର ମୃତ୍ୟୁର ଦଶ ହଜାର ବର୍ଷ ପରେ ଅଙ୍କାଯାଇଛି, ଡାହାଣରେ – ନିଆଣ୍ଡେରଥାଲ୍ ମନୁଷ୍ୟର ଖପୁରି ।

ରୋମୀୟ ନାକ", "କୁଆପକ୍ଷୀ କେଶ" ଆଦି । କିନ୍ତୁ ଭୁଲରେ ସୁଦ୍ଧା ସେମାନେ ତା' ମସ୍ତିସର ଆକାର କଥା କହି ନଥାନ୍ତି ।

ଆମ ଏ କ୍ଷେତ୍ରରେ କଥାଟି କିନ୍ତୁ ଓଲଟା । ଆମ ନାୟକର ମସ୍ତିଷର ଆକାରଟା ହେଉଛି ଆମ ପକ୍ଷରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ତା ଆଖିର ଗହାଣି ଆଉ ବାଳର ରଙ୍ଗ ଅପେକ୍ଷା ଏହା ଆମ ମନରେ ଅଧିକ ଆଗ୍ରହ ସୃଷ୍ଟି କରିଥାଏ ।

ନିଆଣ୍ଡେରଥାଲ୍ ମଣିଷର ଖପୁରିକୁ ଯତ୍ନ ସହକାରେ ପରୀକ୍ଷା କଲ ପରେ ଆମେ ଆନନ୍ଦର ସହିତ କହିପାରୁ ଯେ, ଏହା ପିଥେକ୍ୟାନ୍ଥ୍ରପାସ୍ ମଣିଷର ମସ୍ତିଷଠାରୁ ବୃହତ୍ତର ।

ତେଣୁ ତମେ ଦେଖି ପାରୁଥିବ, ହଜାର ହଜାର ବର୍ଷର କାମ ବୃଥାରେ ଯାଇନି । ଏହା ମଣିଷର ସବୁ କିଛିକୁ ପରିବର୍ତ୍ତନ କରି ଦେଇଛି ଏବଂ ଅନ୍ୟାନ୍ୟ ଅଙ୍ଗ ଅପେକ୍ଷା ତା'ର ହାତ ଏବଂ ମୁଣ୍ଡକୁ ସବୁଠାରୁ ବେଶି ପରିବର୍ତ୍ତନ କରି ଦେଇଛି । କାରଣ ସବୁ କାମ ହାତକୁ କରିବାକୁ ପଡ଼େ ଏବଂ ହାତକୁ ଚଳାଏ ମୁଣ୍ଡ ।

ମଣିଷ ଯେବେଠୁଁ ପଥରରେ ହତିଆର କରୁଥିଲା, ପଥର ଖଣ୍ଡକୁ ନୂଆ ରୂପ ଦାନ କରୁଥିଲା, ସେବେଠୁଁ ସେ ନିଜକୁ ଏବଂ ତା'ର ଆଙ୍ଗୁଳିଗୁଡ଼ିକୁ କ୍ରମଶଃ ବଦଳେଇବାରେ ଲାଗିଥିଲା । ପଥରକୁ କଟାଛଟା ଏବଂ ଘଷାଘଷି କରିବା ଫଳରେ ତା'ର ଆଙ୍ଗୁଳିଗୁଡ଼ିକ ଆହୁରି ଚଞ୍ଚଳ ଏବଂ ଦକ୍ଷ ହେଲା । ତା'ର ମସ୍ତିଷ ମଧ୍ୟ ବଦଳିବାରେ ଲାଗିଥିଲା ଏବଂ ଜଟିଳ ହେଉଥିଲା ।

ତେଣୁ ତୁମେ ନିଆଣ୍ଡେରଥାଲ୍ ମଣିଷକୁ ଦେଖିଲେ ମାଙ୍କଡ଼-ମଣିଷ ବୋଲି କହି ପାରିବ ନାହିଁ ।

ତଥାପି ତା'ର ଅନେକ ମେଳ ଥିଲା ମାଙ୍କଡ଼-ମଣିଷ ସହିତ ।

ତା'ର ନୀଚ କପାଳ ଆଖି ଉପରକୁ ନଇଁ ଆସିଥିଲା । ତା'ର ଶ୍ୱାନ ଦାନ୍ତଗୁଡ଼ାକ ଅନ୍ୟାନ୍ୟ ଦାନ୍ତ ସହିତ କଣେଇକି ରହୁଥିଲା ଏବଂ ବାହାରକୁ ବାହାରି ପଡ଼ୁଥିଲା ।

ତା'ର ଚିବୁକ ଆଉ କପାଳ ଆଡ଼ୁ ଏବଂ ସେ ଆମଠାରୁ ଅନେକ ଫରକ ଦେଖା ଯାଉଥିଲା । ତା'ର କପାଳଟା ତଳକୁ ନଇଁ ଆସିଥିଲା ଏବଂ ଚିବୁକ ବୋଲି କିଛି ନଥିଲା କହିଲେ ଚଳେ ।

ତା'ର ନୀଚ କପାଳବିଶିଷ୍ଟ ମୁଣ୍ଡର ଖପୁରିରେ ଯେଉଁ ମସ୍ତିଷ୍କ ଥିଲା ସେଥିରେ କେତେକ ବିଭାଗ ନଥିଲା, ଯେଉଁଗୁଡ଼ିକ ଆଧୁନିକ ମଣିଷର ମସ୍ତିଷ୍କରେ ରହିଛି । ତଳିପାଟି ଏବଂ ଓଠ ଢାଲୁ ହୋଇ ଓହଳି ପଡ଼ିଥିବାରୁ ମଣିଷ ପରି ଭାଷା କହିବା ତା ପକ୍ଷରେ ସମ୍ଭବ ହେଉ ନଥିଲା ।

ଏହି ଭଳି କପାଳ ଏବଂ ଚିବୁକ ଥିବା ମଣିଷ ପକ୍ଷରେ ଆମ ଭଳି କଥା କହିବା ଏବଂ ଚିନ୍ତା କରିବା ସମ୍ଭବ ନୁହଁ ।

ତଥାପି, ପ୍ରାଗୈତିହାସିକ ମଣିଷକୁ କଥା କହିବାକୁ ପଡ଼ିଥିଲା । ଏକାଠି ମିଳି କାମ କଲା ବେଳେ ସେମାନଙ୍କୁ କାମଟି ସଂପର୍କରେ ପ୍ରଥମେ ଏକମତ ହେବାକୁ ପଡ଼େ । ମଣିଷ ତ ଅପେକ୍ଷା କରି ପାରି ନଥାନ୍ତା ତା'ର କପାଳ ଉନ୍ନତ ହେଲା ପର୍ଯ୍ୟନ୍ତ ଏବଂ ତା'ର ତଳିପାଟି ଉପରକୁ ଉଠିଲା ପର୍ଯ୍ୟନ୍ତ, ସେମିତି କରିଥିଲେ ତାକୁ ଅପେକ୍ଷା କରିବାକୁ ପଡ଼ିଥାନ୍ତା ହଜାର ହଜାର ବର୍ଷ ।

କିନ୍ତୁ ସେ ଅନ୍ୟମାନଙ୍କୁ ତା'ର ମନୋଭାବ କିପରି ଜଣାଉଥିଲା ?

ଖୁବ୍ ବେଶି ହେଲେ, ନାନା, ଅଙ୍ଗଭଙ୍ଗି ଏବଂ ଇଙ୍ଗିତ ଦ୍ୱାରା ସେ ତା'ର ମନୋଭାବ ପ୍ରକାଶ କରୁଥିଲା । ସେ ପର୍ଯ୍ୟନ୍ତ କଥା କହିବାର ବିଶେଷ ଅଙ୍ଗଗୁଡ଼ିକ ତା'ର ବିକାଶ ଲାଭ କରି ନଥିଲା, ତେଣୁ ସେ ତା'ର ହାତ, ମୁହଁର ମାଂସପେଶୀ, କାନ୍ଧ ଏବଂ ପାଦକୁ ବ୍ୟବହାର କରୁଥିଲା ଏହି ଉଦ୍ଦେଶ୍ୟରେ ।

ତୁମେ କେବେ କୌଣସି କୁକୁର ସହିତ କଥା କହିଛ ? କୁକୁର ଯେତେବେଳେ ତା ମୁନିବକୁ କିଛି କହିବାକୁ ଚାହେଁ, ସେ ତା'ର ଆଖିକୁ ଚାହିଁ ରହେ, ନାକରେ ତାକୁ ଠେଲେ, ତା କୋଳରେ ଥାବାକୁ ନେଇ ଥୁଏ, ଲାଙ୍ଗୁଡ଼ ହଲାଏ, ଉତ୍ତେଜିତ ହୋଇ ଆମୁଡ଼ି ପକାଏ । କଥା କହି ପାରୁ ନଥିବାରୁ ବିଚାରି ତା'ର ସାରା ଦେହଟାକୁ ଦେଇ ମନର ଭାବ ପ୍ରକାଶ କରେ ।

ପ୍ରାଗୈତିହାସିକ ମଣିଷ ଜାଣି ନଥିଲା କିପରି କଥା କହିବାକୁ ହୁଏ । କିନ୍ତୁ ତା'ର ଥିଲା ହାତ, ସେ ତାକୁ ବ୍ୟବହାର କରୁଥିଲା ନିଜକୁ ପ୍ରକାଶ କରିବା ପାଇଁ । ସେ ତା'ର ହାତ ଦେଇ କାମ କରୁଥିଲା, କିନ୍ତୁ ସେ କାମ ପାଇଁ ଦରକାର ପଡ଼ୁଥିଲା ଏକ ଭାଷା ମଧ୍ୟ ।

ମନେ କର ମଣିଷ ଚାହୁଁଥିଲା କିଛି ଗୋଟାଏ କାଟିବାକୁ । ହାତ ଦେଇ କାଟିବାର ଭଙ୍ଗି କରି ସେ ବୁଝାଇ ଦେଉଥିଲା । କିଛି ଗୋଟାଏ ଦେବାକୁ କହିବା ପରିବର୍ତ୍ତେ ସେ ହାତକୁ ଆଗେଇ ଦେଉଥିଲା । "ମୋ ଆଡ଼କୁ ଆସ" ବୋଲି ନକହି ପାରି ସେ ହାତକୁ ନିଜ ଆଡ଼କୁ ଦେଖାଉ ଥିଲା । ଏହା ଛଡ଼ା ହାତକୁ ସାହାଯ୍ୟ କରି, ଅନ୍ୟର ଦୃଷ୍ଟି ଆକର୍ଷଣ କରିବା ପାଇଁ ଏବଂ ତା ହାତକୁ ଲକ୍ଷ୍ୟ କରିବା ପାଇଁ ସେ ଚିତ୍କାର କରୁଥିଲା, ଗୁଁ ଗୁଁ ହେଉଥିଲା ।

ତୁମେ ପଚାରି ପାର, ଆମେ ଏସବୁ କେମିତି ଜାଣିଲୁ ?

ମାଟିତଳୁ ମିଳୁଥିବା ପ୍ରତିଟି ଭଙ୍ଗା ପଥର ହତିଆର ସିନା ଅତୀତର କ୍ଷୁଦ୍ର କ୍ଷୁଦ୍ର ଅଂଶ, କିନ୍ତୁ ସେସବୁ ଭଙ୍ଗଭଙ୍ଗା ଅଙ୍ଗଭଙ୍ଗିକୁ ଆମେ କେଉଁଠୁ ଖୋଜିକି ପାଇବା ? ସେମାନଙ୍କ ହାତସବୁ ତ କେବେଠୁ ଧୂଳି ପାଲଟି ଗଲଣି, ସେସବୁ ହାତର ଭଙ୍ଗିକୁ ଆମେ ପୁଣି କିପରି ତିଆରି କରିବା ଏବେ ?

ସେଇସବୁ ପ୍ରାଗୈତିହାସିକ ମଣିଷ ଯେହେତୁ ଆମର ପୂର୍ବପୁରୁଷ, ତେଣୁ ଉତ୍ତରାଧିକାର ସୂତ୍ରରେ ଆମେ ସେମାନଙ୍କଠାରୁ କିଛି କିଛି ଜିନିଷ ଲାଭ କରିଛେ ।

## କଥାକୁହା ହାତ ।

କେତେ ବର୍ଷ ପୂର୍ବେ ଉତ୍ତର ଆମେରିକାର ଜଣେ ଲୋହିତ ଭାରତୀୟ ଲେନିନ୍‌ଗ୍ରାଡ୍ ଦେଖିବାକୁ ଆସିଥିଲେ । ସେ ନେଇ୍ ପେରସେ ଜାତିର ଲୋକ (ଯା'ର ଅର୍ଥ ହେଉଛି ତୀକ୍ଷ୍ଣ ନାକ) । ସେ ମୋଟେ ଜେମସ୍ ଫେନିମୋର କୁପରଙ୍କ ବହୁବର୍ଣ୍ଣିତ କୁଠାରଧାରୀ ଆଦିମ ଅଧିବାସୀଙ୍କ ଭଳି ଦିଶୁ ନଥାନ୍ତି ।

ସେ ଟାଇଆ ନଥିଲେ କି ମୁଣ୍ଡରେ ପକ୍ଷୀପର ଖଚିତ ଟୋପି ବି ନଥିଲା । ସୁନ୍ଦର ସାହେବୀ ପୋଷାକ ସେ ପିନ୍ଧିଥିଲେ ଏବଂ ଇଂରେଜୀ ଆଉ ତାଙ୍କ ମାତୃଭାଷା ସମାନ ଭାବେ ଅନର୍ଗଳ କହି ପାରୁଥିଲେ ।

ଏହା ଛଡ଼ା ସେ ଆହୁରି ଆଦିମ ଅଧିବାସୀମାନଙ୍କ ମଧ୍ୟରେ କଥିତ ଆଉ ଏକ ପୁରୁଣା ଭାଷାକୁ ମଧ୍ୟ ଆୟତ୍ତ କରିଥିଲେ ।

ଏହି ଭାଷାଟି ହେଉଛି ପୃଥିବୀରେ ସବୁଠାରୁ ସରଳ ଭାଷା । ତୁମେ ଯଦି ଏହି ଭାଷାଟି ଶିଖିବାକୁ ଚାହୁଁଥାଅ, ତେବେ ତୁମକୁ ସେ ଭାଷାର ବ୍ୟାକରଣସୂତ୍ର, ଉଚ୍ଚାରଣ, ଅବ୍ୟୟ, ବିଶେଷଣ ଆଦି ଶିଖିବାକୁ ପଡ଼ିବ ନାହିଁ । ଏସବୁ ତ ଆମମାନଙ୍କ ମଧ୍ୟରେ ଅନେକଙ୍କ ପକ୍ଷରେ ମୁଣ୍ଡ ବଥେଇବାର କାରଣ ହୋଇଥାଏ । ଏହି ଭାଷାକୁ ଆୟତ୍ତ କରିବା ଅପେକ୍ଷା ସଠିକ ଭାବେ ଉଚ୍ଚାରଣ କରିବାଟା ସହଜ, କାରଣ ତମକୁ ତ କିଛି ଉଚ୍ଚାରଣ କରିବାକୁ ପଡ଼ିବ ନାହିଁ ।

ଭଦ୍ରଲୋକ ଯେଉଁ ତୃତୀୟ ଭାଷାଟି କହୁଥିଲେ, ସେଟି ଶବ୍ଦରେ ନୁହେଁ, ଏହା ହେଉଛି ଠାରର ଭାଷା ।

ଏହି ଭାଷାରେ ଏକ ଅଭିଧାନ ସମ୍ଭବତଃ ଏଇ ଭଳି ଦିଶିବ :

## ଠାର ଭାଷାର ଅଭିଧାନରୁ ପୃଷ୍ଠାଟିଏ ।

ଧନୁ – ଗୋଟିଏ ହାତ ଗୋଟିଏ କାଳ୍ପନିକ ଧନୁକୁ ଧରିଥାଏ ଏବଂ ଅନ୍ୟ ହାତଟି ତହିଁରେ ଟଙ୍କାର ଦିଏ ।

ତମ୍ବୁ – ଆଙ୍ଗୁଳି ଛନ୍ଦିଲେ ତମ୍ବୁଟିଏ ହୁଏ ।

ଧଳା ଲୋକ – କପାଳ ଉପରେ ହାତ ରଖିଲେ ଟୋପିର ଧାରକୁ ବୁଝାଏ ।

ଗଧିଆ – କାନ ପାଖରେ ଦୁଇ ହାତକୁ କାନ ପରି କରି ଦେଖାଇବା ।

ଠେକୁଆ – ହାତର ଦୁଇଟି ଆଙ୍ଗୁଳିକୁ ମେଲେଇକି ବୁଲେଇଲେ ଠେକୁଆର ଲମ୍ବା କାନ ଆଉ ଗୋଲ ପିଠିକୁ ବୁଝାଇବ ।

ମାଛ – ଆଙ୍ଗୁଳିକୁ ଏକାଠି କରି ହାତକୁ ଅଙ୍କେଇ ବଙ୍କେଇ ବୁଲାଇଲେ ମାଛ ପହଁରିବା ଆଉ ଲାଞ୍ଜ ହଲେଇବାକୁ ବୁଝାଏ ।

ବେଙ୍ଗ – ପାଞ୍ଚ ଆଙ୍ଗୁଳି ଟିପକୁ ଏକାଠି ଏବଂ ଅଲଗା କରି ନଚେଇବା ।

ମେଘ – ମୁଣ୍ଡ ଉପରେ ଦୁଇଟି ହାତମୁଠିକୁ ଧରିଲେ ଖଣ୍ଡେ ମେଘକୁ ବୁଝାଏ ।

ବରଫ – ମୁଣ୍ଡ ଉପରେ ଦୁଇ ହାତମୁଠିକୁ ଧରି ଆଙ୍ଗୁଳିଗୁଡ଼ିକୁ ଧୀରେ ଧୀରେ ଖୋଲିବାକୁ ହେବ ଏବଂ ବରଫ ବିନ୍ଦୁ ପରି ତଳକୁ ଖସେଇ ନେବାକୁ ହେବ ।

ବର୍ଷା – ଦୁଇ ହାତମୁଠିକୁ ଉପରେ ଧରିବାକୁ ହେବ, କିନ୍ତୁ ଆଙ୍ଗୁଳିଗୁଡ଼ିକୁ ଶୀଘ୍ର ତଳେଇ ନେବାକୁ ହେବ ।

ତାରକା – ଦୁଇଟି ଆଙ୍ଗୁଳି ଯୋଡ଼ି ହୋଇ ଯାଇ ମୁଣ୍ଡ ଉପରେ ପୁଣି ଛଡ଼ାଛଡ଼ି ହୋଇ ଯିବେ ତାରାର ମିଞ୍ଜିକୁ ଦେଖାଇବା ପାଇଁ ।

ଏସବୁରୁ ଜଣାଯାଉଛି ପ୍ରତ୍ୟେକଟି ଶବ୍ଦ ହେଉଛି ପବନରେ ହାତ ଦ୍ୱାରା ଅଙ୍କା ଛବି ।

ଅତି ପ୍ରାଚୀନ ଲେଖାସବୁ ଅକ୍ଷର ଦ୍ୱାରା ଲେଖା ଶବ୍ଦାବଳୀ ନୁହଁ । ସେସବୁ ଥିଲା ଚିତ୍ରାବଳୀ । ଠିକ୍ ସେଇ ଭଳି ଅତି ପ୍ରାଚୀନ ଇଙ୍ଗିସବୁ ଥିଲା ଛବି ଶବ୍ଦ ।

ତେଣୁ, ଆମେରିକାର ଆଦିମ ଅଧିବାସୀମାନଙ୍କର ଠାର ଭାଷାଟା ପ୍ରାଗୈତିହାସିକ ମଣିଷର ଭାଷା ନୁହଁ । ବର୍ତ୍ତମାନ ଆମେରିକାର ଆଦି ବାସୀମାନଙ୍କ ଭାଷାରେ ଏଭଳି ଅନେକ ଶବ୍ଦ ରହିଛି, ଯିଏକି ପ୍ରାଗୈତିହାସିକ ଭାଷାରେ ନଥିଲା । ସଂପ୍ରତି ପ୍ରଚଳିତ କେତେକ 'ଛବି ଶବ୍ଦ'ର ଉଦାହରଣ ଦେଉଛି :

ମୋଟର ଗାଡ଼ି – ହାତ ଦୁଇଟିକୁ ବୁଲାଇ ଚକ ପରି ହୁସ୍ ହୁସ୍ କରି ଆଗକୁ ଯିବା, ତା'ପରେ ଗାଡ଼ିର ଷ୍ଟିଅରିଂ ବୁଲାଇବାର ଭଙ୍ଗି ।

ରେଳଗାଡ଼ି – ଦୁଇ ହାତକୁ ଚକ ଭଳି ବୁଲାଇ ଉପରକୁ ହାତ ଆଉ ବାହୁଦ୍ୱାର ଢେଉ ଭଳି କରିବା – ଏହା ଦ୍ୱାରା ଇଂଜିନ୍‌ରୁ ଧୂଆଁ ବାହାରିବାକୁ ବୁଝାଇବ ।

ଏସବୁ ହେଉଛି ଅତି ଆଧୁନିକ ଠାର । କିନ୍ତୁ ଠାର ଭାଷାର ଅଭିଧାନରେ ଆମେ ଏପରି କେତେକ ଭଙ୍ଗି ପାଇବା, ଯିଏକି ପ୍ରାଗୈତିହାସିକ ଯୁଗରୁ ସମ୍ଭବତଃ ଏ ପର୍ଯ୍ୟନ୍ତ ଚଳି ଆସିଛି :

ନିଆଁ – ହାତ ଆଉ ବାହୁର ଉପରକୁ ଢେଉ ଭଳି ଗତି – ଶିବିରାଗ୍ନିରୁ ବାହାରୁ ଥିବା ଧୂଆଁକୁ ବୁଝାଏ ।

କାମ – ପବନକୁ ହାତରେ କାଟିବା ।

କିଏ କହି ପାରିବ ଯେ, ପ୍ରାଗୈତିହାସିକ ମଣିଷ 'କାମ କରିବା' କଥା କହିଲା ବେଳେ ପବନକୁ ହାତରେ କାଟୁଥିଲେ ବୋଲି ।

## ଆମର ନିଜସ୍ୱ ଠାର ଭାଷା ।

ଆମେ ନିଜ ପାଇଁ ଏକ ଠାର ଭାଷା ସାଇତି ରଖିଛେ ।

ଆମେ 'ହଁ' କହିବାକୁ ଚାହିଁଲେ, ସବୁବେଳେ ଆମେ 'ହଁ' ବୋଲି କହେନା । କେବଳ ମୁଣ୍ଡକୁ ହଲାଇ ଦିଏଁ ।

'ସିଆଡ଼େ' ବୋଲି କହିଲ ବେଳେ ଆଙ୍ଗୁଳି ଦେଖାଦିଏ ସେଇ ଆଡ଼କୁ । ଏପରିକି ଆମର ଏକ କଥାକୁହା ଆଙ୍ଗୁଳି ଅଛି, ତାକୁ ଆମେ ସୂଚନା ଦେଉଥିବା ଆଙ୍ଗୁଳି ବୋଲି କହେଁ ।

କାହାକୁ ସମ୍ଭାଷଣ ଜଣାଇଲେ ଆମେ ମୁଣ୍ଡ ନୁଆଁଇ ଦିଏଁ, ହାତ ମିଳାଏଁ, କାନ୍ଧକୁ ନଗ୍ଲଏଁ, କାନ୍ଧକୁ ଟେକି ଦିଏଁ, ହାତକୁ ଛଡ଼ା ଛଡ଼ା କରି ଦେଖାଏଁ, ଓଠକୁ କାମୁଡ଼ି ଦିଏଁ, କାହା ଆଡ଼କୁ ଦେଖାଇ ଆଙ୍ଗୁଳି ହଲାଏଁ, ଟେବୁଲ ପିଟେ, ଗୋଡ଼ ପାପୁଲିକୁ କଗ୍ଲଡ଼େ, ହାତକୁ ହଲାଏ, ଛାତି ଉପରେ ହାତକୁ ଗ୍ଲପି ଧରେ, ହାତ ବଢ଼ାଇ ଦିଏଁ, ଠାରିକି ଚୁମା ଦିଏଁ, ଆଦି ।

ଏସବୁ କଲାବେଳେ ଆମେ ଅନେକ କଥା କହିଯାଏ, କିନ୍ତୁ ଗୋଟିଏ ହେଲେ ଶବ୍ଦ ବ୍ୟବହାର କରେନା ।

ଏବଂ ଏହି 'ଶବ୍ଦହୀନ କଥା', ଠାର ଭାଷାର ମୃତ୍ୟୁ ନାହିଁ । ଏ କଥା ସତ ଯେ, ଏଥିରେ କେତେକ ସୁବିଧା ଅଛି । ବେଳେ ବେଳେ ଗୋଟିଏ ଭଙ୍ଗି ଦ୍ୱାରା ଅନେକ ଶବ୍ଦକୁ ଆମେ ପ୍ରକାଶ କରି ପାରିଥାଏଁ । ସର୍ବୋତ୍‌କୃଷ୍ଟ ଶିଳ୍ପୀ ମଧ୍ୟ ନୀରବରେ ନାଟକ କରି ପାରନ୍ତି—ଅଧଘଣ୍ଟାକ ମଧ୍ୟରେ ତାଙ୍କର ଆଖିପତା, ଆଖି ଏବଂ ଓଠ ଦୁଇଟି ଶହେଟି ଶବ୍ଦ ଆମକୁ କହି ଦେଇ ପାରେ ।

କିନ୍ତୁ ଠାର ଭାଷାକୁ ଆମ କଥାରେ ବ୍ୟବହାର କରିବାଟା ଅବଶ୍ୟ ଭଲ ନୁହଁ ।

ଭାଷା ସାହାଯ୍ୟରେ ସହଜରେ କିଛି ପାରିଲ ବେଳେ ହାତ ଗୋଡ଼ ହଲେଇକି କହିବାର କ'ଣ ଦରକାର ଅଛି ! ଆମେ ତ ସେଇ ପ୍ରାଗୈତିହାସିକ ମଣିଷ ନୁହେଁ । ଗୋଡ଼ କଗ୍ଲଡ଼ିବା, କୌଣସି ଜିନିଷ ଆଡ଼କୁ ହାତ ଠାରିବା ଆଦି ଅଭ୍ୟାସକୁ ଯେତେ ଶୀଘ୍ର ଭୁଲି ଯିବା ସେତେ ଭଲ ।

ତଥାପି ଏଭଳି ଏକ ସମୟ ଥିଲ, ଯେତେବେଳେ ଏହି ନିରବ ଭାଷା ଥିଲ ମନର ଭାବ ପ୍ରକାଶ କରିବାର ଏକମାତ୍ର ଉପାୟ ।

କେବଳ ମଣିଷ ନୁହଁ, ଦୁଇଟି ଜାହାଜ ମଧ୍ୟରେ ସଂକେତ ସାହାଯ୍ୟରେ "କଥାବାର୍ତ୍ତା" ହେବା କେବେ ଦେଖିଛ ? ପବନ, ଢେଉ ଏବଂ ବେଳେ ବେଳେ ତୋପ କମାଣର ଶବ୍ଦ ଭିତରେ କଥା ଦ୍ୱାରା ଅନ୍ୟକୁ ନିଜ ମନ କଥା ଜଣେଇ ପାରେନା, ସେଠାରେ ତାକୁ ପଗ୍ଲହର୍ଣ୍ଣ ବ୍ୟବହାର କରିବାକୁ ପଡ଼େ । ବେଳେ ବେଳେ ଆମ କାନ ବି ଠିକ୍ ଭାବେ କାମ କରି ପାରେନା, ସେତେବେଳେ ଆମକୁ ଆମର ଆଖି ଉପରେ ନିର୍ଭର କରିବାକୁ ପଡ଼େ ।

ତୁମେମାନେ ହୁଏତ ଅନେକ ସମୟରେ ଠାର ଭାଷା ବ୍ୟବହାର କରୁଥିବ ।

କ୍ଲାସରେ ପାଠ ପଢ଼ିଲା ବେଳେ ଶିକ୍ଷକଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଚାହିଁଲେ ତୁମେ ହାତ ଉପରକୁ ଟେକି ଥାଅ । ଏଭଳି କରିବାଟା ଠିକ୍ । କାରଣ ଚାଳିଶ ପଚାଶ ଜଣ ପିଲା ଏକାଠି ଯଦି କଥା କୁହନ୍ତି ତେବେ ସେଟା କ୍ଲାସ ନହୋଇ ହାଟ ପାଲଟି ଯିବ ।

ତେଣୁ ଆମେ ଦେଖୁଛେ ଠାର ଭାଷାର ମଧ୍ୟ କେତେକ ଭଲ ଦିଗ ରହିଛି । ସେଇଥି ପାଇଁ ଏହା ହଜାର ହଜାର ବର୍ଷ ଧରି ରହି ଆସିଛି ଏବଂ ଏବେ ବି ତା'ର ଆବଶ୍ୟକତା ଶେଷ ହୋଇନି ।

କଥା ଶେଷକୁ ଠାର ଭାଷା ବିରୁଦ୍ଧରେ ଜୟ ଲାଭ କରିଛି, କିନ୍ତୁ ସେ ବିଜୟ ସଂପୂର୍ଣ୍ଣ ବିଜୟ ନୁହଁ । ଏବେ ସେ ପରାଜିତ ବିଜୟୀର କ୍ରୀତ ଦାସରେ ପରିଣତ ହୋଇଛି । ତେଣୁ କରି କେତେକ ଜାତିମାନଙ୍କ ମଧ୍ୟରେ ଠାର ଭାଷା ପ୍ରଚଳିତ ଚାକର ବାକର ବା ଯେଉଁମାନେ ଟିକେ ନ୍ୟୁନ ବୋଲି ଗଣ୍ୟ, ସେମାନଙ୍କ ଭିତରେ ।

ଅକ୍ଟୋବର ମହାବିପ୍ଳବ ପୂର୍ବରୁ କକେସସ୍ ଅଞ୍ଚଳର ଆର୍ମେନିଆ ଗ୍ରାମମାନଙ୍କରେ ସ୍ତ୍ରୀଲୋକମାନଙ୍କୁ ସେମାନଙ୍କ ସ୍ୱାମୀଙ୍କ ବ୍ୟତୀତ ଅନ୍ୟ କାହା ସହିତ କଥା କହିବାକୁ ଦିଆଯାଉ ନଥିଲା । ଅନ୍ୟ କାହା ସହିତ କିଛି କହିବାକୁ ଚାହିଁଲେ ତାକୁ ଠାର ସାହାଯ୍ୟରେ ମନୋଭାବ ଜଣାଇବାକୁ ପଡ଼ୁଥିଲା ।

ସିରିଆ, ଇରାନ ସମେତ ପୃଥିବୀର ଅନ୍ୟାନ୍ୟ ଅଞ୍ଚଳରେ ମଧ୍ୟ ଠାର ଭାଷାର ପ୍ରଚଳନ ଥିଲା ।

ଦୃଷ୍ଟାନ୍ତ ସ୍ୱରୂପ, ଇରାନର ଶାହଙ୍କ ପ୍ରାସାଦରେ ଚାକରମାନଙ୍କୁ କେବଳ ଠାର ଭାଷା ସାହାଯ୍ୟରେ କଥା କହିବାକୁ ହେଉଥିଲା । ସମପକ୍ଷ ଲୋକ ନହେଲେ କଥା କହିବାର ଅଧିକାର ନଥିଲା । ଏହି ସବୁ ହତଭାଗାମାନେ ପ୍ରକୃତ ଅର୍ଥରେ କଥା କହିବାର ସ୍ୱାଧୀନତାରୁ ବଞ୍ଚିତ ହୋଇଥିଲେ ।

ତେଣୁ ଏବେ ବି ମଧ୍ୟ ସୁଦୂର ଅତୀତର ଅବଶେଷାଂଶ ଦେଖିବାକୁ ମିଳେ ।

## ମଣିଷ ମନର ଜନ୍ମ କଥା ।

ଜଙ୍ଗଲର ପ୍ରତିଟି ପ୍ରାଣୀକୁ ଚାରିଆଡ଼ୁ ଆସୁଥିବା ହଜାର ପ୍ରକାରର ସଂକେତ ଶୁଣିବାକୁ ହୁଏ, ନଜର ରଖିବାକୁ ପଡ଼େ ।

ଡାଳ ଖଣ୍ଡେ ଭାଙ୍ଗି ପଡ଼ିଲେ, ସେ ଭାବେ କାଳେ କୌଣସି ଶତ୍ରୁ ଆସିଗଲା, ତେଣୁ ସେ ପଳେଇ ଯିବା ପାଇଁ ବା ନିଜକୁ ରକ୍ଷା କରିବା ପାଇଁ ପ୍ରସ୍ତୁତ ହୋଇ ଯାଏ ।

ମେଘର ଗଡ଼ଗଡ଼ି, ଜଙ୍ଗଲ ମଧ୍ୟରେ ପବନ ଯଦି ସଁ ସଁ ହୋଇ ବହେ, ଗଛର ପତ୍ର ସବୁ ଯଦି ଖଡ଼ ଖଡ଼ ଶୁଭେ, ଜନ୍ତୁମାନେ ଆସନ୍ନ ଝଡ଼ରୁ ରକ୍ଷା ପାଇବା ପାଇଁ ବସା ମଧ୍ୟରେ ଲୁଚି ଯାଆନ୍ତି ବା ଗାତ ଭିତରେ ପଶି ଯାଆନ୍ତି ।

କୌଣସି ଶିକାରର ଗନ୍ଧ ଯଦି ପଗ୍ଧ ପତ୍ର ଆଉ ଛତୁର ଗନ୍ଧ ସହିତ ମିଶି ନାକରେ ଆସି ବାଜେ, ତେବେ ଶିକାରୀ ଜନ୍ତୁଟି ସେ ଗନ୍ଧକୁ ଶୁଙ୍ଘି ଶୁଙ୍ଘି ତାକୁ ଅନୁସରଣ କରେ ।

ପ୍ରତିଟି ଖଡ଼ ଖଡ଼ ଶବ୍ଦ, ପ୍ରତିଟି ଗନ୍ଧ, ଘାସ ଉପରେ ପ୍ରତିଟି ପାଦଚିହ୍ନ, ପ୍ରତିଟି ଚିତ୍କାର ବା ସୁସୁରି ଅର୍ଥ ହେଉଛି ଏପରି କିଛି, ଯାହା ପ୍ରତି ସଙ୍ଗେ ସଙ୍ଗେ ଦୃଷ୍ଟି ଦେବାର କଥା ।

ପ୍ରାଗୈତିହାସିକ ମଣିଷ କାନରେ ମଧ୍ୟ ବହିର୍ଜଗତର ସଂକେତ ଆସି ବାଜିଥିଲ । କିନ୍ତୁ ଅବିଳମ୍ବେ ସେ ଆଉ ଏକ ଭିନ୍ନ ଏକ ସଂକେତକୁ ବୁଝିବାକୁ ଶିଖିଲ । ସେ ସଂକେତସବୁ ହେଉଛି ତା ନିକଟକୁ ତା ଗୋଷ୍ଠୀର ଲୋକେ ପଠାଉଥିବା ସଂକେତସବୁ ।

ମନେ କର କୌଣସି ଏକ ପ୍ରାଗୈତିହାସିକ ଶିକାରୀ ବଣ ଭିତରେ ଏକ ହରିଣର ସନ୍ଧାନ ପାଇଗଲ । ସେ ସଙ୍ଗେ ସଙ୍ଗେ ତା ପଛରେ ଥିବା ଅନ୍ୟମାନଙ୍କୁ ହାତ ଠାରିକି ଜଣେଇ ଦେଲ । ସେମାନେ ହୁଏତ ହରିଣଟିକୁ ଦେଖି ନାହାନ୍ତି, କିନ୍ତୁ ତା'ର ସଂକେତଟା ଅନ୍ୟମାନଙ୍କୁ ସତର୍କ କରି ଦେଲ । ସେମାନେ ହତିଆର ନେଇ ତିଆରି ହୋଇଗଲେ । ସତେ ଯେମିତି ସେମାନେ ହରିଣଟିର ବଡ଼ ବଡ଼ ଶିଙ୍ଗ ଆଉ ଲମ୍ବା କାନକୁ ଦେଖି ପକାଇଛନ୍ତି ।

ଜନ୍ତୁମାନେ ଗ୍ଲଲିଗଲ ବେଳେ ଯେଉଁ ଚିହ୍ନ ମାଟି ବା ଘାସ ଉପରେ ପଡ଼ିଥାଏ, ସେଟା ମଧ୍ୟ ଏକ ସଂକେତ ।

ସେଇ ଚିହ୍ନଟାକୁ ଦେଖି ଜଣେ ଶିକାରୀ ହାତ ଠାରି ଅନ୍ୟମାନଙ୍କୁ ଜଣେଇ ଦେବାଟା ହେଉଛି ସଂକେତର ସଂକେତ ।

ଯେତେ ଥର କୌଣସି ଶିକାରୀ ମାଟି ଉପରେ ଏଭଳି ଏକ ଚିହ୍ନ ଦେଖିବାକୁ ପାଇବ ବା ବୁଦା ତଳେ ତଳେ ଘୋଷାରି ହୋଇ ଯାଉଥିବା କୌଣସି ପ୍ରାଣୀର ଖଡ଼ ଖଡ଼ ଶବ୍ଦ ଶୁଣିବାକୁ ପାଇବ, ସେ ସଙ୍ଗେ ସଙ୍ଗେ ସେତେ ଥର ସେ ସଂକେତର ସଂକେତ ଅନ୍ୟ ଶିକାରୀମାନଙ୍କୁ ଜଣାଇ ଦେବ ।

ଏହି ଭାବେ ମଣିଷର କଥା ଆଉ ଏକ ସଂକେତରେ ପରିଣତ ହେଲ । ପ୍ରକୃତିର ସଂକେତଗୁଡ଼ିକ ସହିତ ଏହା ଯୋଗ ହେଲ, ଯେଉଁ ସବୁ ସଂକେତ ଜରିଆରେ ଏକ ଗୋତ୍ରର ଲୋକେ ପରସ୍ପରକୁ ସଂକେତ ଦେଉଥିଲେ ।

ବିଖ୍ୟାତ ରୁଷ୍ ବିଜ୍ଞାନୀ ଇଭାନ୍ ପାଭ୍‌ଲଭ୍ ତାଙ୍କର ଏକ ରଚନାରେ କହିଥିଲେ "ମଣିଷର କଥା ହେଉଛି ସଂକେତର ସଂକେତ ମାତ୍ର" ।

ପ୍ରଥମେ ପ୍ରଥମେ ଏହି କଥା ସଂକେତଗୁଡ଼ିକ ଥିଲା ଚିତ୍କାର ଏବଂ ଠାର । ସେସବୁକୁ ଆଖି ଆଉ କାନ ମାରଫତ୍‌ରେ ଗ୍ରହଣ କରି ମସ୍ତିଷ୍କକୁ ପଠାଇ ଦେଉଥିଲା । ମସ୍ତିଷ୍କଟା ଯେମିତି ଏକ କେନ୍ଦ୍ରୀୟ ଟେଲିଫୋନ୍ କାର୍ଯ୍ୟାଳୟ । ମସ୍ତିଷ୍କ ଯେତେବେଳେ କୌଣସି ସଂକେତର ସଂକେତ ପାଉଥିଲା – ଯେପରି ଧର, କୌଣସି ପଶୁ ଆସୁଛି – ସେ ସଙ୍ଗେ ସଙ୍ଗେ ଆଦେଶ ପଠାଇ ଦେଉଥିଲା : ହାତ ତୋ ବର୍ଛାଟାକୁ ଶକ୍ତ କରି ଧର ; ଆଖି ବୁଦାକୁ ଭଲ କରି ଲକ୍ଷ୍ୟ କର ; କାନ ପ୍ରତିଟି ସଁ ସଁ ଆଉ ଖଡ଼ ଖଡ଼ ଶବ୍ଦକୁ ମନ ଦେଇ ଶୁଣ । ପଶୁଟାକୁ ସେ ପର୍ଯ୍ୟନ୍ତ କେହି ଦେଖି ନି କି ତା ସ୍ୱର ଶୁଣିନି, କିନ୍ତୁ ଶିକାରୀଟି ପୂରା ତିଆର ହୋଇ ଗଲାଣି ।

ଯେତେ ବେଶି ଭଙ୍ଗି ଏବଂ ଚିତ୍କାରର ଢଙ୍ଗ ବଢ଼ିଲା, ଯେତେ ବେଶି "ସଂକେତର ସଂକେତ" ମସ୍ତିଷ୍କରେ ଯାଇ ପହଞ୍ଚିଲା, ସେତେ ବେଶି "କେନ୍ଦ୍ରୀୟ କାର୍ଯ୍ୟାଳୟର" କାମ ବଢ଼ିଗଲା । ଏହି କେନ୍ଦ୍ରୀୟ କାର୍ଯ୍ୟାଳୟଟି ମଣିଷ ଖପୁରିର ତଳ ଦେଶରେ ଅବସ୍ଥିତ । ତା ଅର୍ଥ, କେନ୍ଦ୍ରୀୟ କାର୍ଯ୍ୟାଳୟକୁ ବଡ଼ ହେବାର ପ୍ରୟୋଜନ ଦେଖା ଦେଲା । ଫଳରେ ମସ୍ତିଷ୍କରେ ଅଧିକରୁ ଅଧିକ ଜୀବ କୋଷ ଗଢ଼ି ଉଠିବାକୁ ଲାଗିଲା ଏବଂ ସେମାନଙ୍କ ମଧ୍ୟରେ ସଂପର୍କ ମଧ୍ୟ ଜଟିଳରୁ ଜଟିଳତର ହେବାକୁ ଲାଗିଲା । ମସ୍ତିଷ୍କର ଆୟତନ ମଧ୍ୟ ବଢ଼ିବାକୁ ଲାଗିଲା ।

ଏହି କାରଣରୁ ନିଆଣ୍ଡେରଥାଲ୍ ମଣିଷର ମସ୍ତିଷ୍କ ପିଥେକ୍ୟାନ୍‌ଥ୍ରପାସ୍ ମଣିଷର ମସ୍ତିଷ୍କଠାରୁ ୪୦୦ରୁ ୫୦୦ ଘନ ସେଣ୍ଟିମିଟର ପର୍ଯ୍ୟନ୍ତ ବଡ଼ ଥିଲା । ତା'ର ମସ୍ତିଷ୍କ ବଢ଼ିବା ସଙ୍ଗେ ସଙ୍ଗେ ପ୍ରାଗୈତିହାସିକ ମଣିଷ ଚିନ୍ତା କରିବା ଶିଖିଲା ।

ସେ ଯେତେବେଳେ କୌଣସି ସଂକେତ ଦେଖିଲା ବା ଶୁଣିଲା, ଯା'ର ଅର୍ଥ ସୂର୍ଯ୍ୟକୁ ବୁଝାଏ, ସେ ସୂର୍ଯ୍ୟ କଥା ଚିନ୍ତା କରିବାକୁ ଆରମ୍ଭ କରି ଦେଲା, ଏପରିକି ରାତିଅଧରେ ମଧ୍ୟ ।

ତାକୁ ଯେତେବେଳେ ସଂକେତ ଦିଆଗଲା ଧାଇଁ ଯାଇ ବାର୍‌ହା ମାରିବା ବର୍ଛା ଘେନି ଆସିବାକୁ, ସେ ସଙ୍ଗେ ସଙ୍ଗେ ସେ ବର୍ଛା କଥା ଚିନ୍ତା କରିନିଏ, ଯଦିଓ ସେତେବେଳେ ସେଟାକୁ ସେ ଦେଖି ପାରୁ ନଥାଏ ।

ଏକା ସାଙ୍ଗରେ କାମ କରୁ କରୁ ମଣିଷ କଥା କହିବାକୁ ଶିଖିଲା, କଥା କହିବାକୁ ଶିଖିବା ସଙ୍ଗେ ସଙ୍ଗେ ସେ ଚିନ୍ତା କରିବାକୁ ଶିଖିଲା ।

ପ୍ରକୃତି ମଣିଷକୁ ମସ୍ତିଷ୍କ ଦାନ କରିନି ଏକ ଉପହାର ଭଳି । ଏହାକୁ ସେ ତା ହାତର ଶ୍ରମ ବଳରେ ଅର୍ଜନ କରିଛି ।

ଜିଭ ଆଉ ହାତ ମଧ୍ୟରେ

ଅଦଳବଦଳ ।

ଯେତେ ଦିନ ପର୍ଯ୍ୟନ୍ତ ମଣିଷର ବେଶି ହତିଆର ନଥିଲା ଓ ଯେତେ ଦିନ ପର୍ଯ୍ୟନ୍ତ ତା'ର ଅଭିଜ୍ଞତା ବେଶି ନଥିଲା ସେ ପର୍ଯ୍ୟନ୍ତ ସହଜ ସଂକେତ ଜରିଆରେ ଜଣେ ନିଜର କର୍ମ କୌଶଳକୁ ଅନ୍ୟ ଜଣକୁ ଶିକ୍ଷା ଦେଇ ପାରୁଥିଲା ।

କିନ୍ତୁ କାମର ଜଟିଳତା ଯେତେ ବଢ଼ିବାକୁ ଲାଗିଲା ସଂକେତ ମଧ୍ୟ ଜଟିଳ ହେବାକୁ ବସିଲା । ପ୍ରତ୍ୟେକଟି ଜିନିଷ ପାଇଁ ଦରକାର ପଡ଼ିଲା ବିଶେଷ ବିଶେଷ ସଂକେତ ଏବଂ ସେ ସଂକେତ ସେ ବସ୍ତୁଟିକୁ ସଠିକ୍ ଭାବେ ଯେପରି ସୂଚାଇ ଦେଉଥିବା ଦରକାର । ସେଇଠୁ ଆରମ୍ଭ ହେଲା ଚିତ୍ର ସଂକେତ । ପ୍ରାଗୈତିହାସିକ ମଣିଷ ପଥରରେ ଜୀବଜନ୍ତୁ, ହତିଆର, ଗଛବୃକ୍ଷ ଏବଂ ଅନ୍ୟାନ୍ୟ ଜିନିଷର ଛବି ଆଙ୍କିଲା ।

ଦୃଷ୍ଟାନ୍ତ ସ୍ୱରୂପ, ତାକୁ ଯଦି ଝିଙ୍କ କଥା ବୁଝାଇବାକୁ ପଡ଼ୁଥିଲା, ତେବେ ସେ ପଥରରେ କେବଳ ଝିଙ୍କର ଚିତ୍ରଟିଏ ଆଙ୍କି ଦେଉନଥିଲା । ତାକୁ କ୍ଷଣକ ପାଇଁ ଝିଙ୍କ ପାଲଟି ଯିବାକୁ ପଡ଼ୁଥିଲା । ସେ ଅନ୍ୟମାନଙ୍କୁ ଦେଖାଉଥିଲା ଝିଙ୍କ କେମିତି ମାଟି ଖୋଳେ, ମାଟିକୁ କିପରି ତା ଗୋଡ଼ରେ ଏଡ଼େଇ ଦିଏ ଏବଂ ତା'ର ମୁନିଆ ପରକୁ ଝାଡ଼େ ।

ଏହି ସବୁ କରିବା ପାଇଁ ପ୍ରାଗୈତିହାସିକ ମଣିଷକୁ ଆମ ଯୁଗର ଜଣେ ପ୍ରକୃତ ଶିଳ୍ପୀ ଭଳି ମନଯୋଗ ସହକାରେ ଲକ୍ଷ୍ୟ କରିବାକୁ ପଡ଼ୁଥିଲା ।

ତୁମେ ଯେତେବେଳେ କାହାକୁ କୁହ "ତୁମେ ପାଣି ପିଇଛ", ସେତେବେଳେ ତମ କଥାରୁ ସେ ଜାଣି ପାରେନା ଯେ, ତୁମେ କେଉଁଥିରୁ – ଗ୍ଲାସରୁ କିମ୍ବା ବୋତଲରୁ କିମ୍ବା ହାତ ଠୁଙ୍ଗା କରି ପାଣି ପିଇଛ ।

ଯେଉଁମାନେ ଏହି କଥାଟାକୁ ସଂକେତ ସାହାଯ୍ୟରେ କହିବାକୁ ଜାଣିଛନ୍ତି, ସେମାନେ ଭିନ୍ନ ଭିନ୍ନ ଭାବେ କହିବେ ।

କିଏ ତା'ର ହାତ ପାପୁଲିକୁ ଠୁଙ୍ଗା କରି କଳ୍ପନାର ପାଣିକୁ ମୁହଁରେ ଆଣି ଲଗେଇବ । ଯେଉଁମାନେ ତାକୁ ଦେଖୁଥିବେ ସେମାନେ ଜାଣି ପାରିବେ ପାଣିଟା କେତେ ସୁସ୍ୱାଦୁ, ଶୀତଳ ଏବଂ ଆରାମଦାୟକ ।

ଆମ ପକ୍ଷରେ 'ଶିକାର' କଥାଟା କହିବା ସହଜ, କିନ୍ତୁ ପ୍ରାଗୈତିହାସିକ ମଣିଷ ପକ୍ଷରେ ଏହି କଥାଟିକୁ କହିବା ପାଇଁ ଶିକାରର ସମସ୍ତ ଦୃଶ୍ୟଟାକୁ ଅଭିନୟ କରି ବୁଝାଇବାକୁ ପଡ଼ୁଥିଲା ।

ଠାର ଭାଷା ସାହାଯ୍ୟରେ ନିଜକୁ ପ୍ରକାଶ କରିବାଟା ଅନେକ ସମୟରେ ଖୁବ୍ ସୁବିଧାଜନକ ଥିଲ, କିନ୍ତୁ ବେଳେବେଳେ ଅସୁବିଧା ମଧ୍ୟ କମ୍ ନଥିଲ ।

ସୁବିଧାଟା ହେଉଛି କୌଣସି ଜିନିଷ ବା ଘଟଣାକୁ ଏହା ଜରିଆରେ ଖୁବ୍ ପରିଷ୍କାର ଭାବେ ବୁଝେଇ ଦେଇ ହୁଏ । କିନ୍ତୁ ସେ ସୁବିଧାଟା ଅନେକ ସମୟରେ ସୀମାବଦ୍ଧ ମଧ୍ୟ ।

ଠାର ଭାଷାରେ ବାଁଆ ଆଖି କିମ୍ବା ଡାହାଣ ଆଖି କହିବା ସହଜ, କିନ୍ତୁ ଖାଲି "ଆଖି" କହିବା ଖୁବ୍ କଷ୍ଟକର ।

ତମେ କୌଣସି ଏକ ବସ୍ତୁକୁ ଠାର ଦ୍ୱାରା ହୁଏତ ବୁଝାଇ ପାରିବ, କିନ୍ତୁ ଏକ କଳ୍ପନାଜାତ ବିଷୟକୁ କେମିତି ବୁଝାଇବ !

ଠାର ଭାଷାର ଆହୁରି କେତେକ ଅସୁବିଧା ମଧ୍ୟ ରହିଛି ।

ରାତିରେ କିମ୍ବା ଅନ୍ଧାରରେ ଠାର ସାହାଯ୍ୟରେ ତୁମେ ତ କିଛି ବୁଝାଇ ପାରିବ ନାହିଁ । ଯେତେ ହାତ ଗୋଡ଼ ହଲେଇଲେ ବା ଭଙ୍ଗି କଲେ କେଇ ତ କିଛି ଦେଖି ପାରିବେ ନାହିଁ । ଏପରିକି ଦିନ ବେଳେ ମଧ୍ୟ ଲୋକେ ଠାର ଦ୍ୱାରା ପରସ୍ପରକୁ ସବୁବେଳେ ବୁଝି ପାରନ୍ତି ନାହିଁ ।

ବୁଷିଆର ଷ୍ଟେପ୍ ଅଞ୍ଚଳର ଲୋକେ ନିଜ ନିଜ ମଧ୍ୟରେ ଅତି ସହଜରେ କଥାବାର୍ତ୍ତା ହୋଇ ପାରନ୍ତି । କିନ୍ତୁ ଜଙ୍ଗଲରେ ଶିକାରୀମାନେ ଯେତେବେଳେ ଘଞ୍ଚ ବୁଦା ଦ୍ୱାରା ପରସ୍ପରଠାରୁ ଅଲଗା ହୋଇ ଥାଆନ୍ତି, ସେଠାରେ ଠାରରେ କିଛି ଜଣାଇବା ମୋଟେ ସମ୍ଭବ ନୁହେଁ ।

ଏହିସବୁ ଦୃଷ୍ଟିରୁ ଲୋକେ ଅନୁଭବ କଲେ ସେମାନଙ୍କ ମନୋଭାବ ଜଣାଇବା ପାଇଁ ଶବ୍ଦର ଦରକାର ।

ପ୍ରଥମେ ପ୍ରଥମେ ପ୍ରାଗୈତିହାସିକ ମଣିଷର ଜିଭ ଏବଂ ଗଳା ମୋଟେ ବୋଲ ମାନୁ ନଥିଲ । ଗୋଟିଏ ଶବ୍ଦଠାରୁ ଅନ୍ୟ ଗୋଟିଏ ଶବ୍ଦକୁ ପୃଥକ୍ କରି କହି ହେଉ ନଥିଲ । ବିଭିନ୍ନ ଶବ୍ଦ ମିଶିକି ସୃଷ୍ଟି କରୁଥିଲ ଏକ ଆବାଜ, ଚିତ୍କାର ବା କିଚିରି ମିଚିରି ଧ୍ୱନି । ପରିଷ୍କାର ଭାବେ ଉଚ୍ଚାରଣ କରିବା ପାଇଁ ଜିଭକୁ ଅଭ୍ୟସ୍ତ କରେଇବା ପାଇଁ ମଣିଷକୁ ଅନେକ ଯୁଗ ଲଗି ଯାଇଥିଲ ।

ଠାରଗୁଡ଼ିକ ମଧ୍ୟରେ ଜିଭର ଭଙ୍ଗିଟାକୁ ଦେଖିବା କଷ୍ଟକର, କିନ୍ତୁ ସେଥିରେ ସୁବିଧା ହେଉଛି, ସେସବୁକୁ ତମେ ଶୁଣି ପାର ।

ଇଭ୍ ବୋଲି ଏକ ଉପଜାତି ଅଛନ୍ତି । ସେମାନେ 'ଗ୍ଲଭିକୁ' କେବଳ ଗ୍ଲଭି ବୋଲି କହନ୍ତି ନାହିଁ । ସେମାନେ କହନ୍ତି, "ଜୋ ଜେ ଜେ", ଅର୍ଥାତ୍ ଭଲକି

ଯାଇ ; "ହୋ ହୋହୋ ହୋହୋ" – ଥପ୍‌ଥପ୍ କରି ଯାଇ ; "ହୋ ବୁଲ ବୁଲ" – ଝପଟେଇକି ଯାଇ ; "ହୋ ପିଆ ପିଆ" – ଜୋରରେ ଯାଇ ; "ହୋ ଗୋଲୁ ଗୋଲୁ" – ମୁଣ୍ଡ ପୋଡିକି ଯାଇ ।

ଏହିସବୁ ହେଉଛି ଗୋଟିଏ ଗୋଟିଏ ଶବ୍ଦ ଚିତ୍ର । ଏହା ଯାଇବାର ଗୋଟିଏ ଗୋଟିଏ ଭଙ୍ଗୀକୁ ଠିକିଠିକି ଭାବେ ପ୍ରକାଶ କରିଥାଏ ।

ବିଭିନ୍ନ ଧରଣର ଯାଇବାକୁ ବୁଝାଇବା ପାଇଁ ବିଭିନ୍ନ ଧରଣର ପ୍ରକାଶନ ଶବ୍ଦ ରହିଛି ।

ଏହି ଭାବେ ଚିତ୍ର ଠାଉ ବଦଳରେ ସୃଷ୍ଟି ହେଇ ଶବ୍ଦ ଠାଉ ।

# ନଦୀ ଏବଂ ତା'ର ଉପତ୍ୟିକା ।

ଏ ପର୍ଯ୍ୟନ୍ତ ଅତୀତ ମଧ୍ୟକୁ ଆମର ଅଭିଯାନ ଦ୍ୱାରା ଆମେ କ'ଣ ସବୁ ଆବିଷ୍କାର କଲେ ?

ନଦୀର ଉଜାଣିରେ ଯାଇ ଯାଇ ଶେଷରେ ତା'ର ଉପତ୍ୟିକାରେ ଯାଇ ଯେପରି ପହଞ୍ଚି ହୁଏ ସେଇ ଭାବେ ଆମେ ଅତୀତ ମଧ୍ୟକୁ ଯାଇ ଯାଇ ଏକ କ୍ଷୁଦ୍ର ଝରଣାର ସନ୍ଧାନ ପାଇଲେ । ଏହି କ୍ଷୁଦ୍ର ଝରଣାଟି ଜନ୍ମ ଦେଇଛି ଏକ ବିରାଟ ନଦୀକୁ । ସେ ବିରାଟ ନଦୀଟି ହେଉଛି ମାନବଜାତିର ଅଭିଜ୍ଞତାରାଜି ।

ସେହି ନଦୀର ଉପତ୍ୟିକାରେ ଆମେ ଦେଖିବାକୁ ପାଇଲେ ମାନବସମାଜ ଭାଷା ଏବଂ ଯୁକ୍ତିର ଉପତ୍ତିସମୂହକୁ ।

ନଦୀଟି ବହି ଯାଇବା ସଙ୍ଗେ ସଙ୍ଗେ ସେଥିରେ ଆସି ନାନା ଉପନଦୀ ମିଶିଥାନ୍ତି ଏବଂ ନଦୀଟି କ୍ରମଶଃ ଗଭୀର ଏବଂ ପ୍ରଶସ୍ତ ହେବାରେ ଲାଗିଥାଏ । ଠିକ୍ ସେଇଭଳି ମଣିଷର ଅଭିଜ୍ଞତା ସଂପଦ କ୍ରମଶଃ ବ୍ୟାପକ ଏବଂ ସମୃଦ୍ଧ ହେବାରେ ଲାଗିଛି – ପ୍ରତିଟି ବଂଶଧର ସେଥିରେ ସେମାନଙ୍କର ଅଭିଜ୍ଞତାକୁ ଯୋଗ କରି ଯାଇଛନ୍ତି ।

ପୁରୁଷ ପରେ ପୁରୁଷ ଅତୀତ ମଧ୍ୟରେ ଲୁଚି ଯାଉଛନ୍ତି । କେତେ ଜାତି, କେତେ ଲୋକ ଇତିହାସରେ ଲୋପ ପାଇ ଗଲେଣି, ସେମାନଙ୍କର ଚିହ୍ନବର୍ଣ୍ଣ ନାହିଁ । କେତେ ଗ୍ରାମ ଏବଂ ସହର ଧୂଳିରେ ମିଶି ଯାଇଛନ୍ତି । ଏସବୁ ଦେଖି ମନେ ହୁଏ, ସମୟର କରାଳ କବଳରୁ କିଛି ବଞ୍ଚି ପାରି ନାହାନ୍ତି । କିନ୍ତୁ ମଣିଷଜାତିର ସଞ୍ଚିତ ଅଭିଜ୍ଞତାରାଜି ଲୋପ ପାଇ ଯାଇନି । ସମୟକୁ ଜୟ କରି ସେ ତା'ର ଭାଷା, କାରୁକୌଶଳ ଏବଂ ବିଜ୍ଞାନ ମଧ୍ୟରେ ବଞ୍ଚି ରହିଛି । ପ୍ରତିଟି ଭାଷାର ପ୍ରତ୍ୟେକଟି

ଶବ୍ଦ, ପ୍ରତ୍ୟେକଟି କାମର ଢଙ୍ଗ, ପ୍ରତିଟି ବିଜ୍ଞାନର ଅବଧାରଣା ହେଉଛି ସମସ୍ତ ପୂର୍ବବର୍ତ୍ତୀ ବଂଶଧରମାନଙ୍କର ସଞ୍ଚିତ ଅଭିଜ୍ଞତାରାଜିର ଫଳ ।

ସେହିସବୁ ବଂଶଧରଙ୍କର ଶ୍ରମ ବିଫଳ ହୋଇନି, ଯେପରି କୌଣସି ଉପନଦୀ କେବେ ହଜିଯାଏ ନାହିଁ । ଆମ ପୂର୍ବରୁ ଯେଉଁସବୁ ଲୋକେ ବାସ କରୁଥିଲେ ଏବଂ ଏବେବି ବାସ କରୁଛନ୍ତି ସେ ସମସ୍ତଙ୍କର ଅଭିଜ୍ଞତାରାଜି ମାନବ ଅଭିଜ୍ଞତାର ସେହି ମହାନଦୀରେ ଆସି ମିଳିଛି ।

ଏଥର ଆମେ ଆସି ନଦୀର ଉପତ୍ୟକାରେ, ଆମ କାର୍ଯ୍ୟଭାରର ପ୍ରାରମ୍ଭରେ ପହଞ୍ଚି ଯାଇଛେ । ଏହି ଭାବେ କାର୍ଯ୍ୟ କରୁଥିବା, କଥା କହୁଥିବା ଏବଂ ଚିନ୍ତା କରୁଥିବା ମଣିଷର ଆବିର୍ଭାବ ଘଟିଥିଲା ।

"ମାଙ୍କଡ଼-ମଣିଷ" ଏବଂ ମଣିଷ ଭିତରେ ଯେଉଁ ହଜାର ହଜାର ବର୍ଷ କଟି ଯାଉଛି, ସେ ଆଡ଼କୁ ଦୃଷ୍ଟି ଫେରାଇଲେ ଫ୍ରେଡେରିକ୍ ଏଙ୍ଗେଲସ୍‌ଙ୍କର ବିଜ୍ଞତାପୂର୍ଣ୍ଣ କଥା ମନେ ପଡ଼େ : "ଶ୍ରମହିଁ ମଣିଷକୁ ସୃଷ୍ଟି କରିଛି !"

# ଷଷ୍ଠ ଅଧ୍ୟାୟ

---

## ପରିତ୍ୟକ୍ତ ଗୃହରେ ।

ଲୋକ କୌଣସି ଘରକୁ ସବୁ ଦିନ ପାଇଁ ପରିତ୍ୟାଗ କରି ଗ୍ଭଲି ଗଲବେଳେ ଏଣୁ ତେଣୁ ଜିନିଷପତ୍ର ସବୁକୁ ଛାଡ଼ି ଗ୍ଭଲିଯାଏ । ସେସବୁ ପରିତ୍ୟକ୍ତ ଜିନିଷପତ୍ର ଛିଡ଼ା କାଗଜ, ଭଙ୍ଗା କପ୍ ପ୍ଲେଟ୍, ଖାଲି ମଗ, ଆଦି ଘର ମଧ୍ୟରେ ଏଣେ ତେଣେ ପଡ଼ି ରହେ । ଅଣ୍ଡା ଷ୍ଟୋଭ୍‌ଟା ଉପରେ ଭଙ୍ଗା ବାସନ ଏବଂ କଡ଼େଇ ଜମା ହୋଇଥାଏ । ଝରକାର ଏଲୁଣି ଉପରେ ଥୁଆ ହୋଇଥିବା ଚଳଫୁଟା ଦୀପଟା ମନେ ହେଉଥାଏ ଯେମିତି ହତଚକିତ ହୋଇ ଏସବୁ ବିଶୃଙ୍ଖଳ ଅବସ୍ଥାକୁ ଲକ୍ଷ୍ୟ କରିବାରେ ଲଗିଛି ।

ଘରର ଗୋଟାଏ କଣକୁ ଛିଡ଼ା ଗଦିଲଗା ଆର୍ମଚେୟାରଟାଏ ଆରାମରେ ଡୋଳାଉଥାଏ । ଚେୟାରଟା ଘରେ ଏକଦା ରହୁଥିବା ବାସିନ୍ଦାଙ୍କ ସହିତ ଯାଇ ପାଇ ନି, କାରଣ ତା'ର ଗୋଟାଏ ଗୋଡ଼ ଭଙ୍ଗା ।

ଏହିସବୁ ଭଙ୍ଗାଚୁରା ଜିନିଷକୁ ନେଇ କେମିତି ଏକ ପରିବାର ଏଠାରେ ବାସ କରୁଥିଲେ, ସେ କଥା ଚିନ୍ତା କରିବା କଷ୍ଟକର । ଠିକ୍ ଏହି ଭଳି ସମସ୍ୟାର ସମ୍ମୁଖୀନ ହୋଇଥାନ୍ତି ପ୍ରତ୍ନତତ୍ତ୍ୱବିତ୍‌ମାନେ । ସେ ସମସ୍ତଙ୍କ ଶେଷରେ ଘରକୁ ପଶନ୍ତି । କିନ୍ତୁ ସେମାନେ ସେ ଘରକୁ ପଶିଲା ପର୍ଯ୍ୟନ୍ତ ଯଦି ଘରଟା ରହିଯାଇଥାଏ, ତେବେ ତାଙ୍କୁ ଭାଗ୍ୟବାନ ବୋଲି କହିବାକୁ ହେବ । କାରଣ, ସେମାନେ ସେଠାକୁ ସାଧାରଣତଃ ଆସିଥାନ୍ତି ସେ ଘରର ବାସିନ୍ଦାମାନେ ଗ୍ଭଲି ଯିବାର ହଜାର ହଜାର ବର୍ଷ ପରେ । ଅନେକ ସମୟରେ, ସେ ଘର ବୋଇଲେ କେବଳ ଧସି ପଡ଼ିଥିବା କାଛ ଆଉ ମୃତ୍ତଦୁଆର କିଛି ଅଂଶ ଦେଖିବାକୁ ପାଆନ୍ତି । ଏଠାରେ ପଡ଼ିଥିବା ପ୍ରତିଟି ମାଟିପାତ୍ର ହେଉଛି ଏକ ଆବିଷ୍କାର ଏବଂ ପ୍ରତିଟି ଜିନିଷର ଅଂଶ ହେଉଛି ଗୋଟିଏ ଗୋଟିଏ ଅମୂଲ୍ୟ ସଂପଦ ।

ଯିଏ ଏହି ପୁରାତନ ଘରଟିର ଭାଷା ବୁଝି ପାରିବ ତା ପକ୍ଷରେ ଏହା କେତେ ମୂଲ୍ୟବାନ, ତୁମେ ଜାଣିଛ ?

ପୁରୁଣା ପଥରର ଛିଡ଼ା ପୋଷାକ ପିନ୍ଧି ଛିଡ଼ା ହୋଇଥିବା ଗମ୍ବୁଜ ଏବଂ ଣିଉଳି ଢଙ୍କା କାନ୍ଥସବୁ କେତେ ଲୋକ ଏବଂ ଘଟଣା ନଦେଖିଛନ୍ତି !

କିନ୍ତୁ ପୃଥିବୀର ସବୁଠାରୁ ପୁରାତନ ଗୃହ – ପ୍ରାଗୈତିହାସିକ ମଣିଷର ଗୁହାଗୁଡ଼ିକ ଆହୁରି ଅନେକ କିଛି ଦେଖିଛନ୍ତି ।

ହଁ, ଏ ପୃଥିବୀରେ ଏଭଳି କେତେକ ଗୁହା ଆବିଷ୍କୃତ ହୋଇଛି, ଯେଉଁଠି ଲୋକେ ପଚାଶ ହଜାର ବର୍ଷ ପୂର୍ବେ ବାସ କରୁଥିଲେ । ଏହିସବୁ ଗୁହାଗୁଡ଼ିକ ପର୍ବତ ଦେହରେ ଅବସ୍ଥିତ ଏବଂ ପର୍ବତ ସହଜରେ ଭାଙ୍ଗେ ନାହିଁ ବୋଲି ସେସବୁର କାନ୍ଥଗୁଡ଼ିକ ମଣିଷ ହାତରେ ତିଆରି ଘରର କାନ୍ଥ ଭଳି ଧସି ପଡ଼ିନି ।

ସେସବୁ ଗୁହା ମଧ୍ୟରୁ ଗୋଟିଏ ସଂପର୍କ ଆମେ କହିବୁ । ସେଥିରେ ବାସିନ୍ଦାମାନେ ବଦଳିଛନ୍ତି । ପ୍ରଥମ ବାସିନ୍ଦା ଥିଲା ଏକ ମାଟି ତଳ ଝରଣା । ଝରଣାଟି ଗୁହା ମଧ୍ୟକୁ ବହି ଆଣିଥିଲା କାଦୁଅ, ବାଲି ଏବଂ ପଥର ଖଣ୍ଡସବୁ ।

ତା'ପରେ ଝରଣାଟି ଶୁଖି ଯିବାରୁ ମଣିଷ ଯାଇ ସେଠାରେ ବାସ କଲା । ଘୂଳ ପଥରର ହତିଆର ସବୁ କାଦୁଅ ଭିତରୁ ମିଳିଛି । ସେସବୁ ଅନେକ ତଥ୍ୟ ଆମକୁ ଯୋଗାଇଥାଏ । ପ୍ରାଗୈତିହାସିକ ମଣିଷ ଏହିସବୁ ହତିଆର ଦ୍ୱାରା ଶିକାର କରା ଜନ୍ତୁର ଦେହକୁ କାଟୁଥିଲା, ହାଡ଼ରୁ ମାଂସକୁ ଛଡ଼ାଇଥିଲା ଏବଂ ହାଡ଼କୁ ଭାଙ୍ଗି ସେଥିରୁ ହାଡ଼ରସ ଖାଉଥିଲା । ତା ଅର୍ଥ ଗୁହାରେ ରହୁଥିବା ଲୋକେ ଥିଲେ ଶିକାରୀ ।

ତା'ପରେ ଅନେକ ବର୍ଷ ବିତିଗଲା । ଶିକାରୀମାନେ ସେ ଗୁହାଟିକୁ ଛାଡ଼ି ଅନ୍ୟତ୍ର ଚାଲି ଗଲେ । ନୂଆ ବାସିନ୍ଦାମାନେ ପୁଣି ସେଠାକୁ ଆସିଗଲେ । ଗୁହାର କାନ୍ଥଗୁଡ଼ିକ ବେଶ୍ ଖାଉଁଳିଆ । ନୂଆ ବାସିନ୍ଦାମାନେ ଥିଲେ ଗୁହାଜୀବୀ ଭାଲୁ । ସେମାନେ ସେମାନଙ୍କର ଲୋମଶ ଦେହକୁ ପଥର କାନ୍ଥରେ ଘଷି ଘଷି ତାକୁ ଏମିତି ଖାଉଁଳିଆ କରିଛନ୍ତି । ତା'ର ପ୍ରମାଣ ସ୍ୱରୂପ ସେଠାରେ ମିଳିଛି ଏକ ଭାଲୁର ଖପୁରି, ତା'ର କପାଳ ଏବଂ ସରୁଆ ମୁହଁ ହାଡ଼ ।

ଏହାର ପରସ୍ତରରେ ଆମେ ଦେଖିବାକୁ ପାଏଁ ମଣିଷର ଜୀବନ ଯାତ୍ରାର ଆଉ କେତେକ ଚିହ୍ନ । ସେସବୁ ହେଉଛି ଦରପୋଡ଼ା କୋଇଲା, ପାଉଁଶ, ଭଙ୍ଗା ହାଡ଼ ଗୋଡ଼, ପଥର ଏବଂ ହାଡ଼ର ହତିଆର । ତା ଅର୍ଥ, ଏଥିରେ ଆଉ ଥରେ ଆସି ଲୋକେ ବାସ କରିଥିଲେ । ଆମେ ହୁଏତ ସେମାନଙ୍କୁ ଦେଖି ପାରିବା ନାହିଁ, କିନ୍ତୁ ସେମାନଙ୍କ ସଂପର୍କରେ ଅନେକ କିଛି ଆବିଷ୍କାର କରି ପାରିବା । ସେମାନେ ଛାଡ଼ି ଯାଇଥିବା ଭଙ୍ଗାରୁଜା ଜିନିଷପତ୍ର ପ୍ରତି ଆମକୁ କେବଳ ଦୃଷ୍ଟି ପକାଇବାକୁ ହେବ । ଜଣେ ଅନଭିଜ୍ଞ ଲୋକ ସେସବୁକୁ ଦେଖିଲେ କହିବ, ସେଗୁଡ଼ାକ ପଥର ଖଣ୍ଡସବୁ । କିନ୍ତୁ ତୁମେ ଯଦି ତାକୁ ପରୀକ୍ଷା କରି ଦେଖିବ ତେବେ ଜାଣି ପାରିବ ସେସବୁ ହେଉଛି ପରବର୍ତ୍ତୀ ଛୁରି, ହାତୁଡ଼ି ଆଦିର ଆଦିମ ରୂପ ।

ଏହିସବୁ ଅସ୍ତ୍ର ହେଉଛି ଆଧୁନିକ ଅସ୍ତ୍ରଶସ୍ତ୍ରର ପୂର୍ବପୁରୁଷ । ସେସବୁ ମଧ୍ୟରେ ସବୁଠାରୁ ପୁରୁଣାଟି ହେଉଛି ଆମ ହାତୁଡ଼ିର ପୂର୍ବପୁରୁଷ । ସେଟି ଦେଖିବାକୁ ଗୋଲ, ପଥର ତିଆରି ହାତ ଟାଙ୍ଗିଆ ଭଳି ।

ଗୁହାର ତଳେ ଥିବା ଅଳିଆ ମଳିଆକୁ ଖୋଳିଲେ ଆଉ ଏକ ମୁଗୁର ମିଳିବ । ସେ ମୁଗୁରଟି ହାତୁଡ଼ିଠାରୁ ଖୁବ୍ ତଫାତ୍ ନୁହଁ ।

ହାତୁଡ଼ି ସିନା ପଥରରେ ତିଆରି । ମୁଗୁରଟି କିନ୍ତୁ ହାଡ଼ରେ ତିଆରି ।

ଏହା ଅବଶ୍ୟ ଆଜିକାଲିକାର ମୁଗୁର ଭଳି ଦିଶେନା, କିନ୍ତୁ ଅତି ନିଖୁଣ ଭାବେ ଏହା ତା'ର କାମ କରୁଥିଲା । ମୁଗୁରଟିରେ ଅନେକ କଟା ଦାଗ ଦେଖିବାକୁ ପାଇବ । ସମ୍ଭବତଃ କୌଣସି ହତିଆରକୁ ପଜେଇଲା ବେଳେ ଏହା ଏପରି ହୋଇଛି ।

ଏହିସବୁ ହତିଆରରୁ ତେବେ ଆମେ କ'ଣ ଜାଣିବାକୁ ପାଉଛେ ?

ଆମେ ଜାଣିବାକୁ ପାଉଛେ, ଗୁହାରେ ରହୁଥିବା ଅଧିବାସୀମାନଙ୍କ ମଧ୍ୟରୁ ପ୍ରଥମେ ଯେଉଁମାନେ ରହୁଥିଲେ ସେମାନଙ୍କ ଅପେକ୍ଷା ନୂଆମାନେ ଅନେକ ଉନ୍ନତ । ଏହା ଭିତରେ ଯେଉଁ ହଜାର ହଜାର ବର୍ଷର ବ୍ୟବଧାନ ରହିଛି ତା ମଧ୍ୟରେ ମନୁଷ୍ୟର କାମ ଆହୁରି ବହୁବିଧ ଏବଂ ଜଟିଳ ହୋଇଛି ।

ପ୍ରଥମ ବାସିନ୍ଦାମାନେ ଗୋଟିଏ ଗୋଟିଏ ଧାରୁଆ ହତିଆରରେ ଅନେକ ରକମର କାମ କରୁଥିଲେ । ଏବେ କିନ୍ତୁ କାଟିବା ପାଇଁ ଗୋଟିଏ ହତିଆର ତ, ଛାଲିବା



ହତିଆରସବୁ ବହୁରୂପୀ ହେଲେ । ବିଭିନ୍ନ କାର୍ଯ୍ୟରେ ବ୍ୟବହୃତ – ଦ୍ୱିଫାଳ, ଛେଦକ, ଧାରୁଆ ଥାଳ, ବିଭିନ୍ନ ଧରଣର ଖୁରୁପି ।

ପାଇଁ ଗୋଟିଏ, ଚିରିବା ପାଇଁ ଗୋଟିଏ । ଛୁଞ୍ଚି ଭଳି ମୁନିଆ ଯନ୍ତ୍ରରେ ପଶୁ ଚମଡ଼ା ଦିହରେ ଗାତ କରାଯାଉଥିଲା । ଚମଡ଼ାରେ ତିଆରି ହେଉଥିଲା ପୋଷାକ । ଗୋଟିଏ ପାଖକୁ ଧାରଥିବା କାତିରେ ମାଂସ କଟା ଯାଉଥିଲା ଏବଂ ଚମଡ଼ାକୁ ଘଷି ପତଳା କରାଯାଉଥିଲା । ଡେଣ୍ଟାର ମୁନ ଭଳି ଧାରୁଆ ଯନ୍ତ୍ରରେ ବର୍ଚ୍ଛା ତିଆରି ହେଉଥିଲା ।

କ୍ରମଶଃ ମଣିଷର କାମ ଧନ୍ଦା ବଢ଼ିବାକୁ ଲାଗିଲା । ସମୟ ବଦଳିବା ସଙ୍ଗେ ସଙ୍ଗେ ଜଳବାୟୁ ଆହୁରି ଶୀତଳ ଏବଂ କଠିନ ହୋଇ ଉଠିଲା । ଏଥର ମଣିଷ ବ୍ୟସ୍ତ ହୋଇ ପଡ଼ିଲା ପୋଷାକପତ୍ର ପାଇଁ, ଶୀତ ଋତୁ ନିମିତ୍ତ ଖାଦ୍ୟ ସଞ୍ଚୟ ପାଇଁ, ରହିବା ନିମିତ୍ତ ଉତ୍ତମ ଜାଗା ପାଇଁ ସେତେବେଳେ ମଣିଷ ପୋଷାକପତ୍ର ତିଆରି କରୁଥିଲା ଭାଲୁ ଚମଡ଼ାରୁ । ଏହି ପରି ଅନେକ କାମ ତାକୁ କରିବାକୁ ପଡ଼ିଲା ଏବଂ ସେଥି ପାଇଁ ଦରକାର ପଡ଼ିଲା ନାନା ଧରଣର ଯନ୍ତ୍ରପାତି ।

ଏହି ଭାବେ ଆମେ ଆମ ଯନ୍ତ୍ରପାତିର ପୂର୍ବପୁରୁଷମାନଙ୍କୁ ଏବଂ ଆମର ଅତିଦୂର ସଂପର୍କୀୟ ପୂର୍ବପୁରୁଷମାନଙ୍କୁ ଦେଖିବାକୁ ପାଇଲେ ।

ସମୟ ଆମ ପାଇଁ ଯାହା କିଛି ସାଇତି ରଖିଛି ଆମେ କେବଳ ସେଇସବୁକୁ ଦେଖିବାକୁ ପାଇଥାଏଁ । ଏବଂ ଯତ୍ନ ନେବା ଆଉ ସାଇତି ରଖିବା ବିଷୟରେ ସମୟର ନିଘା ଖୁବ୍ କମ୍ । ଏହା କେବଳ ସେଇସବୁ ଜିନିଷକୁ ସାଇତି ରଖେ, ଯେଉଁଗୁଡ଼ିକ ଅଧିକ ସ୍ଥାୟୀ । କାଠ ଆଉ ଚମଡ଼ା ଜିନିଷର କୌଣସି ଅସ୍ତିତ୍ୱର ଚିହ୍ନ ସେ ରଖି ପାରିନି, କେବଳ ସାଇତିଛି ପଥର ଆଉ ହାଡ଼ର ଜିନିଷ । ତେଣୁ କରି ଆମେ ଫୋଡ଼ଣୀ ପାଇଲା ବେଳେ ଫୋଡ଼ଣୀ ଦ୍ୱାରା ତିଆରି ଚମଡ଼ାର ପୋଷାକ ପାଏଁ ନାହିଁ । ପଥର ବର୍ଚ୍ଛାର ଫଳା ପାଇଲା ବେଳେ ବର୍ଚ୍ଛାର କାଠ ଦଣ୍ଡା ମିଳେ ନାହିଁ ।

ଯେଉଁସବୁ ଜିନିଷ ରହିଯାଇଛି ସେଇଆକୁ ଖିଅ ଭଳି ଧରି, ଯାହାସବୁ ଲୋପ ପାଇ ଯାଇଛି ସେସବୁ ବିଷୟରେ ଅନୁମାନ କରିବାକୁ ହେବ । ହଜାର ହଜାର ବର୍ଷ ପୂର୍ବେ ଧୂଳି ପାଇଟି ଯାଇଥିବା ଜିନିଷକୁ ଆମେ ପୁନର୍ନିର୍ମାଣ କରିବା ଆମକୁ ମିଳୁଥିବା ସେଇସବୁ ଚିହ୍ନ ଏବଂ ଟୁକୁରା ଟୁକୁରା ଖଣ୍ଡଗୁଡ଼ିକ ଦ୍ୱାରା ।

ତାହେଲେ, ଏଥର ଆମର ଅନ୍ୱେଷଣ ଆରମ୍ଭ କରିବା ଶୁଣ ।

ପ୍ରତ୍ନତତ୍ତ୍ୱବିତ୍‌ମାନେ କୌଣସି ଧ୍ୱଂସାବଶେଷ ଖୋଳିଲା ବେଳେ ପ୍ରଥମେ ଉପର ଅଂଶକୁ ଖୋଳନ୍ତି ଏବଂ ତା'ପରେ ଗହୀରକୁ ଯାଆନ୍ତି । ପ୍ରଥମେ ଉପରସ୍ତରଗୁଡ଼ିକୁ ପରୀକ୍ଷା କରିବାକୁ ହୁଏ, ତା'ପରେ ଆହୁରି ଗହୀରକୁ, ପୃଥିବୀ ଭିତରକୁ, ଇତିହାସର ଗହୀରକୁ । ଆମେ ବହିକୁ ପ୍ରଥମରୁ ଶେଷ ଆଡ଼କୁ ପଢ଼େଁ, କିନ୍ତୁ







ପଥର ହତିଆର ଛଡ଼ା ହାଡ଼ ଏବଂ ଶିଙ୍ଗର ହତିଆରମାନ ତିଆରି ହେବାକୁ ଲାଗିଲା । ଉତ୍ତରାଞ୍ଚଳର ହରିଣ ଶିଙ୍ଗରେ ତିଆରି ମୁନିଆ ଛୁରୀ ଏବଂ କଣ୍ଟାଯୁକ୍ତ ଟେଣ୍ଟା ବା ବର୍ଚ୍ଛା ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ଶେଷ ଆଡ଼୍‌, ଏକେବାରେ ଶେଷ ଅଧ୍ୟାୟରୁ ଆରମ୍ଭ କରି ପ୍ରଥମ ଅଧ୍ୟାୟରେ ଶେଷ କରନ୍ତି । ଆମେ ମଧ୍ୟ ଏଠାରେ କିନ୍ତୁ ଶେଷ ଆଡ଼୍‌, ସର୍ବନିମ୍ନ ସ୍ତରରୁ, ଗୁହା ଇତିହାସର ପ୍ରଥମ ଅଧ୍ୟାୟରୁ ଆରମ୍ଭ କରିଛେ । ବର୍ତ୍ତମାନ ଆମକୁ ଉପରକୁ ଉଠିବାକୁ ହେବ ଏବଂ ଆଧୁନିକ ଯୁଗର ନିକଟବର୍ତ୍ତୀ ହେବାକୁ ପଡ଼ିବ ।

ତା'ପରେ କ'ଣ ହେଲା ?

ମାଟି ତଳେ ରହିଥିବା ଜିନିଷର ବିଭିନ୍ନ ସ୍ତରକୁ ଅଧ୍ୟୟନ କରି ଆମେ ଦେଖିବାକୁ ପାଏଁ ଯେ, ଲୋକେ ବାରମ୍ବାର ଗୁହା ପରିତ୍ୟାଗ କରି ଚାଲି ଯାଇଛନ୍ତି ଏବଂ ପୁଣି ଫେରି ଆସିଛନ୍ତି । ସେମାନେ ନରହୁଥିଲା ବେଳେ ହେଟାବାଘ ଏବଂ ଭାଲୁସବୁ ଆସି ସେସବୁ ଗୁହାରେ ବାସ କରୁଥିଲେ । ତା'ପରେ କାଦୁଅ ଏବଂ ଧୂଳିର ସ୍ତର ସବୁ ଗୋଟିକ ପରେ ଗୋଟିଏ ଜମିବାକୁ ଲାଗିଥିଲା । ଗୁହାର ଉପରି ଭାଗରୁ ଖଣ୍ଡ ଖଣ୍ଡ ପଥର ଖସି ତଳେ ବି ଜମା ହେଉଥିଲା । ପୁଣି ଅନେକ ବର୍ଷ ପରେ ଆଉ ଦଳେ ମଣିଷ ଆସି ଯେତେବେଳେ ଗୁହାଟିକୁ ଆବିଷ୍କାର କଲେ ସେତେବେଳେ ପୂର୍ବର ସେହିସବୁ ବାସିନ୍ଦାମାନଙ୍କର କୌଣସି ଚିହ୍ନବର୍ଣ୍ଣ ଦେଖିବାକୁ ପାଇଲେ ନାହିଁ ।

ଏହି ଭାବେ ବର୍ଷ ବର୍ଷ, ଶତାବ୍ଦୀ ଏବଂ ସହସ୍ରାବ୍ଦ ଅତିକ୍ରାନ୍ତ ହୋଇଗଲା । ଲୋକେ ଗୁହାର ସେହି ପ୍ରାକୃତିକ ଆଶ୍ରୟ ସ୍ଥାନ ଛାଡ଼ି ଖୋଲା ଜାଗାରେ ଘର ଦ୍ୱାର

ତିଆରି କଲେ । ଶେଷକୁ ଗୁହାସବୁ ପରିତ୍ୟକ୍ତ ହୋଇ ପଡ଼ି ରହିଲା । ବେଳେ ବେଳେ ପାହାଡ଼ର ସବୁଜ ତୃଣଭୂମିରେ ମେଣ୍ଢାପଲ ଚରେଇ ଚରେଇ ଗଲା ବେଳେ ସେଠି ଦିନେ ଦୁଇଦିନ ପାଇଁ ଅଟକି ଯାଉଥିଲେ । ଆଉ ବେଳେ ବେଳେ ପଥିକମାନେ ଝଡ଼ ବର୍ଷାରେ ଯାଇ ନପାରି ସେସବୁଥିରେ ଆଶ୍ରୟ ନେଉଥିଲେ ।

ଏହା ପରେ ପୁଣି ଗୁହାର ଇତିହାସର ଶେଷ ଏବଂ ଅନ୍ତିମ ଅଧ୍ୟାୟଟି ଆରମ୍ଭ ହେଲା । ଲୋକେ ପୁଣି ଥରେ ଗୁହାକୁ ଫେରି ଆସିଲେ । ଏଥର କିନ୍ତୁ ସେମାନେ ସେଠିକି ଆଶ୍ରୟ ଉଦ୍ଦେଶ୍ୟରେ ଆସିଲେ ନାହିଁ, ଆସିଲେ ସେଠାରେ ଯେଉଁମାନେ ବାସ କରୁଥିଲେ ସେମାନଙ୍କ ସଂପର୍କରେ ଆବିଷ୍କାର କରିବାକୁ ।

ଏହି ବିଜ୍ଞ ଆଗନ୍ତୁକମାନେ ଇସ୍ପାତ ତିଆରି ଆଧୁନିକ ହତିଆର ଧରି ମହଜିଲେ ପଥରର ପ୍ରାଚୀନ ହତିଆର ସବୁକୁ ଖୋଳିବା ନିମିତ୍ତ ।

ଏହି ଗବେଷକମାନେ ଗୋଟିକ ପରେ ଗୋଟିଏ ସ୍ତର ଖୋଳିବା ସଙ୍ଗେ ସଙ୍ଗେ ଗୁହାର ଇତିହାସକୁ ଏକବାରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ପଢ଼ି ଗ୍ଲଲେ ।

ଆବିଷ୍କାର କରିଥିବା ହତିଆରଗୁଡ଼ିକୁ ତୁଳନା କରି ସେମାନେ ଜାଣି ପାରିଛନ୍ତି, ଯେ ବିଭିନ୍ନ କାରୁକୌଶଳ ଏବଂ ମାନବିକ ଅଭିଜ୍ଞତା ଗୋଟିଏ ବଂଶଧରଠାରୁ ଅନ୍ୟ ଏକ ବଂଶଧର ଦ୍ୱାରା ଉନ୍ନୀତ ଥାଏ । ସେମାନେ ଦେଖିଛନ୍ତି, ପ୍ରାଗୈତିହାସିକ ସମୟ ବିତି ଗ୍ଲଲିବା ସଙ୍ଗେ ସଙ୍ଗେ ସ୍ଥୂଳ ହତିଆର ଜାଗାରେ ଅଧିକ ଉନ୍ନତ ସୂକ୍ଷ୍ମ ଏବଂ ନାନା ରକମର ହତିଆର ବ୍ୟବହୃତ ହୋଇଛି । ଏହି ଭାବେ ସ୍ଥୂଳ ହାତ ଟାଙ୍ଗିଆ ସ୍ଥାନରେ ପ୍ରଥମେ ଦେଖା ଦେଇଛି ତିନିକଣିଆ କଟୁରି, ଅର୍ଦ୍ଧଗୋଲାକାର କଟୁରି । ତା'ପରେ ଆସିଛି ଅନେକ ରକମର ବର୍ଚ୍ଛାର ଫଳା, କଟୁରି, ନିହାଣ ଏବଂ ଡାମଣ ସବୁ । ଏସବୁ ମୁନିଆ ପଥର ଟୁକୁରାରେ ତିଆରି ହୋଇଥିଲା । ତା'ପରେ ହତିଆର ସବୁ ତିଆରି ହୋଇଛି ନୂଆ ଉପାଦାନରେ, ଯଥା, ହାଡ଼ ଆଉ ଶିଙ୍ଗରେ । ତା'ଛଡ଼ା ବିଭିନ୍ନ କାମ ପାଇଁ ବିଭିନ୍ନ ହତିଆର ତିଆରି ହେଲା— ହାଡ଼ରେ କାମ ପାଇଁ, ଚମଡ଼ା ଏବଂ କାଠରେ ଜିନିଷ କରିବା ପାଇଁ ଅଲଗା ଅଲଗା ଯନ୍ତ୍ର । ପ୍ରାଗୈତିହାସିକ ମଣିଷ ମୁନିଆ ପଥର ହତିଆରକୁ ବ୍ୟବହାର କଲା ହାଡ଼କୁ କାଟିବା ପାଇଁ, କାଠିରେ ଚମଡ଼ାକୁ ପାଲିଶ୍ କରିବା ପାଇଁ, ଡାମଣରେ ଶାମୁକାର ଖୋଳକୁ ଫୁଟେଇବା ପାଇଁ । ତା'ର ଏହିସବୁ କୃତ୍ରିମ ଥାବା ଏବଂ ଦାନ୍ତ କ୍ରମଶଃ ତୀକ୍ଷ୍ଣ ଏବଂ ବହୁବିଧ ହେବାକୁ ଲାଗିଲା ସମୟ ବିତି ଗ୍ଲଲିବା ସଙ୍ଗେ ସଙ୍ଗେ । ଏବଂ ଏଥି ସାଥେ ସାଥେ ଯେଉଁ ହାତକୁ ସେ ତା'ର ଶିକାର ଧରିବା ପାଇଁ ବ୍ୟବହାର କରୁଥିଲା, ତାହା ଆହୁରି ଭଲ ହେବାକୁ ଲାଗିଲା ।

## ଲମ୍ବା ହାତ ।

ବାଡ଼ି ଅଗରେ ଦାନ୍ତୁଆ ପଥର ଖଣ୍ଡେ ଲଗେଇ ପ୍ରାଗୈତିହାସିକ ମଣିଷ ଯେତେବେଳେ ବର୍ଚ୍ଛା ତିଆରି କଲା ତା'ର ହାତ ଆହୁରି ଲମ୍ବି ଗଲା ।

ଏହା ଫଳରେ ତା'ର ଶକ୍ତି ଏବଂ ସାହସ ଆହୁରି ବଢ଼ିଗଲା ।

ଆଗେ ଭାଲୁଟାଏ ଦେଖିଲା କ୍ଷଣି ସେ ଭୟରେ ଦୌଡ଼ିକି ପଳାଉଥିଲା । ସେ ଯେମିତି ଗୁହାବାସୀ ପଶୁଟା ସାଙ୍ଗରେ ଲଢ଼ିବାକୁ ଡରୁଥିଲା । ଛୋଟ ଛୋଟ ପଶୁ ପକ୍ଷୀଙ୍କୁ ବିନା ଅନାୟାସରେ ସେ ଧରି ପାରୁଥିଲା ଏବଂ ମାରି ଦେଉଥିଲା । କିନ୍ତୁ ଭାଲୁ ସହିତ ଲଢ଼ିବାକୁ ତା'ର ସାହସ ପାଉ ନଥିଲା । ଭାଲୁର ମୁନିଆ ଥାବାରୁ ସେ ଯେ କେବେ ମୁକୁଳି ପାରିବ ନାହିଁ, ଏ କଥା ତାକୁ ଭଲକି ଜଣାଥିଲା ।

କିନ୍ତୁ ଏସବୁ ହେଉଥିଲା ତା ହାତକୁ ବର୍ଚ୍ଛା ଆସିବା ପୂର୍ବରୁ । ବର୍ଚ୍ଛା ହାତକୁ ଆସିଗଲା କ୍ଷଣି ତା'ର ସାହସ ବଢ଼ିଗଲା । ଭାଲୁ ଦେଖିଲା କ୍ଷଣି ସେ ଭୟରେ ଦୌଡ଼ି ପଳାଇଲା ନାହିଁ, ବରଂ ତାକୁ ସାହସର ସହିତ ଆକ୍ରମଣ କଲା । ପଛ ଦୁଇ ଗୋଡ଼ରେ ଛିଡ଼ା ହୋଇ ପଡ଼ି ଭାଲୁଟା ତାକୁ ଆକ୍ରମଣ କରି ଉଠୁଥିଲା । କିନ୍ତୁ ଭାଲୁ ସେ ତୀକ୍ଷ୍ଣ ଥାବାଗୁଡ଼ାକ ତା ଦେହରେ ବାଜିବା ଆଗରୁ ତା'ର ମୁନିଆ ପଥରର ବର୍ଚ୍ଛାଟାକୁ ଭାଲୁର ଯେମିତି ପେଟରେ ବିନ୍ଧି ଦେଉଥିଲା, କାରଣ ଭାଲୁର ଥାବାଗୁଡ଼ାକଠାରୁ ବର୍ଚ୍ଛାଟା ଥିଲା ଅନେକ ଲମ୍ବ ।

ଆହତ ଭାଲୁଟା ରାଗରେ ତା ଆଡ଼କୁ ଯେତିକି ମାଡ଼ି ଆସୁଥିଲା ବର୍ଚ୍ଛାଟା ତା ପେଟ ଭିତରେ ସେତିକି ପଶିଯାଉଥିଲା ।

କିନ୍ତୁ ତା'ର ବର୍ଚ୍ଛା ଯଦି କୌଣସି କାରଣରୁ ଭାଙ୍ଗିଯାଉଥିଲା, ତେବେ ତା'ର ରକ୍ଷା ନଥିଲା ।

ଭାଲୁ ତା ଉପରକୁ ଝାମ୍ପି ପଡ଼ି ତାକୁ ଚିରି ଶେଷ କରି ଦେଉଥିଲା ।

କିନ୍ତୁ ଭାଲୁ ପକ୍ଷରେ ଜିତିବାଟା ଖୁବ୍ ବିରଳ ଥିଲା । ତୁମର ମନେ ଥିବ ପ୍ରାଗୈତିହାସିକ ଯୁଗରେ ମଣିଷ କେବେହେଲେ ଏକା ଶିକାର ପାଇଁ ବାହାରୁ ନଥିଲା । କୌଣସି ବିପଦର ଶବ୍ଦ ଶୁଣିଲା କ୍ଷଣି ସାରା ଦଳଟା ଧାଇଁ ଆସୁଥିଲେ । ଚାରିଆଡ଼ୁ ତାକୁ ଘେରିଯାଇ ପଥର ଛୁରିରେ ଚିରି ମାରି ପକାଉଥିଲେ ।

ଏକ ମୁନିଆ ବର୍ଚ୍ଛା ସାହାଯ୍ୟରେ ମଣିଷ ଏଭଳି ଏକ ଶିକାର କଲା, ଯାହା କଥା ପୂର୍ବରୁ କେବେ ସେ କଳ୍ପନା ବି କରି ପାରି ନଥିଲା । ଏବେ ମଧ୍ୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ଗୁହା ଭିତରେ ଖଣ୍ଡିକିଆ ପଥରରେ ତିଆରି ଉଣ୍ଡାର ଘରମାନ

ଦେଖିବାକୁ ପାଇଥାନ୍ତି । ପଥର ଖଣ୍ଡଗୁଡ଼ିକୁ ହଟେଇ ଦେଲା କ୍ଷଣି ସେସବୁ ଚଳେ ଭାଲୁ ହାଡ଼ର ବିରାଟ ଗଦାସବୁ ଦେଖିବାକୁ ମିଳେ । ଏଥିରୁ ଜଣାଯାଏ ଶିକାରୀମାନେ କେତେ ସଫଳ ହୋଇ ପାରିଥିଲେ ଭାଲୁମାନଙ୍କୁ ମାରିବାରେ । ଏହା ଫଳରେ ସେମାନେ ପ୍ରଚୁର ଭାଲୁ ମାଂସ ସାଇତିବାକୁ ସକ୍ଷମ ହୋଇ ପାରିଥିଲେ ।

ମଣିଷ ଯଦି କେବଳ ଭାଲୁ ଭଳି ଜନ୍ତୁକୁ ଶିକାର କରିଥାନ୍ତା ତେବେ ବର୍ଚ୍ଛାଟା ତା ପକ୍ଷରେ ସବୁଠାରୁ ବେଶି କାମ ଦେଇଥାନ୍ତା, କିନ୍ତୁ ସେପରି ତ ହେଲା ନାହିଁ, ତାକୁ ଅନ୍ୟାନ୍ୟ ଜୀବଜନ୍ତୁ ଶିକାର କରିବାକୁ ପଡ଼ୁଥିଲା । ଏବଂ ସେସବୁ ଜୀବ ଥିଲେ ମଣିଷ ଅପେକ୍ଷା ଅନେକ ଚଞ୍ଚଳ ଏବଂ କ୍ଷିପ୍ର ।

ଶିକାରୀମାନେ ସମତଳ ଅଞ୍ଚଳରେ ବୁଲିଲା ବେଳେ ଅନେକ ସମୟରେ ବଣୁଆ ଘୋଡ଼ା ଏବଂ ବାଇସନ୍ ଦେଖିବାକୁ ପାଉଥିଲେ । ତା ପରେ ସେମାନେ ମାଟିରେ ଘୋଷାରି ହୋଇ ହୋଇ ଚରୁଥିବା ଜୀବମାନଙ୍କ ଆଡ଼କୁ ଆଗଉଥିଲେ । କାରଣ ଖଡ଼କିନା କିଛି ଗୋଟାଏ ହେଲା କ୍ଷଣି ସେମାନେ ଗର୍ଜନ କରି ଦୂରକୁ ପଳାଇ ଯାଉଥିଲେ ।

ପ୍ରାଗୈତିହାସିକ ମଣିଷର ହାତଗୁଡ଼ିକ ଏହିସବୁ ଜନ୍ତୁଙ୍କୁ ଶିକାର କରିବା ପାଇଁ ତଥାପି ବି ଛୋଟ ଥିଲା । କିନ୍ତୁ ସେ ଶିକାର କରୁଥିବା ଏହି ଜୀବମାନେ ହିଁ ତାକୁ ଆଉ ଏକ ନୂଆ ଏବଂ ଶକ୍ତ ଉପାଦାନ ଯୋଗାଇ ଦେଲେ । ସେ ଉପାଦାନଟି ହେଉଛି ହାଡ଼ ।

ସେ ତା'ର ଧାରୁଆ ପଥର ଛୁରିରେ ତିଆରି କଲା ହାଡ଼ରୁ ଆହୁରି ହାଲୁକା ଏବଂ ମୁନିଆ ବର୍ଚ୍ଛା । ତା'ପରେ ସେ ବର୍ଚ୍ଛାକୁ ଏକ ନରମ କାଠ ବେଣ୍ଟରେ ଲଗାଇ ଦେଲା । ଏଥର ସେ ପାଇଗଲା ନୂଆ ଏକ ହତିଆର—ବଲମ । ଇତିପୂର୍ବରୁ ସେ ତା'ର ସେ ଓଜନିଆ ବର୍ଚ୍ଛାଟାକୁ ଧାଉଁଥିବା ଘୋଡ଼ା ଉପରକୁ ସଫଳ ଭାବେ ଫିଙ୍ଗି ପାରୁ ନଥିଲା । କିନ୍ତୁ ଏବେ ସେ ତା'ର ହାଲୁକା ବଲମଟାକୁ ଫିଙ୍ଗିବାକୁ ସକ୍ଷମ ହେଲା । କାରଣ ଏ ହତିଆରଟା ଅନେକ ଦୂର ପର୍ଯ୍ୟନ୍ତ ଯାଇ ପାରୁଥିଲା ।

ଏଥର ମଣିଷର ହାତ ଆହୁରି ଲମ୍ବିଗଲା । ବଲମ ଭଳି ଏକ ଉଡ଼ିଲା ଭଳିଆ ହତିଆରକୁ ବ୍ୟବହାର କରି ଶିକାରୀଟି ଏକ ଦ୍ରୁତ ଗତିରେ ଯାଉଥିବା ଘୋଡ଼ାକୁ ମାରି ପାରିଲା ।

ଗୋଟାଏ ଚଳମାନ ଲକ୍ଷକୁ ବିଦ୍ଧ କରିବାଟା ଏତେ ସହଜ ନୁହେଁ । ଏଥି ପାଇଁ ଆବଶ୍ୟକ ଶକ୍ତିଶାଳୀ ବାହୁ ଏବଂ ତୀକ୍ଷ୍ଣ ଦୃଷ୍ଟିସଂପନ୍ନ ଆଖି ।

ଶିକାରୀମାନେ ସେମାନଙ୍କ ପିଲାଟି ଦିନରୁ ବଲମ ନିକ୍ଷେପ କରିବାର କୌଶଳ

ଶିକ୍ଷା କରୁଥିଲେ । କିନ୍ତୁ ତା ସତ୍ତ୍ୱେ ବି ଶହେ ବର୍ଚ୍ଛା ଫିଙ୍ଗିଲା ପରେ ହୁଏତ ଦଶଟା ଠିକ୍ ଲକ୍ଷ୍ୟରେ ଯାଇ ବାଜୁଥିଲା ।

ଏହି ଭଳି ହଜାର ହଜାର ବର୍ଷ ବିତିଗଲା । ଦଳ ଦଳ ବଣୁଆ ଘୋଡ଼ା ଏବଂ ବାଇସନ୍ କ୍ରମଶଃ ବିରଳ ହେବାକୁ ଲାଗିଲେ । ସେମାନଙ୍କର ଏହି ବିରଳତା ପାଇଁ ଦାୟୀ ଥିଲା ପ୍ରାଗୈତିହାସିକ ମଣିଷ । ଏଣିକି ଶିକାରୀମାନେ ଅନେକ ସମୟରେ ଖାଲି ହାତରେ ଘରକୁ ଫେରିଲେ । ତେଣୁ ସେମାନେ ଏଭଳି ଏକ ଅସ୍ତ୍ର ପାଇଁ ଚିନ୍ତା କଲେ, ଯେଉଁଟା କି ଅନେକ ଦୂରରେ ଥିବା ଲକ୍ଷ୍ୟ ବସ୍ତୁକୁ ବିଦ୍ଧ କରି ପାରିବ । ପ୍ରାଗୈତିହାସିକ ଶେଷକୁ ସେ ଭଳି ଏକ ଅସ୍ତ୍ର ଆବିଷ୍କାର କଲା । ଏହା ତା'ର ହାତକୁ ଆହୁରି ଲମ୍ବା କରି ଦେଲା ।

ଗୋଟାଏ ଶକ୍ତ ଗଜା ଗଛକୁ କାଟି ତାକୁ ବଙ୍କେଇ କି ତା'ର ଦୁଇ ଅଗକୁ ଗୋଟାଏ ଦଉଡ଼ିରେ ବାନ୍ଧି ଦେଲା ।

ଏଥର ସେ ପାଇଗଲା ଗୋଟାଏ ଧନୁ ।

ଧନୁର ଗୁଣକୁ ଟାଣି ଦେଲା କ୍ଷଣି ହାତ ମାଂସପେଶୀରୁ ସମସ୍ତ ଶକ୍ତି ଯାଇ ଗୁଣରେ ସଞ୍ଚାରିତ ହୋଇଗଲା ।

ତା'ପରେ ହାତଟିକୁ ଛାଡ଼ି ଦେଲା କ୍ଷଣି ଏହା ନିମିଷକ ମଧ୍ୟରେ ତା'ର ଶକ୍ତିକୁ ସ୍ଥାନାନ୍ତର କରି ଦିଏ ତୀର ମଧ୍ୟକୁ । ତୀରଟି ତା'ପରେ ଆଖି ପଲକକେ ବାଜପକ୍ଷୀ ଭଳି ଯାଇ ପଡ଼େ ଶିକାର ଉପରେ ।

ତୀର ଏବଂ ବର୍ଚ୍ଛା ଦେଖିବାକୁ ଦୁଇ ଭାଇ ଭଳି । କିନ୍ତୁ ତୀର ତା ଭାଇଠାରୁ ହଜାର ହଜାର ବର୍ଷ ଛୋଟ ।

ପ୍ରାଗୈତିହାସିକ ମଣିଷକୁ ହଜାର ହଜାର ବର୍ଷ ଲାଗିଥିଲା ତୀର ଆବିଷ୍କାର କରିବା ପାଇଁ ।

ପ୍ରଥମେ ସେ ଧନୁରୁ ତୀର ନିକ୍ଷେପ କରୁ ନଥିଲା, ନିକ୍ଷେପ କରୁଥିଲା ବର୍ଚ୍ଛାକୁ । ତେଣୁ କରି ତା'ର ଧନୁ ଥିଲା ଏତେ ବଡ଼ । ସେତେବେଳେ ତା'ର ଧନୁ ତା'ର ଭଳି ଉଚ୍ଚା ଥିଲା ।

ଏହି ଭାବେ ମଣିଷ ତା'ର ଦୁର୍ବଳ ଏବଂ କ୍ଷୁଦ୍ର ହାତକୁ ଆହୁରି ଲମ୍ବ ଏବଂ ଶକ୍ତିଶାଳୀ କଲା । ସେ ଯେତେବେଳେ ହରିଣର ଶିଙ୍ଗ ବା ମାମଥ୍‌ର ଦାନ୍ତରୁ ତୀକ୍ଷ୍ଣ ବର୍ଚ୍ଛା ତିଆରି କରି ପାରିଲା, ସେତେବେଳେ ସେ ଜୀବମାନଙ୍କର ହତିଆରକୁ, ଅର୍ଥାତ୍ ସେମାନଙ୍କ ଶିଙ୍ଗ ଆଉ ଦାନ୍ତକୁ, ସେମାନଙ୍କ ବିରୁଦ୍ଧରେ ଲଗେଇଲା । ଏହା ଫଳରେ ସେ ସମସ୍ତ ଜୀବନ୍ତ ପ୍ରାଣୀମାନଙ୍କ ମଧ୍ୟରେ ନିଜକୁ ମହାବଳୀରେ ପରିଣତ କରି ପାରିଲା ।

ଯେଉଁ ହାତ ଏକ ବଲ୍ଲମକୁ ନିକ୍ଷେପ କରି ପାରେ, ଗୁଣକୁ ଟାଣି ତୀର ମାରି ପାରେ, ସେ ଏବେ ଆଉ ଏକ ସାଧାରଣ ହାତ ହୋଇ ରହିଲା ନାହିଁ । ସେ ହେଲା ଏକ ମହାବଳୀର ହାତ ।

ଏଥର ସେ ତରୁଣ ମହାବଳୀଟି ଶିକାର କରିବାକୁ ଗଲେ ଗୋଟିଏ ପଶୁ ଶିକାର କଲା ନାହିଁ, ସମଗ୍ର ପଲଟାକୁ ମାରି ପକାଇଲା ।

ଧନୁ ଆବିଷ୍କାର ହୋଇଥିଲା ହିମବାହ ସବୁ ଥମି ଆସିଲା ପରେ କିନ୍ତୁ ସେତେବେଳେ ଆମର ନାୟକ ପହଞ୍ଚିଥିଲା ତୁଷାର ଯୁଗରେ ।

## ଜୀବନ୍ତ ଝରଣା ।

ଫ୍ରାନସ୍‌ର ସାଲୁତ୍ରା ନାମକ ସ୍ଥାନରେ ଗୋଟାଏ ତୀକ୍ଷ୍ଣ ପାହାଡ଼ ଅଛି ।

ଏହି ପାହାଡ଼ର ପାଦ ଦେଶରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ହାଡ଼ର ବିରାଟ ଏକ ଗଦା ଆବିଷ୍କାର କରିଛନ୍ତି । ସେଇସବୁ ହାଡ଼ ମଧ୍ୟରେ ଅଛି ମାମଥ୍‌ର କାନ୍ଧ ହାଡ଼, ପ୍ରାଗୈତିହାସିକ ଷଣ୍ଢର ଶିଙ୍ଗ ଏବଂ ଗୁହାରେ ରହୁଥିବା ଭାଲୁର ଖପୁରି ସବୁ ।

କିନ୍ତୁ ଏସବୁ ମଧ୍ୟରେ ସବୁଠାରୁ ବେଶି ଘୋଡ଼ା ହାଡ଼ ମିଳିଛି । କେତେକ ଜାଗାରେ ମଣିଷଠାରୁ ଆହୁରି ଉଚ୍ଚର ହାଡ଼ ଗଦାସବୁ ରହିଛି । ବିଜ୍ଞାନୀମାନେ ଯେତେବେଳେ ଏହିସବୁ ହାଡ଼କୁ ପରୀକ୍ଷା କଲେ, ସେମାନେ ଦେଖିଲେ ଗୋଟାଏ ଦିଇଟା ନୁହଁ, ହଜାର ହଜାର ଘୋଡ଼ାର କଙ୍କାଳ ସେଠି ପଡ଼ି ରହିଛି ।

ଏତେ ଗୁଡ଼ାଏ ଘୋଡ଼ାର ହାଡ଼ ସେଠି ଜମିଲା କେମିତି ?

ଗୋଟି ଗୋଟି କରି ପରୀକ୍ଷା କଲା ବେଳେ ବୈଜ୍ଞାନିକମାନେ ଦେଖିଛନ୍ତି, ସେସବୁ ମଧ୍ୟରୁ ଅନେକ ହାଡ଼ ଫଟା, ଭଙ୍ଗା ବା ଦରପୋଡ଼ା । ସେଥିରୁ ପରିଷ୍କାର ଜଣାଯାଏ, ଏହି ସବୁ ହାଡ଼ ପ୍ରାଗୈତିହାସିକ ରୋଷେଇଆମାନଙ୍କ ହାତରୁ ଏଠାକୁ ଆସିଛି । ଏଗୁଡ଼ାକ ସତକୁ ସତ ଘୋଡ଼ାମାନଙ୍କର କବର ନଥିଲା । ଏଟା ଥିଲା ରନ୍ଧା ହୋଇଥିବା ଖାଦ୍ୟ ସାମଗ୍ରୀର ଏକ ବିରାଟ ମଇଳାସ୍ତୂପ ।

ଏଡ଼େ ବଡ଼ ମଇଳାସ୍ତୂପ ତ ବର୍ଷକରେ ଜମି ପାରେନା । ସୁତରାଂ ଆମେ ସହଜରେ ଅନୁମାନ କରି ପାରିବା ଯେ, ଏହି ଅଞ୍ଚଳରେ ଲୋକେ ବହୁ ଯୁଗ ଧରି ବାସ କରୁଥିଲେ ।

କିନ୍ତୁ ଅନ୍ୟ ସ୍ଥାନରେ ନହୋଇ, ଏ ପାହାଡ଼ ତଳେ କାହିଁକି ଏସବୁ ମଇଳା ଜମିଲା ? ଅନ୍ୟ ସମତଳ ଭୂଇଁ ଛାଡ଼ି ଏହି ଜାଗାରେ ପ୍ରାଗୈତିହାସିକ ଶିକାରୀମାନେ କେବଳ ଆକସ୍ମିକ ଭାବେ ଏଠାରେ ବାସ କରିଥିଲେ ?

ସମ୍ଭବତଃ ତାହାହିଁ ଘଟିଥିଲା ।

ସେମାନେ ହୁଏତ ସମତଳ ଭୂଇଁରେ କେବେ ଏକ ଘୋଡ଼ା ପଲ ଦେଖିବାକୁ ପାଇଥିଲେ । ସଙ୍ଗେ ସଙ୍ଗେ ଉଚ୍ଚା ଘାସ ବୁଦା ଭିତରେ ସାବଧାନ ସହକାରେ ସେମାନଙ୍କ ଆଡ଼କୁ ଆଗେଇଲେ । ପ୍ରତିଟି ଶିକାରୀ ହାତରେ ଥିଲା ଏକାଧିକ ବଲମ । ସବା ଆଗରେ ଯେଉଁମାନେ ଥିଲେ ସେମାନେ ଅନ୍ୟମାନଙ୍କୁ ସଂକେତ ଦେଇ ଜଣାଇ ଦେଲେ ଘୋଡ଼ାମାନେ କେଉଁଠି ଅଛନ୍ତି, ସେମାନଙ୍କ ସଂଖ୍ୟା କେତେ ଏବଂ ସେମାନେ କେଉଁ ଆଡ଼କୁ ଆଗଉଛନ୍ତି ।

ତା'ପରେ ଶିକାରୀମାନେ ଘେରି ଆଡ଼ୁ ଘେରି ଯାଇ ସେମାନଙ୍କ ପାଖକୁ ଲାଗି ଆସିଲେ । ଦୂରରୁ ଘୋଡ଼ାମାନେ ସମତଳ ଭୂଇଁରେ କଳା କଳା ଦାଗ ଭଳି ଦିଶୁ-ଥିଲେ । ବର୍ତ୍ତମାନ କିନ୍ତୁ ପରିଷ୍କାର ଭାବେ ସେମାନଙ୍କୁ ଦେଖି ହେଲା । ସେମାନଙ୍କର ମୁଣ୍ଡଗୁଡ଼ାକ ଥିଲା ବଡ଼, ଗୋଡ଼ସବୁ ସରୁ ଏବଂ ଦେହରେ ଲମ୍ବା ଲମ୍ବା ଲୋମ ।

ଘୋଡ଼ାମାନେ ଭୟରେ ଅସ୍ତବ୍ୟସ୍ତ ହୋଇ ପଡ଼ିଲେ । ଶତ୍ରୁ ସେମାନଙ୍କ ଉପରେ ଆକ୍ରମଣ କରୁଛି ବୋଲି ଅନୁମାନ କରି ପ୍ରାଣ ବାକଳରେ ଧାଇଁବାକୁ ଲାଗିଲେ । କିନ୍ତୁ ସେତେବେଳକୁ ଅନେକ ଡେରି ହୋଇ ଯାଇଥିଲା । ବର୍ଷା ପଡ଼ିଲା ଭଳି ବଲମସବୁ ଆସି ସେମାନଙ୍କ ଦେହରେ ଭୁଷି ହୋଇ ଗଲା । ପକ୍ଷହୀନ ଚଢ଼େଇଗୁଡ଼ାଏ ଯେମିତି ଥଣ୍ଡରେ ସେମାନଙ୍କୁ ବିନ୍ଧି ପକାଉଥାନ୍ତି ।

ନଳିଗୋଡ଼, ପିଠି ଏବଂ ଗଳା ଘେରି ଆଢ଼େ ସେସବୁ ଗଳି ଯାଉଥାଏ । ଯିବେ ବା ଆଉ କୁଆଡ଼କୁ ? ଶତ୍ରୁମାନେ ସେତେବେଳେ ସେମାନଙ୍କୁ ତିନି ଦିଗରୁ ଘେରି ଯାଉଥାନ୍ତି । ଏହି ଜୀବନ୍ତ ପ୍ରାଚୀର ଭିତରୁ ମାତ୍ର ଗୋଟିଏ ବାଟ ଥାଏ ପଳାଇ ଯିବାକୁ । ବୋବାଳି ଛାଡ଼ି ହତଜ୍ଞାନ ଶୂନ୍ୟ ହୋଇ ସେମାନେ ଧାଇଁବାକୁ ଲାଗିଲେ ସେଇ ବାଟରେ । ଶିକାରୀମାନେ ବି ତାହାହିଁ ଖୋଜୁଥିଲେ । ବଡ଼ ପାଟି କରି ସେମାନେ ଘୋଡ଼ା ପଲଟାକୁ ପାହାଡ଼ର ଉଠାଣିକୁ ତଡ଼ି ନେଇଗଲେ । ଆକାଶ ଫଟାଇ ଭୟରେ ପାଗଳ ଭଳି ସେମାନେ ଧାଇଁବାରେ ଲାଗିଲେ ସାମନାକୁ । କୁଆଡ଼େ ଯାଉଛନ୍ତି ସେମାନଙ୍କୁ ଜଣା ନଥାଏ । ଉଡ଼ନ୍ତ ଲାଞ୍ଜ ଏବଂ ଝଙ୍କେଇ ଉଠିଥିବା ପିଠିସବୁ ଜୀବନ୍ତ ଏକ ନଈର ସୁଅ ପରି ମାଡ଼ି ଚାଲିଲା । ପାହାଡ଼ ଉପରକୁ ସୁଅଟା ମାଡ଼ି ଗଲା । ତା'ପରେ ହଠାତ୍ ସାମନାରେ ଏକ ପାହାଡ଼ ତୀଖଟା ଶେଷ ହୋଇ ଯାଇଛି, ତା'ପରେ ଅତଳ ଗହ୍ୱର । ଆଗରେ ଥିବା ଘୋଡ଼ାମାନେ ଏକବାରେ ଧାରରେ । ଆଗରେ ବିପଦ ଦେଖି ବିକଳରେ ଚିତ୍କାର କରି ସେମାନେ ପଛକୁ ଫେରିବାକୁ ଚାହିଁଲେ । କିନ୍ତୁ ସେତେବେଳକୁ ଅନେକ ବିଳମ୍ବ ହୋଇ ଯାଇଥିଲା । ସେମାନେ ଠିଆ ହୋଇଗଲା ବେଳକୁ ପଛ ଆଡ଼ୁ ଅନ୍ୟ ଘୋଡ଼ାମାନେ ସେମାନଙ୍କୁ

ଫେରେଇ ନେଇଗଲେ । ଧକ୍କା ପରେ ଧକ୍କା । ଦଳ ଦଳ ହୋଇ ସେମାନେ ପାହାଡ଼ ତାଖରୁ ଖସି ପଡ଼ିଲେ ତଳକୁ ।

ଦେଖୁଁ ଦେଖୁଁ ଘଟଣା ଯାକ ଏକ ଜୀବନ୍ତ ସ୍ରୋତରୁ ଏକ ଜୀବନ୍ତ ଜଳ ପ୍ରପାତ ପରି ତଳକୁ ଖସିଗଲା ଏବଂ ଦେଖୁଁ ଦେଖୁଁ ତଳେ ଜମିଗଲା ମରା ଘୋଡ଼ାମାନଙ୍କର ଏକ ବିରାଟ ସ୍ତୂପ ।

ଏଥର ଶିକାର ମଜା ।

ପାହାଡ଼ର ତୀଖ ଶୁଙ୍ଘ ତଳେ ଦାଉ ଦାଉ ହୋଇ ଜଳି ଉଠିଲା ନିଆଁ । ବୁଢ଼ାମାନେ ଶିକାରକୁ ଭାଗ କରିବାରେ ଲାଗି ପଡ଼ିଲେ । କାରଣ ସବୁତକ ଶିକାର ଥିଲା ସମଗ୍ର ଦଳର ସଂପତ୍ତି । କିନ୍ତୁ ଦଳର ସବୁଠୁଁ ସାହସୀ ଆଉ ଦକ୍ଷ ଶିକାରୀଙ୍କ ଭାଗରେ ପଡ଼ିଲା ଭଲ ଭଲ ଅଂଶ ।

## ନୂଆ ମଣିଷ ।

ଘଡ଼ିର ଘଣ୍ଟା କଣ୍ଟାକୁ ଦେଖିଲେ ସେ ଘୂରୁଛି ବୋଲି ମନେ ହୁଏ ନାହିଁ । କିନ୍ତୁ ଘଣ୍ଟାଏ ଦିଘଣ୍ଟା ପାର ହୋଇ ଗଲା ପରେ ଦେଖାଯାଏ ସେଟା ତା'ର ପୂର୍ବ ସ୍ଥାନରେ ନାହିଁ ।

ଜୀବନ କ୍ଷେତ୍ରରେ ମଧ୍ୟ ଠିକ୍ ଏହି ଭଳି ଘଟିଥାଏ । ଆମର ଚତୁର୍ପାର୍ଶ୍ବରେ ଏବଂ ନିଜ ମଧ୍ୟରେ ଯେଉଁ ପରିବର୍ତ୍ତନସବୁ ଘଟୁଛି ସେସବୁକୁ ଆମେ ତତ୍କ୍ଷଣାତ୍ ଲକ୍ଷ୍ୟ କରି ପାରେନା । ଇତିହାସର ଘଣ୍ଟା କଣ୍ଟା ଯେପରି ମନେ ହୁଏ, ସ୍ଥିର ହୋଇ ରହିଛି । ଏହିପରି ଅନେକ ବର୍ଷ ଗଲା ପରେ ଆମେ ହଠାତ୍ ଆବିଷ୍କାର କରୁ ଯେ, ଘଣ୍ଟା କଣ୍ଟା ଘୂରୁଥିଲା, ଆମେ ମଧ୍ୟ ବଦଳୁଥିଲୁ ଏବଂ ଆମ ଘରି ଦିଗର ସବୁ କିଛି ବି ବଦଳୁଥିଲା ।

ଆମର ଡାଇରି, ଫଟୋ, ଖବରକାଗଜ ଏବଂ ବହିକୁ ଦେଖି ଆମେ ପୁରୁଣାକୁ ନୂଆ ସହିତ ତୁଳନା କରି ପାରେ । ଏହି ତୁଳନା ପାଇଁ ଆମ ପାଖରେ ଜିନିଷପତ୍ର ରହିଛି । କିନ୍ତୁ ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନଙ୍କ ନିକଟରେ ସେଭଳି କିଛି ସୁଯୋଗ ନଥିଲା ପୁରୁଣା ସହିତ ନୂଆକୁ ତୁଳନା କରିବା ପାଇଁ । ସେମାନେ ଭାବୁଥିଲେ ଜୀବନ ହେଉଛି ଗତିହୀନ, ସେଥିରେ କିଛି ବଦଳେ ନାହିଁ । ପୁରୁଣା ସହିତ ନୂଆକୁ ତୁଳନା ନକଲେ କୌଣସି ପରିବର୍ତ୍ତନକୁ ଲକ୍ଷ୍ୟ କରିବା ଅସମ୍ଭବ, ଠିକ୍ ଯେମିତି ଘଡ଼ିରେ ସଂଖ୍ୟା ଲେଖା ନଥିଲେ ଘଣ୍ଟାର କଣ୍ଟାଗୁଡ଼ିକ ଘୂରୁଛି କି ନାହିଁ ଜାଣିବାଟା ଅସମ୍ଭବ ।




କ୍ରୋ ମାଗନନ୍ ମନୁଷ୍ୟ ଏବଂ ଆଧୁନିକ ମନୁଷ୍ୟର ବାହ୍ୟରୂପରେ କୌଣସି ପ୍ରଭେଦ ନଥିଲା । ଏହି କ୍ରୋ ମାଗନନ୍ ମନୁଷ୍ୟର ରୂପ ଭୂମିଆରେ ମିଳିଥିବା ଖପୁରିର ଆଧାରରେ ଚିତ୍ରିତ ।

ସେତେବେଳେ ପ୍ରତ୍ୟେକ କାରିଗର କୌଣସି ପଥର ହତିଆର ତିଆରି କଲା ବେଳେ ତାକୁ ଯେଉଁ ଲୋକ ଶିକ୍ଷା ଦେଉଥିଲା, ତା'ର ସମସ୍ତ କାଇଦା ଏବଂ କାମର ପ୍ରଣାଳୀକୁ ସେ ଅନୁକରଣ କରୁଥିଲା ।

ନୂଆ ଘରଟିଏ ତିଆରି କଲାବେଳେ ସ୍ତ୍ରୀଲୋକମାନେ ଠିକ୍ ପୂର୍ବ ଭଳି ଚୁଲୀଟିଏ ପାରୁଥିଲା, ଯେମିତି ତା'ର ବୁଢ଼ୀମା କରୁଥିଲା ।

ଶିକାରୀମାନେ ସେମାନଙ୍କ ପୁରୁଣା ପରମ୍ପରା ଢଙ୍ଗରେ ଶିକାର ପାଖକୁ ସତର୍କରେ ଯାଉଥିଲେ ।

ତା ସତ୍ତ୍ୱେ ମଣିଷ ଅଜାଣତରେ ତା'ର ହତିଆର, ବାସସ୍ଥାନ ଆଉ କାର୍ଯ୍ୟର ଢଙ୍ଗକୁ କ୍ରମଶଃ ବଦଳେଇ ଗ୍ଲଇଥିଲା ।

ପ୍ରତିଟି ନୂଆ ହତିଆର ପ୍ରଥମେ ଅନେକ ପରିମାଣରେ ପୁରୁଣା ହତିଆର ଭଳି ଦିଶୁଥିଲା । ପ୍ରଥମ ବଲ୍ଲମଟି ଏକମୁନିଆ ପଥର ବର୍ଚ୍ଛାଠାରୁ ବିଶେଷ ତଫାତ୍ ନଥିଲା । ପ୍ରଥମ ତୀରଟି ମଧ୍ୟ ଦେଖା ଯାଉଥିଲା ବଲ୍ଲମ ଭଳି । କିନ୍ତୁ ତୀର ଆଉ ବଲ୍ଲମ ମଧ୍ୟରେ ଆକାଶ ପାତାଳ ତଫାତ୍ । ଏବଂ ତୀର ଧନୁ ଦ୍ୱାରା ଶିକାର କରିବାଟା କୌଣସିମତେ ବର୍ଚ୍ଛା ଦ୍ୱାରା ଶିକାର କରିବା ସହିତ ସମାନ ନୁହଁ ।

ମଣିଷର ହତିଆର ଆଉ ଯନ୍ତ୍ରପାତିର କେବଳ ପରିବର୍ତ୍ତନ ହେଉ ନଥିଲା – ସେ ନିଜେ ମଧ୍ୟ ବଦଳୁ ଥିଲା । ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କ ଦ୍ୱାରା ଖୋଳା ହେଉଥିବା ବିଭିନ୍ନ ସ୍ଥାନରୁ ମିଳୁଥିବା କଙ୍କାଳଗୁଡ଼ିକରୁ ସେସବୁର ବିସ୍ତର ପ୍ରମାଣ ମିଳିଥାଏ । ପ୍ରଥମେ ଯେଉଁ ମଣିଷ ଗୁହାରେ ବାସ କରିବା ପାଇଁ ପ୍ରବେଶ କରିଥିଲା ଏବଂ ତୁଷାର ଯୁଗ ପରେ ଯେଉଁ ମଣିଷ ଗୁହା ଛାଡ଼ି ସମତଳରେ ଆସି ବାସ କଲା ସେମାନେ ସମାନ ନୁହନ୍ତି – ସେମାନେ ଦୁଇଟି ପୃଥକ୍ ପ୍ରାଣୀ । ନିଆଣ୍ଡେରଥାଲ୍ ମଣିଷ ହିଁ ପ୍ରଥମେ ବାସ କରିଥିଲା ଗୁହାରେ । ପିଠିଟା ତା'ର ଥିଲା କୁଜା । ଚାଲିବା ଢଙ୍ଗଟା ମଧ୍ୟ ଥିଲା ଅଷ୍ଟବକ୍ର ପରି, ମୁହଁ ଉପରେ ତା'ର କପାଳ ନଥିଲା ବୋଲି କହିଲେ ଚଳେ, ଚିବୁକ ବି ନଥିଲା ତା'ର । କିନ୍ତୁ କ୍ରୋ ମାଗନନ୍ ମଣିଷ, ଯିଏକି ସବା ଶେଷରେ ଗୁହା ପରିତ୍ୟାଗ କରିଥିଲା, ତା ଚେହେରା ଆଉ ଆମ ଚେହେରା ମଧ୍ୟରେ କୌଣସି ଫରକ ଥିଲା ବୋଲି ମନେ ହୁଏ ନାହିଁ ।

## ମଣିଷ ଘର ତିଆରି କଲା ।

ମଣିଷର ଜୀବନଧାରାରେ ପରିବର୍ତ୍ତନ ଘଟିବା ସଙ୍ଗେ ତା'ର ରହିବା ଘର ମଧ୍ୟ ବଦଳିଲା । ତା'ର ରହିବା ଘରର ଇତିହାସ ଯଦି ଆମେ ଲେଖିବାକୁ ଯାଏଁ ତେବେ ଆମକୁ ଗୁହାରୁ ଆରମ୍ଭ କରିବାକୁ ହେବ । ଗୁହାଗୁଡ଼ିକୁ କିନ୍ତୁ ମଣିଷ ଗଢ଼ି ନଥିଲା । ସେଗୁଡ଼ିକୁ ସେ ପାଇଥିଲା ପ୍ରକୃତିଠାରୁ ।

କିନ୍ତୁ ପ୍ରକୃତି ଭଲ ନିର୍ମାତା ନୁହେଁ । ସେ ପାହାଡ଼ ପର୍ବତ ଏବଂ ସେଥିରେ ଥିବା ଗୁହା ତିଆରି କଲାବେଳେ କେବେ ଭାବି ନଥିଲା ଯେ, ସେଥିରେ କେବେ କେହି ବାସ କରିବେ । ତେଣୁ କରି ପ୍ରାଗୈତିହାସିକ ମଣିଷ ଯେତେବେଳେ ରହିବା ପାଇଁ ଗୁହା ଖୋଜୁଥିଲା ସେ ମନ ମୁତାବ ପାଇ ନଥିଲା । ବେଳେ ବେଳେ ସେସବୁ ଅନେକ କମ୍ ଉଚ୍ଚା ଥିଲା, କାନ୍ଥଗୁଡ଼ିକ ମଧ୍ୟ ଚଳପ୍ରଚଳ ପାଇଁ ବିପଜ୍ଜନକ ଥିଲା, ଅଥବା ପ୍ରବେଶ ଦ୍ୱାରଟା ଏତେ ଛୋଟ ଥିଲା ଯେ, ଘୋଷାରି ହୋଇ ତା ଭିତରକୁ ପଶିବାକୁ ହେଉଥିଲା ।

ତେଣୁ ସମୁଦାୟ ଦଳଟା ଲାଗି ପଡ଼ୁଥିଲେ ତାକୁ ଅଦଳବଦଳ କରି ନେଇ ଉପଯୋଗୀ କରିନେବାକୁ । ଚଟାଣ ଏବଂ କାନ୍ଥକୁ ହାଣିକି ସମତଳ କରୁଥିଲେ ପଥର ହତିଆର ବା କାଠରେ ।

ଗୁହାର ବାଟ ମୁହଁରେ ଗୋଟେ ପାଖକୁ ଗାତ କରି ଚୁଲୀ ପାରୁଥିଲେ । ଘରି ପାଖରେ ତା'ର ଘେରେଇ ଦେଉଥିଲେ ପଥରସବୁକୁ । ମାମାନେ ସେମାନଙ୍କ ପିଲାଙ୍କ

ପାଇଁ ଗୁହା ଭିତରେ ବଡ଼ ବଡ଼ ଗାତ ଖୋଳି ଏବଂ ସେଥିରେ ଉଷ୍ମ ପାଉଁଶ ଭରି ଦେଇ ଶେଯ ତିଆରି କରୁଥିଲେ ।

ଗୁହାର ଏକ କଣକୁ ଭାଲୁ ମାଂସ ଏବଂ ଅନ୍ୟାନ୍ୟ ଖାଦ୍ୟ ସାମଗ୍ରୀ ରଖିବା ପାଇଁ ତିଆରି କରୁଥିଲେ ଭଣ୍ଡାର ଘର ।

ଏହି ଭାବେ ପ୍ରାଗୈତିହାସିକ ମଣିଷ ପ୍ରକୃତି ଦ୍ୱାରା ଦତ୍ତ ଗୁହାକୁ ନିଜର ଶ୍ରମ ବଳରେ ପରିବର୍ତ୍ତନ କରି ମଣିଷର ବାସ ସ୍ଥାନରେ ପରିଣତ କରିଥିଲା ।

ସମୟ ଗଡ଼ି ଚାଲିବା ସଙ୍ଗେ ସଙ୍ଗେ ସେ ଅଧିକରୁ ଅଧିକ ନଜର ଦେଲା ତା ବାସ ସ୍ଥାନରେ ଉନ୍ନତି ପାଇଁ ।

କେଉଁଠି ପାହାଡ଼ ଆଗକୁ ମୁଣ୍ଡ ବାହାର କରିଛି ଦେଖିଲେ ସେଠି ସେ ପାଚିରୀ ତିଆରି କରି ତାକୁ ଆବଦ୍ଧ କରି ନେଲା, କିମ୍ବା ଆଉ କେଉଁଠି ପାଚିରୀ ଭଳି ପାହାଡ଼ର କୌଣସି ଅଂଶ ଛିଡ଼ା ହୋଇଥିଲେ ତା ଉପରେ ଡାଳପତ୍ର ବା ଚମଡ଼ା ଦେଇ ଛାତ ତିଆରି କରି ନେଲା ।

ଦକ୍ଷିଣ ଫ୍ରାନସ୍‌ର ଅନେକ ପର୍ବତରେ ଏବେ ବି ସେଇ ଆଦିମ ଯୁଗର ବାସସ୍ଥାନ ଦେଖିବାକୁ ମିଳେ । ସ୍ଥାନୀୟ ଲୋକେ ସେସବୁକୁ "ଭୂତର ଚୁଲୀ" ବୋଲି କହିଥାନ୍ତି । ସେମାନଙ୍କ ଧାରଣା ଭୂତ ଛଡ଼ା ଆଉ କିଏ ଏତେ ପାହାଡ଼ ମଧ୍ୟରେ ନିଆଁ ପାଇ ପାରେ । କିନ୍ତୁ ନିଜର ଆଦିମ ପୂର୍ବପୁରୁଷମାନଙ୍କ ସଂପର୍କରେ ଭଲକି ଟିକେ ଜାଣିଥିଲେ, ସେମାନେ ବୁଝି ପାରନ୍ତେ ଏସବୁ ଭୂତର କାମ ନୁହଁ, ମଣିଷ ହାତରେ ସେସବୁ ତିଆରି ।

ଏଠାରେ ପ୍ରାଗୈତିହାସିକ ଯୁଗର ଶିକାରୀମାନଙ୍କ ଦୃଷ୍ଟିରେ ଝୁଲି ଆସିଥିବା ପାହାଡ଼ର ଦୁଇ ପାଖକୁ ଦୁଇଟା ପାଚିରୀ ପଡ଼ିଥିଲା । ପାଚିରୀ ଦିଇଟା ଥିଲା ପାହାଡ଼ର ଦୁଇଧାରରୁ ମାଡ଼ି ଆସିଥିବା ପଥରସବୁ । ତା'ପରେ ସେମାନେ ଆଉ ଦୁଇଟି ପାଚିରୀ ଗଢ଼ି ସେ ପଥର ପାଚିରୀ ସହିତ ଯୋଡ଼ି ଦେଇଥିଲେ । ପାଚିରୀ ଦୁଇଟି ମଧ୍ୟରୁ ଗୋଟିକୁ ସେମାନେ ପଥର ଖଣ୍ଡରେ ତିଆରି କରିଥିଲେ ଏବଂ ଅନ୍ୟଟିକୁ ଗଛର ଡାଳପତ୍ର ଛନ୍ଦିକି ତା ଉପରେ ଚମଡ଼ା ଢାଙ୍କି ଦେଇଥିଲେ । ଏହି ଚତୁର୍ଥ ପାଚିରୀଟି କେମିତି ଦିଶୁଥିବ, ସେ କଥା କଳ୍ପନାରେ ଆମେ କେବଳ ଭାବି ପାରେ, କାରଣ କାଳର କବଳରେ ସେସବୁ ଧୂଳି ପାଇଟି ଯାଇଛି ।

ଏହା ଛଡ଼ା ମାଟିରେ ଖୋଳା ହୋଇଥିବା ଏକ ବିରାଟ ଖାତ ଘେରି ପାଖରେ ପାଚିରୀ ସବୁ ଦେଖିବାକୁ ମିଳିଛି । ଏହି ଖାତର ତଳ ଦେଶରେ ପ୍ରତ୍ନତତ୍ତ୍ୱବିଦ୍‌ମାନେ ମୁନିଆ ପଥର ଏବଂ ହାଡ଼ ଆଉ ଶିଙ୍ଗ ତିଆରି ହତିଆର ସବୁ ଆବିଷ୍କାର କରିଛନ୍ତି ।

"ଭୂତର ଚୁଲୀଟା" ଥିଲା ଅଧା ଘର ଆଉ ଅଧା ଗୁମ୍ଫା । ଏଇଠୁ ମଣିଷର ପ୍ରକୃତ ଘର ପର୍ଯ୍ୟନ୍ତ ପଥଟା ଖୁବ୍ ବେଶି ନୁହଁ । କାରଣ ପ୍ରାଗୈତିହାସିକ ମଣିଷ ଦୁଇଟା କାନ୍ଥ ତିଆରି କରି ସାରିଲା ପରେ ଚାରିଟା କାନ୍ଥ ଗଢ଼ିବାକୁ ଶୀଘ୍ର ଶିଖି ଯାଇଥିଲା ।

ତେଣୁ ପ୍ରଥମ ବାସଗୃହସବୁ ଆଉ ଗୁମ୍ଫା, ଝୁଲି ପଡ଼ିଥିବା ପାହାଡ଼ ଖଣ୍ଡର ତଳରେ ନ ହୋଇ ଖୋଲା ସମତଳ ଭୂଇଁରେ ମୁଣ୍ଡଟେକି ଉଠିଥିଲା ।

## ପ୍ରାଗୈତିହାସିକ ଶିକାରୀର ଘର ।

୧୯୨୫ ମସିହା ହେମନ୍ତ କାଳର କଥା । ରୁଷିଆର ଡନ୍ ନଈ କୂଳବର୍ତ୍ତୀ ଗାଗାରିନୋ ଗାଁରେ ଆଣ୍ଟୋନଭ୍ ନାମକ ଜଣେ ଚାଷୀ ତାଙ୍କ ବାଡ଼ିରେ ମାଟି ଖୋଳୁ ଥିଲେ । ନୂଆ ଏକ ଘରର କାନ୍ଥରେ କାଦୁଅ ଲେପିବା ପାଇଁ ସେ କାଦୁଅ ତିଆରି କରୁଥିଲେ ।

ହଠାତ୍ ତାଙ୍କ କୋଦାଳରେ କ'ଣ ଗୋଟାଏ ଲାଗିଲା । ସେ ଦେଖିଲେ ସେସବୁ ହେଉଛି ହାଡ଼ ।

ସେତିକି ବେଳେ ଗାଁ ଶିକ୍ଷକ ଭ୍ଲାଦିମିରଭ୍ ସେଇ ବାଟେ ଯାଉଥିଲେ । ଆଣ୍ଟୋନଭ୍ ତାଙ୍କୁ ଡାକି ପଚାରିଲେ :

"ଏହାଡ଼ଗୁଡ଼ାକ ଏଠିକି କେମିତି ଆସିଲା ! ଆଉ ଖୋଳି ହେଉନି, ମୋ କୋଦାଳଟା ଆଉ ଟିକକେ ଭାଙ୍ଗି ଯାଇଥାନ୍ତା ।"

ଆଣ୍ଟୋନଭ୍ ଶିକ୍ଷକଙ୍କୁ ନକହି ଆଉ କାହାକୁ କହିଥିଲେ ସେ ହୁଏତ ଟିକେ ଅଟକି ଯାଇ ତା'ପରେ ନିଜ ବାଟରେ ଚାଲି ଯାଇଥାନ୍ତା ।

କିନ୍ତୁ ଗାଁ ଶିକ୍ଷକ ବିଜ୍ଞାନ ବିଷୟରେ ଖୁବ୍ ଆଗ୍ରହୀ ଥିଲେ ।

ସେ ବାଡ଼ି ମଧ୍ୟକୁ ଆସି ଖଣ୍ଡେ ବଡ଼ ଦାନ୍ତକୁ ପରୀକ୍ଷା କରି ଦେଖିଲେ । ହାଡ଼ଟା ଖୁବ୍ ଶାଉଁଳିଆ ଲାଗୁଥିଲା ।

ଏଉଳି ଏକ ବଡ଼ ଦାନ୍ତ ଆଉ କାହାର ହୋଇ ପାରେ ? ନିଶ୍ଚୟ ଏ ବିଶାଳକାୟ ମାମଥ୍‌ର ହେବ ।

ଡନ୍ ନଈ କୂଳରେ ପୁଣି ମାମଥ୍ ! ଏତ ବଡ଼ ଆଶ୍ଚର୍ଯ୍ୟ କଥା ।

ଶିକ୍ଷକ ମହାଶୟ ଗୋଛାଏ ହାଡ଼କୁ ଏକ ଗାଡ଼ିରେ ଲଦି ନିକଟବର୍ତ୍ତୀ ସହରକୁ ନେଇଗଲେ । ସେଠି ଏକ ଛୋଟ ମିଉଜିଅମ୍ ଥିଲା ।

ଏହି ଭଳି ଏକ ମିଉଜିଅମ୍‌ରେ ଆଶ୍ଚର୍ଯ୍ୟ ଜିନିଷସବୁ ପାଖକୁ ପାଖକୁ ଲାଗି

ରହିଥାଏ । ଗୋଟିଏ କୋଠରୀରେ ଷଣ୍ଢମଲମଲ ପଥର ନିର୍ମିତ କିଉପିଡ୍‌ଙ୍କ ମୂର୍ତ୍ତି ପାଖକୁ ୧୭ ଶତାବ୍ଦୀର ଜଣେ ସମ୍ଭ୍ରାନ୍ତ ବ୍ୟକ୍ତିଙ୍କର ତୈଳଚିତ୍ର ଥୁଆ ହୋଇଥାଏ ।

ଆଉ ଏକ କୋଠରୀରେ ସ୍ଥାନୀୟ ଖଣିଜ ପଥର ଏବଂ ଉଦ୍‌ଭିଦ ସାଙ୍ଗକୁ ପାପିଅର କାଗଜରେ ଅଙ୍କିତ ପିଥେକ୍ୟାନ୍‌ଥ୍ରପାସ୍‌ର ଛବି । ଯେମଣ ହାତରେ ତା'ର ଏକ ବାଡ଼ି ।

ଏହି ଭଳି ଏକ ମିଉଜିଅମ୍‌କୁ ଶିକ୍ଷକ ଭ୍ଲାଦିମିରଭ୍ ସେଇସବୁ ହାଡ଼କୁ ନେଇ ଆସିଲେ ।

ମିଉଜିଅମ୍‌ର ଅଧ୍ୟକ୍ଷ ହୁଏତ ମାମଥ୍‌ର ସେ ଦାନ୍ତ ଆଉ ଅନ୍ୟ ହାଡ଼ଗୁଡ଼ିକୁ ତାଙ୍କ ତାଲିକାରେ ଅନ୍ତର୍ଭୁକ୍ତ କରି ନେଇ ଖଣିଜ ପଥର ଆଉ ପିଥେକ୍ୟାନ୍‌ଥ୍ରପାସ୍ ପାଖକୁ ଥୋଇ ଦେଇ ପାରିଥାନ୍ତେ ।

କିନ୍ତୁ ସେ ଆଉ ଗୋଟିଏ କାମ କରିଥିଲେ । ସେ ସଙ୍ଗେ ସଙ୍ଗେ ଏକ ଚିଠି ଲେଖିଲେ ଲେନିନ୍‌ଗ୍ରାଦସ୍ଥ ନୃତତ୍ତ୍ୱ ଏବଂ ପ୍ରତ୍ନତତ୍ତ୍ୱ ମିଉଜିଅମ୍‌କୁ । ଏହି ମିଉଜିଅମ୍‌ଟି ନେଭା ନଦୀ କୂଳରେ ଏକ ବିରାଟ ପ୍ରାସାଦରେ ଅବସ୍ଥିତ । ଏଥିରେ ରୁଷ୍ ବୈଜ୍ଞାନିକ ତଥା ଆବିଷ୍କାରକମାନଙ୍କ ଦ୍ୱାରା ପ୍ରଦତ୍ତ ପୃଥିବୀର ବିଭିନ୍ନ ଜାଗାର ଚମତ୍‌କାର ଜିନିଷ ରହିଛି ।

ଏହାର କିଛି ଦିନ ପରେ ଲେନିନ୍‌ଗ୍ରାଦ୍‌ରୁ ଜାମ୍ୟାଟିନ୍ ନାମକ ଜଣେ ପ୍ରତ୍ନତତ୍ତ୍ୱବିତ୍ ଗାଗାରିନୋ ଗାଁରେ ପହଞ୍ଚି ସେ ଗାଁ ଶିକ୍ଷକଙ୍କ ସହିତ ମାଟି ଖୋଳା ଆରମ୍ଭ କରି ଦେଲେ ।

ଆମ ଦେଶରେ ଏଟା ନୂଆ କଥା ନୁହେଁ । କୌଣସି ଶିକ୍ଷକ ବା ପାଠାଗାର ଗ୍ରନ୍ଥକ ଯଦି ପ୍ରାଚୀନ ସଂସ୍କୃତିର କୌଣସି ଜିନିଷ ଦେଖିବାକୁ ପାଆନ୍ତି, ତେବେ ସେ ସଙ୍ଗେ ସଙ୍ଗେ ନିକଟବର୍ତ୍ତୀ ମିଉଜିଅମ୍‌କୁ ଲେଖି ଜଣେଇ ଦିଅନ୍ତି । ତା'ପରେ ସହରରୁ ବୈଜ୍ଞାନିକ ଆସନ୍ତି ଅନୁସନ୍ଧାନ କାର୍ଯ୍ୟ ଚଳାଇବାକୁ ।

ଗାଗାରିନୋ ଗାଁରେ ତେବେ କ'ଣ ସେମାନେ ପାଇଲେ ?

ମାଟି ଖୋଳା ହେବାର ପ୍ରଥମ ଦିନ ସେମାନେ ପାଇଲେ ପଥରର ଛୁରି ଏବଂ କଟୁରି, ହାଡ଼ ତିଆରି ଫୋଡ଼ଣୀ, ଗାତ କରା ମେରୁ କୋକିଶିଆଳିର ଦାନ୍ତ, ମାମଥ୍ ଏବଂ ଅନ୍ୟ ପ୍ରାଣୀମାନଙ୍କର ହାଡ଼ ସାଙ୍ଗକୁ ଏକ ଚୁଲିରୁ ଦରପୋଡ଼ା କାଠସବୁ ।

ଠିକ୍ ଏହିଭଳି ପଥର ହତିଆର ଏବଂ ଖଣ୍ଡେ ଦାନ୍ତ ହାଡ଼ ଆନ୍ତୋନଭ୍‌ଙ୍କ ବାଡ଼ିରୁ ବାହାରି ଥିଲା, ସେ କାଦୁଅ ତିଆରି କଲା ବେଳେ । କାଦୁଅରେ ଏତେ

ଛୋଟ ଛୋଟ ହାଡ଼ ଆଉ ପଥର ହତିଆରର ଛୋଟ ଛୋଟ ଅଂଶ ମିଶିଥିଲା ଯେ, ଘୃଷୀ ପରିବାରଟି ସେସବୁକୁ ବାହାର ନକରି ସେମିତି କାନ୍ଥରେ ଲେପି ଦେଇଥିଲେ।

ବିଜ୍ଞାନୀ ଏବଂ ଶିକ୍ଷକ ମାସେ କାଳ ମାଟିଖୋଳା କାମ ଚଳେଇ ଆହୁରି କେତେକ ନୂଆ ଜିନିଷ ବାହାର କଲେ । ସେସବୁ ଜିନିଷ ମଧ୍ୟରେ ଥିଲା ହତିଆର, ଗହଣା, ଛୋଟ ଛୋଟ ମୂର୍ତ୍ତି ଏବଂ ଜୀବଜନ୍ତୁଙ୍କ ହାଡ଼ ।

ପ୍ରତିଟି ଜିନିଷକୁ ଯତ୍ନ ସହକାରେ ପ୍ୟାକେଟ୍‌ରେ ଭର୍ତ୍ତି କରି ପଠାଇ ଦିଆଗଲା ଲେନିନ୍‌ଗ୍ରାଡ୍‌କୁ । ସେଠାରେ ଏସବୁକୁ ବିଭିନ୍ନ କ୍ଷେତ୍ରର ବିଶେଷଜ୍ଞମାନେ ପରୀକ୍ଷା କଲେ ।

ଖଣିଜବିଦ୍ୟା ବିଶାରଦମାନେ ସ୍ଥିର କଲେ କେଉଁ ଧରଣର ପଥରରେ ଏସବୁ ହତିଆର ନିର୍ମିତ । ଆଦିମ ଜୀବତତ୍ତ୍ୱବିତ୍‌ମାନେ ପରୀକ୍ଷା କଲେ, ପ୍ରାଗୈତିହାସିକ ଲୋକେ କେଉଁ କେଉଁ ପଶୁ ଶିକାର କରୁଥିଲେ । ସୁଦକ୍ଷ କାରିଗରମାନଙ୍କ ଦ୍ୱାରା ହାଡ଼ ଉପରେ ଖୋଦିତ ଏବଂ କାଳ ଦ୍ୱାରା ବିକୃତ ମୂର୍ତ୍ତିଗୁଡ଼ିକୁ ସେସବୁର ଅସଲ ଚେହେରାକୁ ଫେରେଇ ଆଣିଥିଲେ ।

ଇତି ମଧ୍ୟରେ କେତେ ଜଣ ପ୍ରତ୍ନତତ୍ତ୍ୱବିତ୍ ବୈଜ୍ଞାନିକ ପଦ୍ଧତିରେ ମାଟି ଖୋଳା କାମ ଚଳାଇ ଯାଇଥିଲେ ଏବଂ ଖୁବ୍ ଶୀଘ୍ର ସେଇ ସବୁ ପ୍ରାଗୈତିହାସିକ ଶିକାରୀମାନଙ୍କର ଏକ ବାସସ୍ଥାନ ଆବିଷ୍କାର କରିଥିଲେ ।

ସେ ବାସସ୍ଥାନଟି ଦେଖିବାକୁ ଏକ ଗୋଲକାର ଖାତ । କାନ୍ଥଗୁଡ଼ିକୁ ପଥର ଖଣ୍ଡ, ମାମଥ୍ ଶୁଣ୍ଢ ଏବଂ ଦାନ୍ତ ହାଡ଼ ଦ୍ୱାରା ସୁରକ୍ଷିତ କରାଯାଇଥିଲା । କାନ୍ଥଗୁଡ଼ିକ ସମ୍ଭବତଃ ନିର୍ମିତ ହୋଇଥିଲା କାଠ ଖୁଣ୍ଟ ଦ୍ୱାରା, ଜୀବଜନ୍ତୁଙ୍କ ଚମଡ଼ାର ଆବରଣୀ ତା ଉପରେ ଦିଆଯାଇ ଥିଲା । ଖୁଣ୍ଟଗୁଡ଼ିକ ଉପରେ ଲୋକେ ଏକାଠି ମିଳି ଯାଇ ଛାତ ତିଆରି କରିଥିଲେ । ବଡ଼ ବଡ଼ ଓଜନିଆ ପଥର ଏବଂ ମାମଥ୍‌ର ହାଡ଼ସବୁ କାନ୍ଥ ଉପର ପର୍ଯ୍ୟନ୍ତ ଉଠିଯାଇ ତାକୁ ମଜବୁତ୍ କରିଥିଲା ।

ବାହାରୁ ଅନେଇଲେ ଘରଟା ଦେଖା ଯାଉଥିଲା ଏକ ବଡ଼ ତମ୍ବୁ ଭଳି ।

କାନ୍ଥ ପାଖକୁ ଲାଗି ସେମାନେ ହାଡ଼ ଉପରେ ଖୋଦେଇକରା ଦୁଇଟି ନାରୀ ମୂର୍ତ୍ତି ଦେଖିବାକୁ ପାଇଥିଲେ । ସେ ଦୁଇଟି ମଧ୍ୟରୁ ଗୋଟିଏ ଖୁବ୍ ମୋଟା ଏବଂ ଅନ୍ୟଟି ପତଳା । ମନେ ହୁଏ ଏହି ହାଡ଼ ଖୋଦେଇ ମୂର୍ତ୍ତି ଦୁଇଟି କୌଣସି ଜୀବନ୍ତ ନାରୀ ଦୁଇଟିକୁ ଦେଖି ତିଆରି ହୋଇ ଥିଲା । ନାରୀମାନଙ୍କର ଜଟିଳ କେଶ ପ୍ରସାଧନ ଖୁବ୍ ସୂକ୍ଷ୍ମ ଭାବେ କରାଯାଇଥିଲା ।

ଘର ମଝିରେ କି ଗୋଟାଏ ଗୋଲକାର ଗର୍ତ୍ତ ଖୋଳା ହୋଇଥିଲା ଜିନିଷପତ୍ର ରଖିବା ପାଇଁ । ସେଥିରେ ଥିବା ଜିନିଷପତ୍ର ନିଶ୍ଚିତ ଭାବେ ସେମାନଙ୍କ ପକ୍ଷରେ

ମୂଲ୍ୟବାନ ଥିଲା । ସେସବୁ ଜିନିଷ ହେଉଛି : ହାଡ଼ରେ ତିଆରି ଡାମ୍ପଣ, ମେରୁ ଅଞ୍ଚଳର ଶିଆଳ ଦାନ୍ତ ତିଆରି ଗଳାମାଳ ଏବଂ ମାମଥ୍ ଲଙ୍ଗୁଡ଼ ।

ପ୍ରାଗୈତିହାସିକ ବାସିନ୍ଦାମାନେ ସିଲାଇ ପାଇ ଡାମ୍ପଣ ବ୍ୟବହାର କରୁଥିଲେ, ଗହଣା ହିସାବରେ ଗଳାମାଳି ପିନ୍ଧୁଥିଲେ । କିନ୍ତୁ ମାମଥ୍‌ର ଲଙ୍ଗୁଡ଼କୁ କାହିଁକି ଏତେ ଯତ୍ନର ସହିତ ରଖୁଥିଲେ ?

ଏହା ଛଡ଼ା ଆହୁରି କେତେକ ଖୋଦେଇ ମୂର୍ତ୍ତି ମଧ୍ୟ ମିଳିଛି । ସେସବୁ ମୂର୍ତ୍ତିଗୁଡ଼ିକରେ ପ୍ରାଗୈତିହାସିକ ଶିକାରୀମାନେ କାନ୍ଧରେ ପଶୁ ଚର୍ମ ଏବଂ ପଛ ଆଡ଼େ ଲଙ୍ଗୁଡ଼ ଝୁଲୁଛି । ମନେ ହୁଏ, ସେମାନେ ସେଇ ପଶୁଟି ଭଳି ନିଜକୁ ସଜେଇଛନ୍ତି ଯା'ର ଚମଡ଼ା ସେମାନେ କାନ୍ଧରେ ପକାଇଛନ୍ତି । କିନ୍ତୁ ଏପରି କରିବାର କାରଣ କ'ଣ ? ସେ ସଂପର୍କରେ ଆମେ ପରେ ଆଲୋଚନା କରିବା । ଏବେ ଆମକୁ ପ୍ରାଗୈତିହାସିକ ମଣିଷର ବାସ ଗୃହ ସଂପର୍କରେ ଆହୁରି କିଛି ଆବିଷ୍କାର କରିବାର ଅଛି ।

ଗାଗାରିନୋ ଗାଁରେ ଆବିଷ୍କୃତ ଆଦିମ ମଣିଷର ଘର ଭଳି ଆହୁରି କେତେକ ଘର ସୋଭିଏତ୍ ୟୁନିଅନ୍‌ର ଆଉ କେତେକ ଜାଗାରେ ମିଳିଛି । ଭୋରୋନେଜ୍ ସହରର ନିକଟବର୍ତ୍ତୀ ଏକ କ୍ଷୁଦ୍ର ଗ୍ରାମରେ ମଧ୍ୟ ଆହୁରି ଅନେକ ହାଡ଼ ଗୋଡ଼ ଆବିଷ୍କୃତ ହୋଇଛି । ସେ ଗାଁଟିର ନାମ ଦିଆ ଯାଇଛି କୋସ୍ତେନ୍‌କି ବା ହାଡ଼ ଗାଁ ।

ଏହି ଗାଁଟିରୁ ମିଳିଥିବା ହାଡ଼ଗୁଡ଼ିକ ହେଉଛି ମାମଥ୍, ଗୁହାବାସୀ ସିଂହ, ଭାଲୁ ଏବଂ ଘୋଡ଼ାମାନଙ୍କର । ଏସବୁ ପଶୁମାନଙ୍କୁ ଆଦିମ ଶିକାରୀମାନେ ଶିକାର କରୁଥିଲେ ।

ଦୁଇ ଜଣ ସୋଭିଏତ୍ ପ୍ରତ୍ନତତ୍ତ୍ୱବିତ୍ ପି. ଏଫିମେଙ୍କୋ ଏବଂ ଏସ୍. ଜାମ୍ୟାଟିନ୍ ପୁଙ୍ଖାନୁପୁଙ୍ଖ ଭାବେ ହାଡ଼ ଗାଁର ଘରକୁ ନେଇ ଅନୁଧ୍ୟାନ କରିଛନ୍ତି ।

ଗାଗାରିନୋ ଭଳି ଶିକାରୀମାନେ ଗୋଟିଏ ଖାତରେ ବାସ କରୁ ନଥିଲେ ଏବଂ ବିଭିନ୍ନ ଖାତରେ ବାସ କରୁଥିଲେ, ଏକାଠି ଶିକାର କରୁଥିଲେ । ଅନେକଗୁଡ଼ିଏ ସୁନିର୍ମିତ ପଥର ଏବଂ ହାଡ଼ ତିଆରି ହତିଆର ସମେତ ହାତୀ ଦାନ୍ତରେ ଖୋଦେଇ ଅନେକଗୁଡ଼ିଏ ନାରୀମୂର୍ତ୍ତି ସେଠାରେ ମିଳିଛି । ସେମାନଙ୍କ ମଧ୍ୟରୁ ଗୋଟିକ ଦେହରେ ଚିତାକଟା ଯାଇଛି ଏବଂ ଚମଡ଼ା ନିର୍ମିତ ଏକ ଲମ୍ବ ପୋଷାକ ପିନ୍ଧିଛି । ଏଥିରୁ ଜଣାଯାଏ ସେମାନେ ଚମଡ଼ାକୁ ଧୁଲେଇ କରିବା ପ୍ରଣାଳୀ ଜାଣିଥିଲେ ।

ଏହିସବୁ ପ୍ରାଗୈତିହାସିକ ଶିକାରୀମାନଙ୍କର ବାସସ୍ଥାନଗୁଡ଼ିକ ଆଜିକାଲିକାର ଘର ଦ୍ୱାର ଭଳି ନଥିଲା । ଦୂରରୁ ଗ୍ରହିଁଲେ ସେଗୁଡ଼ିକର ଛାତ ମନେ ହେଉଥିଲା ଗୋଲକାର ପାହାଡ଼ ଚୂଡ଼ା ଭଳି । ଘରେ ପ୍ରବେଶ କରିବାର ଦ୍ୱାରଟି ଥିଲା ଚିମ୍‌ନି

ବା ଧୂଆଁ ବାହାରିବା ବାଟ ଦେଇ । କାରଣ ଘରେ ଜଳୁଥିବା ନିଆଁର ଧୂଆଁସବୁ ବାହାରିବାର ଏକମାତ୍ର ପଥ ଥିଲା ଏହି ବାଟେ ।

ମାଟି କାନ୍ଥର ପାଖେ ପାଖେ ବେଞ୍ଚ ପରିବର୍ତ୍ତେ ପଡ଼ିଥିଲା ମାମଥ୍‌ର ହନୁହାଡ଼ସବୁ । ମାଟି ପୃଥିବୀ ମା ଥିଲା ସେମାନଙ୍କର ଖଟିଆ । ସେମାନେ ଆୟତାକାର ଏକ ସମତଳ ମାଟି ଉପରେ ଶୋଉଥିଲେ ଏବଂ ମାଟିରେ ତକିଆ ତିଆରି କରି ମୁଣ୍ଡ ଦେଉଥିଲେ ।

ହାଡ଼ରେ ଟେବୁଲ ଏବଂ ପଥରରେ ବେଞ୍ଚ ତିଆରି କରୁଥିଲେ ସେମାନେ ।

ଚୁଲୀ ପାଖକୁ ଏକ ଫରଣ୍ଣ ଜାଗାରେ କାମ କରିବା ପାଇଁ ଟେବୁଲଟିଏ ପଡ଼ିଥିଲା । ଏହି ଟେବୁଲଟି ଖାଉଁଜିଆ ପଥରରେ ନିର୍ମିତ ହୋଇଥିଲା । ତା ଉପରେ ପ୍ରତ୍ନତତ୍ତ୍ୱବିଦ୍‌ମାନେ ପଥର ଆଉ ହାଡ଼ର କେତେକ ହତିଆର, ଟୁକୁରା ଏବଂ ଅନ୍ୟାନ୍ୟ ଛୋଟ କାଟର ଜିନିଷ ମିଳିଛି । ଏହା ଛଡ଼ା ଟେବୁଲ ଉପରେ ପଡ଼ିଥିଲା କେତେକ ହାଡ଼ରୁ ତିଆରି କଣ୍ଟା ମାଳି । ସେସବୁ କଣ୍ଟା ମଧ୍ୟରୁ କେତେକ ଖାଉଁଜିଆ ଏବଂ ସେସବୁ ଫୁଟା ହୋଇଛି । ଆଉ କେତେକ ଖାଉଁଜା ହୋଇନି । କୌଣସି କାରିଗର ଖଣ୍ଡେ ହାଡ଼କୁ କେତେକ ଜାଗାରେ ଦାଗି ଦେଇଛନ୍ତି, କିନ୍ତୁ ଭାଙ୍ଗି ପାରି ନାହାନ୍ତି, ଜିନିଷସବୁ ଏମିତି ଭାବେ ପଡ଼ି ରହିଛି ଯେ, ଦେଖିଲେ ମନେ ହୁଏ କୌଣସି କାରଣରୁ ଲୋକେ ହଠାତ୍ କାମ ବନ୍ଦ କରି ଘର ଛାଡ଼ି ପଳାଇ ଯାଇଛନ୍ତି । ବିପଦଟା ନିଶ୍ଚୟ ଭୟଙ୍କର, ତା ନହେଲେ ସେମାନେ ଏଭଳି ଚମତ୍କାର ଚୀର, ହାଡ଼ ତିଆରି ତାମ୍ପଣ, ପଥର କଟା ଯନ୍ତ୍ର ଛାଡ଼ି ପଳାଇ ଯାଇ ନଥାନ୍ତେ ।

ଏହିସବୁ ଜିନିଷ ତିଆରି କରିବା ଏତେ ସହଜ ନୁହଁ । ଘରେ ଏହିସବୁ ଜିନିଷ ପାଇବା ପାଇଁ ସେମାନଙ୍କୁ ପ୍ରତିଟି ପଦାର୍ଥ ପାଇଁ କେତେ ସମୟ ବ୍ୟୟ କରିବାକୁ ପଡ଼ିଥିବ । ଉଦାହରଣ ସ୍ୱରୂପ, ସେ ହାଡ଼ ତିଆରି ତାମ୍ପଣ କଥା ଧରା ଏଇଟି ହେଉଛି ମଣିଷ ଜାତିର ଇତିହାସରେ ପ୍ରଥମ ଛୁଞ୍ଚି । ଏହା ହୁଏତ ଛୋଟ ହୋଇ ପାରେ, କିନ୍ତୁ ଏହାକୁ ତିଆରି କରିବା ପାଇଁ କେତେ କାରୁକୌଶଳ ଦରକାର ପଡ଼ିଥିବ ।

ଆଉ ଏକ ବାସସ୍ଥଳୀରେ ଘର କାମ ପାଇଁ ବ୍ୟବହୃତ ଛୁଞ୍ଚି ତିଆରିର ଏକ କର୍ମଶାଳା ଆବିଷ୍କୃତ ହୋଇଛି । ସେଥିରେ ଆବଶ୍ୟକୀୟ ସମସ୍ତ ଯନ୍ତ୍ରପାତି, ହାଡ଼ ଖଣ୍ଡ ଅଧା ତିଆରି ଛୁଞ୍ଚିସବୁ ପଡ଼ିଛି । ସବୁ ଜିଛି ସେଇ ଭଳି ପଡ଼ି ରହିଛି ।

ଆମ ଆଧୁନିକ ସମାଜର ଯଦି ହାଡ଼ ତିଆରି ଛୁଞ୍ଚି ଦରକାର ପଡ଼େ, ତେବେ ସେସବୁର ଉତ୍ପାଦନ ଆମେ ସେଠାରେ ଆସନ୍ତାକାଲି କରି ପାରିବା ।

କିନ୍ତୁ ସେ କାମ କରିବା ପାଇଁ ଆମକୁ ଜଣେ କାରିଗର ଖୋଜି ପାଇବାକୁ ମୁସ୍କିଲ ହେବ ।

ହାଡ଼ରେ ଛୁରି ତିଆରି କରୁଥିଲେ ନିମ୍ନମତେ । ପ୍ରଥମେ ଖଣ୍ଡେ ହାଡ଼ କଟା ଛୁରି ନେଇ ଠେକୁଆର ହାଡ଼କୁ ମୁଣ୍ଡମୁଣ୍ଡ କରି କାଟୁଥିଲେ । ତା'ପରେ ଖଣ୍ଡେ ପଥରରେ ତାକୁ ଘଷି ମୁନିଆ କରୁଥିଲେ । ଆଉ ଖଣ୍ଡେ ମୁନିଆ ପଥର ଦେଇ ସେଇ ହାଡ଼ର ଆର ମୁଣ୍ଡରେ କଣାଟିଏ କରୁଥିଲେ । ତା'ପରେ ସେ ଛୁରି ହାଡ଼ଟିକୁ ଖଣ୍ଡେ ବଡ଼ ପଥର ଦିହରେ ଘଷି ତାକୁ ପାଲିଶ୍ କରାଯାଉଥିଲା ।

ଏହି ଭାବେ ଛୁରିଟିଏ ତିଆରି କରିବା ପାଇଁ କେତେ ଯନ୍ତ୍ରପାତି ଏବଂ ସମୟ ଦରକାର ପଡ଼ୁଥିଲା, ଦେଖିଲତ !

କିନ୍ତୁ ପ୍ରତ୍ୟେକ ଜାତିରେ ସେତେବେଳେ ଛୁରି ତିଆରି କଲା ଭଳି ଦକ୍ଷ କାରିଗର ମିଳୁ ନଥିଲେ । ପ୍ରାଗୈତିହାସିକ ଯୁଗରେ ହାଡ଼ ତିଆରି ଛୁରି ଥିଲା ଅତ୍ୟନ୍ତ ମୂଲ୍ୟବାନ ସଂପଦ ।

ଏଥର ଆସ ଦେଖିବା ପ୍ରାଗୈତିହାସିକ ଶିକାରୀମାନେ କିପରି ରହୁଥିଲେ !

ବରଫ ଢଙ୍କା ଷ୍ଟେପ୍ ଅଞ୍ଚଳରେ ତୁମେ ଅନେକ କୁଦ ଦେଖିବାକୁ ପାଇବ । ସେସବୁ ମଧ୍ୟରୁ ଧୂଆଁର କୁଣ୍ଡଳୀ ସବୁ ଆକାଶକୁ ଉଠୁଥାଏ । ସେସବୁ ମଧ୍ୟରୁ ଗୋଟିକ ଉପରକୁ ଯାଇ ଚିମ୍‌ନି ବାଟେ ଭିତରକୁ ଯିବା ଗ୍ଲ । ଧୂଆଁରେ ଅବଶ୍ୟ ଆଖି ବନ୍ଦ ହୋଇ ଯାଉଥିବ । ସେସବୁ ପ୍ରତି ଖାତିରି କଲେ ଚଳିବ ନାହିଁ ।

ମନେ କର ଆମେ ଏକ ଯାଦୁକରର ଟୋପି ପିନ୍ଧି ଅଦୃଶ୍ୟ ହୋଇଗଲେ । ଆମକୁ ଆଉ କେହି ଦେଖି ପାରିଲେ ନାହିଁ । ଘର ଭିତରଟା ଧୂଆଁପୂର୍ଣ୍ଣ, ଅନ୍ଧାରୁଆ ଏବଂ ଗହଳିଆ ଲଗିବ । ଘରେ ଖୁବ୍ କମ୍‌ରେ ରହନ୍ତି ଦଶ ଜଣ ବୟସ୍କ ଏବଂ ସେମାନଙ୍କ ଅପେକ୍ଷା ଆହୁରି ବେଶି ଶିଶୁ ।

ଆଖିରେ ଧୂଆଁ ଚରିଗଲା ପରେ ଭିତରେ ଥିବା ମଣିଷମାନଙ୍କର ଚେହେରା ସ୍ପଷ୍ଟ ହୋଇ ଉଠିବ । ସେମାନେ ଦେଖିବାକୁ ଲମ୍ବା ଚଉଡ଼ା, ଦୃଷ୍ଟ ପୁଷ୍ଟ ଏବଂ ଶକ୍ତିଶାଳୀ । ମାଙ୍କଡ଼ ସହିତ ସେମାନଙ୍କର ଚେହେରାରେ ମୋଟେ ସାମଞ୍ଜସ୍ୟ ନାହିଁ । ମୁହଁର ହାଡ଼ ସେମାନଙ୍କର ଉଚ୍ଚା ଏବଂ ମୁଣ୍ଡମୁଣ୍ଡ ଆଖି । କଳା ଦେହରେ ଲାଲ ରଙ୍ଗର ଚିତାସବୁ କୁଟା ହୋଇଛି ।

ଘର ମଝିରେ ବସି ସ୍ତ୍ରୀଲୋକମାନେ ହାଡ଼ ତିଆରି ଦାମଣରେ ଚମଡ଼ାରେ ପୋଷାକ ତିଆରି କରୁଛନ୍ତି । ପିଲମାନଙ୍କର ଖେଳନା ନାହିଁ, ଘୋଡ଼ାର ହାଡ଼ ଏବଂ ହରିଣର ଶିଙ୍ଗ ନେଇ ସେମାନେ ଖେଳୁଛନ୍ତି । ଚୁଲୀ ପାଖକୁ ଲଗି ପଡ଼ିଥିବା ପଥର ବେଞ୍ଚ ଉପରେ ଜଣେ କାରିଗର ଚକା ପକାଇ ବସିଛି । ଲେକଟି ହାଡ଼ରୁ ତିଆରି ଏକ ତୀର ମୁଣ୍ଡକୁ ଖଣ୍ଡେ କାଠ ବାଡ଼ିରେ ଲଗାଉଛି ବର୍ଚ୍ଛା ତିଆରି କରିବା ପାଇଁ ।



କଳାକାର ଘୋଡ଼ା ଆଙ୍କିବା ପରେ ତା ଉପରେ କେତେକ ତମ୍ବୁର ଚିତ୍ର ଅଙ୍କନ କରିଛନ୍ତି ।

ତା ପାଖକୁ ଆଉ ଜଣେ କାରିଗର ପଥର ହତିଆର ଦେଇ ହାଡ଼ ଉପରେ ଛବି ଆଙ୍କୁଛି ।

ଏଥର ଆଉ ଟିକିଏ ଆଗେଇ ଆସ, ଦେଖିବା ସେ କ'ଣ ଆଙ୍କୁଛି ।

ଖଣ୍ଡେ ହାଡ଼ ଉପରେ କେତୋଟି ଗାର କାଟି ଘୋଡ଼ାର ଛବିଟିଏ ସେ ଆଙ୍କିଲା ।

ତା'ପରେ ସେ ଅତ୍ୟନ୍ତ ଧୈର୍ଯ୍ୟ ଆଉ କୌଶଳର ସହିତ ଆଙ୍କିଲା ଘୋଡ଼ାର ସୁନ୍ଦର ଗୋଡ଼ଗୁଡ଼ିକୁ, ବଙ୍କାଳିଆ ବେକ, ଛୋଟିଆ କେଶର ଏବଂ ବଡ଼ ମୁଣ୍ଡଟାକୁ । ଦେଖି ଦେଲେ ମନେ ହେଉଛି ଅବିକଳ ଏକ ଜୀବନ୍ତ ଘୋଡ଼ା । କାରିଗରଟି ତା ମନଚକ୍ଷୁରେ ଘୋଡ଼ାର ସବୁ କିଛିକୁ ଚିକିନିଖି କରି କଳ୍ପନା କରି ଆଙ୍କିଛି ।



ମାମଥ୍ ଉପରେ ଚିତ୍ରିତ ଦୁଇଟି ତମ୍ବୁ ।

ଏଥର ଘୋଡ଼ା ଅଙ୍କା ଶେଷ ହୋଇ ଯାଇଛି । କାରିଗରଟି କିନ୍ତୁ ସେଇଠି ବନ୍ଦ ହେଲା ନାହିଁ । ଘୋଡ଼ା ଉପରେ ପଟାପଟା କରି ସେ ଅନେକଗୁଡ଼ାଏ ଗାର କାଟିଲା । ପଶୁଟିର ଦେହରେ ମୋଟା ଅଦ୍ଭୁତ ରକମର ଚିତ୍ର ଭାସି ଉଠିଲା । ତମେ ଭାବିବ ଏ ପ୍ରାଗୈତିହାସିକ ଶିଳ୍ପୀଟି କ'ଣ ଆଙ୍କୁଛି ? କାହିଁକି ସେ ଏଡ଼େ ସୁନ୍ଦର ଘୋଡ଼ାର ଛବିଟିକୁ ନଷ୍ଟ କରି ଦେଉଛି ? ଆଜିକାଲିକାର ଯେ କୌଣସି ଶିଳ୍ପୀ ସେ ଛବିଟିକୁ ଦେଖିଲେ ତା'ର ଈର୍ଷା ହେବ ।

ଛବିଟି କ୍ରମଶଃ ଆହୁରି ଜଟିଳ ହୋଇ ଉଠିଲା । କିନ୍ତୁ କିଛି ସମୟ ପରେ ତମେ ଆଶ୍ଚର୍ଯ୍ୟରେ ଲକ୍ଷ୍ୟ କରିବ ଘୋଡ଼ାର ଛବି ଉପରେ ଗୋଟାଏ ତମ୍ବୁର ଚିହ୍ନ ଫୁଟି ଉଠିଲା । ତା'ପରେ ସେ ତମ୍ବୁ ପାଖକୁ ଆଉ ଗୋଟିଏ ତମ୍ବୁ , ତା ପାଖକୁ ଆଉ ଗୋଟିଏ । ଏହା କ'ଣ ତମ୍ବୁଟଣା ଏକ ବସତି ନା କ'ଣ ?

ଏହି ଅଦ୍ଭୁତ ଛବିଟିର ତେବେ ଅର୍ଥ କ'ଣ ହୋଇ ପାରେ ? ଏଟା କ'ଣ ସେ ଶିଳ୍ପୀର ଏକ ମନଗଢ଼ା କଳ୍ପନା କ'ଣ ?

ନା , ସେମିତି ନୁହଁ । ଏହିସବୁ ଅଦ୍ଭୁତ ଛବିର ସଂପୂର୍ଣ୍ଣ ସମାହାର ଆବିଷ୍କୃତ ହୋଇଛି ପ୍ରାଗୈତିହାସିକ ଗୁମ୍ଫାମାନଙ୍କରେ । ସେସବୁ ମଧ୍ୟରୁ ଗୋଟିଏ ମାମଥ୍‌ର ଛବି ଉପରେ ଦୁଇଟି ତମ୍ବୁ ଅଙ୍କା ଯାଇଛି । ତା'ପରେ ଏକ ବାଇସନ୍ ଉପରେ ତିନୋଟି ତମ୍ବୁ । ଆଉ ଗୋଟିଏ ମାମଥ୍‌ର ମଝିରେ ଏକ ବାଇସନ୍ ଅଧାଖିଆ ମୃତ ଦେହ । ମାମଥ୍‌ର ମୁଣ୍ଡ , ମେରୁହାଡ଼ ଏବଂ ଗୋଡ଼ଗୁଡ଼ିକ ସେମିତି ରହିଛି । ଆଗ ଗୋଡ଼ ଦୁଇଟି ମଝିରେ ଲମ୍ବି ରହିଛି ଏକ ବିରାଟ ବାଳୁଆ ମୁହଁ । ଦେହଟାର ଦୁଇ ପାଖରେ ଦୁଇ ଧାଡ଼ି ଲୋକ ।

ହାଡ଼ , ପଥର ଖଣ୍ଡ ଏବଂ ପାହାଡ଼ ଦିହରେ ଏହି ଭଳି ଅନେକ ପ୍ରାଣୀ , ମଣିଷ ଏବଂ ତମ୍ବୁର ଅଦ୍ଭୁତ ଛବି । କିନ୍ତୁ ସେସବୁ ମଧ୍ୟରୁ ଅଧିକାଂଶ ଦେଖିବାକୁ ମିଳେ ଗୁହାର କାନ୍ଥମାନଙ୍କରେ ।

ଆମେ ସେ ଗୁହାକୁ ଖୋଜିଲା ବେଳେ ତା'ର କାନ୍ଥରେ କ'ଣ କୌଣସି ଛବି ପାଇବା ନାହିଁ ?

ଆମେ ତ ଏ ପର୍ଯ୍ୟନ୍ତ ଗୁହା ମଧ୍ୟକୁ ଯାଇନେ । ଏବେ ଆମେ ଗୁହାର ପ୍ରବେଶ ଦ୍ୱାରରେ , ଯେଉଁଠି ଲୋକେ ଖାଆନ୍ତି , ଶୁଅନ୍ତି ଏବଂ କାମ କରନ୍ତି ।

ଏଥର ଆମେ ଆହୁରି ଭିତରକୁ ଯିବା , ସବୁ କିଛିକୁ ପରୀକ୍ଷା କରି ଦେଖିବା । ଆମକୁ ଯିବାକୁ ହେବ ସେଇସବୁ ସୁଡ଼ଙ୍ଗ ମଧ୍ୟ ଦେଇ , ଯେଉଁ ବାଟେ ପବନ ଯାଏ । ସେଟା ପ୍ରାୟ ହଜାର ହଜାର ଗଜ ଲମ୍ବ ।

## ମାଟିତଳ ଛବିପଂକ୍ତି ।

ଗୁହା ଭିତରକୁ ଗଲାବେଳେ ଆମକୁ ଟର୍ଚ୍ଚ ଲାଇଟ୍ ନେଇ ଯିବାକୁ ହେବ ଏବଂ ଗଲାବେଳେ ପ୍ରତ୍ୟେକଟି ଗଳି କନ୍ଦି ମନେ ରଖିବାକୁ ପଡ଼ିବ । କାରଣ ଯେକୌଣସି ସମୟରେ ପଥ ବଣା ହେବାର ସମ୍ଭାବନା ରହିଛି ।

କ୍ରମଶଃ ପଥରର ଅଳିନ୍ଦଟା ସରୁ ହୋଇ ଆସୁଛି । ଛାତରୁ ପାଣି ଥୋପା ଥୋପା ପଡ଼ୁଛି । ଟର୍ଚ୍ଚକୁ ଉପର ମୁହାଁ କରି କାନ୍ଥଗୁଡ଼ିକୁ ଦେଖି ଦେଖିକା ଚାଲୁଥାଅ ।

ମାଟିତଳର ଝରଣାସବୁ ଏକଦା ଗୁମ୍ଫାଟିକୁ ଚକ୍ ଚକ୍ ସ୍ଫଟିକରେ ସଜେଇ ଦେଇ ଯାଇଛି । କିନ୍ତୁ ମଣିଷର ହାତ କେବେ ସେଥିରେ ବାଜିନି ।

ଆମେ ଆହୁରି ଭିତରକୁ ଆଗେଇ ଗଲା ବେଳେ କିଏ ଜଣେ ହଠାତ୍ ଚିତ୍କାର କରି କହି ଉଠିଲା :

"ହୋଇ, ଇଆଡ଼େ ଦେଖ !"

କାନ୍ଥ ଦିହରେ ଲାଲ ଏବଂ କଳା ରଙ୍ଗରେ ଅଙ୍କା ଏକ ବାଇସନ୍‌ର ଛବି । ଜନ୍ତୁଟା ଆଗକୁ ମୁହଁ ମାଡ଼ି ପଡ଼ିଛି । ପିଠି ଉପର ହାଙ୍କୁଡ଼ରେ ତା'ର ବିଦ୍ଧି ହୋଇ ଯାଇଛି ଅନେକଗୁଡ଼ାଏ ବର୍ଚ୍ଛା ।

ଛବିଟି ଆଗରେ ନିରବରେ ଆମେ କିଛି ସମୟ ଛିଡ଼ା ହେବା । ଛବିଟିକୁ ହଜାର ହଜାର ବର୍ଷ ତଳେ ଥିବା ଜଣେ ଶିଳ୍ପୀ ଆଙ୍କିଥିଲା ।

ଆଉ ଟିକିଏ ଆଗେଇ ଗଲେ, ଆଖିରେ ପଡ଼ିବ ଆଉ ଏକ ନୂଆ ଧରଣର ଛବି । ମନେ ହେବ ଗୋଟାଏ ଦୈତ୍ୟ ଯେମିତି ନାଚ କରୁଛି । ସେଟା ଦେଖିବାକୁ ଅନେକ ପରିମାଣରେ ବଣ ଜନ୍ତୁ ପରି କିମ୍ବା ବଣ ଜନ୍ତୁ ଭଳି ଦିଶୁଥିବା ଏକ ମଣିଷ । ଦୈତ୍ୟ ମୁହଁରେ ଦାଢ଼ି, ମୁଣ୍ଡରେ ଗୁଡ଼ାଏ ବଙ୍କା ଲମ୍ବା ଶିଙ୍ଗ, ପିଠି ଉପରେ ଗୋଟାଏ କୁଜ ଏବଂ ଏକ ଲେମଣ୍ଡ ଲାଞ୍ଜ । ତା'ର ହାଡ଼ ଏବଂ ଗୋଡ଼ ଦୁଇଟି ମଣିଷର ଗୋଡ଼ ଭଳି । ହାତରେ ସେ ଗୋଟାଏ ଧନୁ ଧରିଛି ।

ଭଲ କରି ନିରେଖିକି ଚାହିଁଲେ ଜାଣି ପାରିବ, ଗୋଟିଏ ମଣିଷ ବାଇସନ୍‌ର ଚମଡ଼ା ପିନ୍ଧି ଛଦ୍ମ ବେଶ ହୋଇଛି ।

ଆଉ ଟିକେ ଆଗକୁ ଗଲେ ଆହୁରି ଅନେକ ଚିତ୍ର ଦେଖିବାକୁ ପାଇବ ।

ଏଟା ତେବେ କି ଧରଣର ଚିତ୍ର ଗ୍ୟାଲେରି ?

ଆଜିକାଲି ଶିଳ୍ପୀମାନେ ଆଲୋକିତ ଷ୍ଟୁଡିଓରେ ବସି ଚିତ୍ର ଆଙ୍କିଥାନ୍ତି । ଗ୍ୟାଲେରିରେ ଚିତ୍ରସବୁ ଏପରି ଜାଗାରେ ଟଙ୍ଗା ହୋଇଥାଏ, ଯେଉଁଠି ସବୁ ବେଳେ ଆଲୋକ ପଡ଼େ ।

ପ୍ରାଗୈତିହାସିକ ଯୁଗର ସେହି ଲୋକେ କାହିଁକି ଏକ ଅନ୍ଧକାରମୟ ଗୁହା ମଧ୍ୟରେ ମଣିଷ ଦୃଷ୍ଟିର ଆଢ଼ୁଆଳରେ ଏ ଚିତ୍ର ଗ୍ୟାଲେରିଟି ତିଆରି କରିଥିଲେ ?

ଏସବୁ ଦେଖିଲେ ମନେ ହୁଏ, ଶିଳ୍ପୀ ଏସବୁ ଚିତ୍ରକୁ ଅନ୍ୟମାନଙ୍କ ପାଇଁ ଆଙ୍କି ନଥିଲ ।

ତା'ହେଲେ, ସେ ଆଙ୍କିଥିଲ କାହିଁକି ? ଏହିସବୁ ପଶୁ ମୁଖା ପିନ୍ଧା ଅଦ୍ଭୁତ ନୃତ୍ୟରତ ଚିତ୍ରଗୁଡ଼ିକ ତେବେ କ'ଣ ?

## ରହସ୍ୟ ଏବଂ ତା'ର ସମାଧାନ ।

"ଅନେକ ଶିକାରୀ ମିଶି ନାଚୁଛନ୍ତି । ପ୍ରତ୍ୟେକଙ୍କ ଦେହରେ ବାଇସନ୍‌ର ଚମଡ଼ା, କିମ୍ବା ମୁଣ୍ଡରେ ମହିଷର ଶିଙ୍ଗ। ପ୍ରତ୍ୟେକର ହାତରେ ଧନୁଶର ବା ବର୍ଚ୍ଛା । ଏମାନେ ବାଇସନ୍ ଶିକାରର ଅଭିନୟ କରୁଛନ୍ତି । ନାଚି ନାଚି କେହି ହାଲିଆ ହୋଇ ପଡ଼ିଯିବାର ଛଳନା କରେ । ଆଉ ଜଣେ ତାକୁ ପିଛରେ ଦାଢ଼ ନଥିବା ଶରଟାଏ ମାରେ । ତା'ପରେ ବାଇସନ୍‌ଟି ମରିକି ପଡ଼ିଯାଏ । ସମସ୍ତେ ମିଶି ତା ପାଆ ଧରି ଟାଣି ଟୁଣି ତା'ର ଗ୍ରରି ପଟେ ଛୁରି ବୁଲଇ ଖେଳନ୍ତି । ଶେଷରେ ତାକୁ ଛାଡ଼ି ଦିଅନ୍ତି । ପୁଣି ଆଉ ଜଣକୁ ଧରି ସେଇ ଭଳି ନାଚନ୍ତି । ବେଳେ ବେଳେ ଏହି ନାଚ ଏକାଦମକେ ଦୁଇ ତିନି ସପ୍ତାହ ଧରି ଗ୍ରଲେ ।"

ଏହି ଭାବେ ଜଣେ ଦର୍ଶକ ଆଦିମ ଶିକାରୀମାନଙ୍କର ନାଚକୁ ବର୍ଣ୍ଣନା କରିଥିଲେ । କିନ୍ତୁ ସେ କେମିତି ଦେଖିବାକୁ ପାଇଲେ ?

ଉତ୍ତର ଆମେରିକାର ସମତଳ ଅଞ୍ଚଳରେ ଆଦିମ ଅଧିବାସୀମାନଙ୍କ ମଧ୍ୟରେ ସେ ଏହି ନାଚ ଦେଖିଥିଲେ । ସେମାନେ ଏବେବି ସେ ଆଦିମ ଶିକାରୀମାନଙ୍କ ଗ୍ରଲି ଚଳନକୁ ରକ୍ଷା କରିଛନ୍ତି ।

ଠିକ୍ ଏହି ଭଳି ଏକ ଶିକାର ନାଚର ବର୍ଣ୍ଣନା ଜଣେ ଆବିଷ୍କାରକଙ୍କ ଡାଇରିରେ ଆମେ ଦେଖିବାକୁ ପାଏଁ । ଏକ ଗୁହା ଦିହରେ କୌଣସି ପ୍ରାଗୈତିହାସିକ ଶିକାରୀ ଏହାକୁ ଚିତ୍ରଣ କରିଛନ୍ତି ।

ଏଥର ଆମେ ଜାଣି ପାରିଲେ ସେଇ ରହସ୍ୟମୟ ଚିତ୍ରର ଅର୍ଥ କ'ଣ । କିନ୍ତୁ ଏହି ରହସ୍ୟଟିର ସମାଧାନ ପାଇଁ ଆମେ ଆଉ ଗୋଟିଏ ନୃତ୍ୟ ଦେଖିଲେ । କେଉଁ ନାଚଟି ସପ୍ତାହ ସପ୍ତାହ ଧରି ଗ୍ରଲିଥାଏ ?

ଆମ ମତରେ ଯେଉଁ ନାଚ ଆନନ୍ଦ ପ୍ରମୋଦ ପାଇଁ ବା ଏକ କଳା ହିସାବରେ କରାଯାଏ, ତାହା ଏତେ ଦିନ ଧରି ଗ୍ରଲି ପାରେ କେମିତି ? ଆମେରିକାର ଲୋହିତ

ଭାରତୀୟମାନେ କ'ଣ ପୂରା ହାଲିଆ ହୋଇ ପଡ଼ିପଣ୍ଡ ପର୍ଯ୍ୟନ୍ତ ତିନି ସପ୍ତାହ ଧରି ନାଚି ପାରନ୍ତି ? ନା ସେମାନେ କଳାର ବଡ଼ ପୂଜାରୀ ? ତା'ଛଡ଼ା ସେମାନଙ୍କ ନାଚ ଏକ ସାଧାରଣ ନାଚ ନୁହଁ, ଏହା ଏକ ଉତ୍ସବ ଭଳି ।

ଏହି ନାଚରେ ତଦାରକ କରିଥାନ୍ତି ଜଣେ ଗୁଣିଆ । ସେ ତାଙ୍କ ପାଇପ୍‌ର ଯେଉଁ ଦିଗରୁ ଧୂଆଁ ଗଣୁଥିବେ ନାଚର ଗତି ସେଇ ଆଡ଼କୁ ମୁହାଁଉଥିବ । ମନେ ହେଉଥିବ ଏକ କାଳ୍ପନିକ ପଶୁକୁ ଯେମିତି ଅନ୍ୱେଷଣ କରି ଗ୍ଲଛନ୍ତି । ଗୁଣିଆଟି ଧୂଆଁ ଦ୍ୱାରା ନାଚର ନିର୍ଦ୍ଦେଶନା ଦେଇଥାଏ – ନୃତ୍ୟକାରୀମାନଙ୍କୁ ଉତ୍ତର ଦକ୍ଷିଣ, ପୂର୍ବ ପଶ୍ଚିମକୁ ପଠାଇ ଥାଏ ।

କିନ୍ତୁ ଜଣେ ଗୁଣିଆ ଯେଉଁଠି ନାଚର ନିର୍ଦ୍ଦେଶନା କରନ୍ତି ସେ ନାଚ ତ ନାଚ ନୁହଁ, ଏହା ଏକ ଗୁଣି ଗାରଡ଼ିର ନାଚ ହେବାର କଥା ।

ଆମେରିକାର ରେଡ୍‌ଇଣ୍ଡିଆନ ଭାବନ୍ତି, ସେମାନଙ୍କର ଏହି ଅଦ୍‌ଭୁତ ଅଙ୍ଗଭଙ୍ଗୀ ଏବଂ ଗୁଣି ବଳରେ ବାଇସନ୍‌କୁ ମନ୍ତ୍ର ମୁଗ୍‌ଧ କରି ଫାନ୍ଦରେ ପକାଇ ହେବ ।

ଏହାହିଁ ହେଉଛି ସେ ଗୁହା କାନ୍ଥରେ ଅଙ୍କା ହୋଇଥିବା ନୃତ୍ୟର ଅର୍ଥ । ସେ କେବଳ ଏକ ନର୍ତ୍ତକ ନୁହଁ, ସେ ଗୁଣି ଗାରଡ଼ି କରୁଥିବା ଜଣେ ଲୋକ । ଯେଉଁ ଶିଳ୍ପୀ ଗୁହାର ଆଭ୍ୟନ୍ତରରେ ଅନ୍ଧକାର ମଧ୍ୟରେ ନିଆଁ ଆଲୁଅରେ ଏ ଚିତ୍ର ଆଙ୍କିଥିଲେ ସେ ମଧ୍ୟ କେବଳ ଏକ ଶିଳ୍ପୀ ନୁହଁ, ସେ ଜଣେ ଯାଦୁକର ।

ଶିକାରୀମାନଙ୍କୁ ପଶୁ ଚମଡ଼ା ଏବଂ ମୁଖା ପିନ୍ଧିବା ଅବସ୍ଥାରେ ଏବଂ ଏକ ଆହତ ବାଇସନ୍‌ର ଚିତ୍ର ଆଙ୍କି ସେ ଏଭଳି ଏକ ଗୁଣି ଗାରଡ଼ି କାମ କରୁଛନ୍ତି, ଯିଏକି ଶିକାର ଉପରେ ଯାଦୁକରୀ ପ୍ରଭାବ ପକାଇବ ।

ଶିଳ୍ପୀଙ୍କର ପୂର୍ଣ୍ଣ ବିଶ୍ୱାସ ଯେ, ଏହି ଉତ୍ସବ ମୁଖର ନୃତ୍ୟଟି ଶିକାରରେ ସହାୟକ ହେବ ।

ଆମ ପକ୍ଷରେ ଏସବୁ ବଡ଼ ଉଦ୍‌ଭଟ ଏବଂ ହାସ୍ୟକର ମନେ ହୁଏ ।

ଆମର ନୂଆ ଘରଟିଏ କରିବାକୁ ଗଲାବେଳେ ଘରର ଭିତ୍ତି ସ୍ଥାପନ କରି ପଟେ ନାଚେ ନାହିଁ ବଢ଼େଇ ଏବଂ ମିସ୍ତ୍ରୀମାନଙ୍କ ଅଙ୍ଗଭଙ୍ଗୀକୁ ଅନୁକରଣ କରି । ତା'ଛଡ଼ା ଶିକାର କରିବାକୁ ଗଲାବେଳେ ବନ୍ଧୁକ ଧରି ନାଚେନା । କିନ୍ତୁ କଥାଟା ହେଉଛି, ଆମେ ଯେଉଁସବୁ କଥାକୁ ବୋକାମି ବୋଲି ଭାବେ, ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନେ ତାକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି ବିଚାର କରୁଥିଲେ ।

ଏଥର ଆମେ ଏକ ରହସ୍ୟପୂର୍ଣ୍ଣ ଚିତ୍ରର ଅର୍ଥ ବୁଝି ପାରିଲେ ଏବଂ କାନ୍ଥରେ କାହିଁକି ଏକ ନୃତ୍ୟରତ ମଣିଷର ଛବି ଅଙ୍କା ହୋଇଛି ଜାଣିଲେ ।

କିନ୍ତୁ ଏହା ଛଡ଼ା ଆଉ କେତେକ ଅଦ୍ଭୁତ ଚିତ୍ର ମଧ୍ୟ ଦେଖିବାକୁ ମିଳେ ।

ତମର ମନେ ଥିବ ଗୁହା ମଧ୍ୟରୁ ମିଳି ଥିବା ଏକ ହାଡ଼ ଖଣ୍ଡ ଉପରେ ଅଙ୍କିତ କାହାଣୀଟିକୁ । ଚିତ୍ରଟିରେ ପ୍ରଦର୍ଶିତ ଗୋଟିଏ ମୃତ ବାଇସନ୍‌ର ଦୁଇ ପାଖରେ ବସିଛନ୍ତି ଦୁଇ ଧାଡ଼ି ଶିକାରୀ । ବାଇସନ୍‌ଟିର ମୁଣ୍ଡ ଏବଂ ଆଗ ଗୋଡ଼ ଦୁଇଟି କେବଳ ବାକି ରହିଛି ।

ଏହି ଚିତ୍ରଟିର ଅର୍ଥ ତେବେ କ'ଣ ହୋଇ ପାରେ ?

ଏହାର ଉତ୍ତର ପାଇବାକୁ ହେଲେ ଆମକୁ ଉତ୍ତର ଆମେରିକାକୁ ନଯାଇ ରୁଷିଆର ସୁଦୂର ଉତ୍ତରକୁ ଯିବାକୁ ହେବ ।

ସାଇବେରିଆରେ ଏଭଳି କେତେକ ଅଞ୍ଚଳ ଅଛି, ଯେଉଁଠି ତିରିଶ କିମ୍ବା ଚାଳିଶ ବର୍ଷ ପୂର୍ବେ, ଶିକାରୀମାନେ ଭାଲୁ ମାରିକି "ଭାଲୁ ଭୋଜି" କରୁଥିଲେ । ଭାଲୁର ମୃତ ଦେହଟିକୁ ଏକ ଘର ମଧ୍ୟକୁ ଆଣି ସମ୍ମାନର ସହିତ ଏକ ଜାଗାରେ ରଖା ଯାଉଥିଲା । ଭାଲୁର ମୁଣ୍ଡଟିକୁ ରଖା ଯାଉଥିଲା ତା'ର ଆଗ ଦୁଇ ଥାବାର ମଧ୍ୟରେ । ରୁଟି ଏବଂ ବାର୍ଚ୍ଚ ଗଛର ଛାଲି ଉପରେ ଅଙ୍କିତ ଅନେକଗୁଡ଼ିଏ ହରିଣର ଚିତ୍ର ତା'ର ମୁଣ୍ଡ ପାଖକୁ ଥୋଇ ଦିଆଯାଏ । ଭାଲୁକୁ ଏସବୁ ଅର୍ପଣ କରାଯାଇଥାଏ । ବାର୍ଚ୍ଚ ଛାଲିକୁ ମୋଡ଼ି ଭାଲୁର ମୁଣ୍ଡକୁ ସଜେଇ ଦିଆ ଯାଏ ଏବଂ ଆଖି ଦୁଇଟିରେ ରୁପି ପଇସା ଥୋଇ ଦିଆଯାଏ । ତା'ପରେ ପ୍ରତ୍ୟେକ ଶିକାରୀ ଜଣ ଜଣ କରି ଭାଲୁର ଗୋଜିଆ ମୁହଁରେ ଚୁମା ଦିଅନ୍ତି ।

ଏହି ଭାବେ ଭୋଜିର ଶୁଭାରମ୍ଭ ହୁଏ ଏବଂ ଅନେକ ଦିନ ଧରି ବା କହିବାକୁ ଗଲେ, ଅନେକ ରାତି ଧରି ଚାଲେ । ପ୍ରତିଦିନ ରାତ୍ରିରେ ଶିକାରୀମାନେ ମୃତ ଦେହଟିର ଚତୁର୍ପାର୍ଶ୍ୱରେ ସମବେତ ହୋଇ ଗୀତ ଗାଆନ୍ତି ଏବଂ ନାଚନ୍ତି । ମୁହଁରେ ବାର୍ଚ୍ଚ ଗଛର ଛାଲି ବା କାଠର ମୁଖା ପିନ୍ଧି ସେମାନେ ଭାଲୁ ପାଖକୁ ଆସନ୍ତି ଏବଂ ମୁଣ୍ଡ ନତ କରି ତାକୁ ସମ୍ମାନ ପ୍ରଦର୍ଶନ କରନ୍ତି । ତା'ପରେ ତା'ର କଦର୍ଯ୍ୟ ଅଙ୍ଗଭଙ୍ଗୀକୁ ଅନୁକରଣ କରି ନାଚ ଆରମ୍ଭ ହୁଏ ।

ଗୀତ ନାଚ ଶେଷ ହୋଇ ଗଲା ପରେ ସେମାନେ ମାଂସ ଖାଇବାକୁ ବସନ୍ତି, କିନ୍ତୁ ପଶୁଟିର ମୁଣ୍ଡ ଏବଂ ଆଗ ଗୋଡ଼ ଦୁଇଟିକୁ ଛୁଅଁନ୍ତି ନାହିଁ ।

ଏଥର ଆମେ ହାଡ଼ ଫଳକଟି ଉପରେ ଅଙ୍କିତ ଚିତ୍ରଟିର ଅର୍ଥ କ'ଣ ଜାଣିଲେ । ଏଥିରେ ଏକ 'ବାଇସନ୍ ଭୋଜି' ଚିତ୍ରଟି ଅଙ୍କିତ ହୋଇଛି । ଚିତ୍ରରେ ଥିବା ଲୋକେ ବାଇସନ୍ ଚାରି ପଟେ ଘେରି କି ବସି ତାକୁ ଧନ୍ୟବାଦ ଜଣାଉଛନ୍ତି ତା'ର ମାଂସ ପାଇଁ । ଭବିଷ୍ୟତରେ ଏହି ଭଳି ଦୟାଳୁ ଏବଂ ଉଦାର ହେବା ପାଇଁ ସେମାନେ ତାକୁ ନିବେଦନ କରନ୍ତି ।

ଏତ ଗଲ୍ପ ସାଇବେରିଆ କଥା । ତମେ ଯଦି ଆମେରିକାର ରେଡ଼ଇଣ୍ଡିଆନମାନଙ୍କ ପାଖକୁ ପୁଣି ଫେରି ଯିବ, ତେବେ ସେଠି ମଧ୍ୟ ଏକା ରକମର ଲୋକ ଦେଖିବାକୁ ପାଇବ ।

ବୁଲଚୁଆନ ଉପଜାତିର ଶିକାରୀମାନେ ହରିଣକୁ ମାରିଲା ପରେ ତା'ର ପଛ ଗୋଡ଼ ଦୁଇଟାକୁ ପୂର୍ବକୁ କରି ରଖିଥାନ୍ତି । ତା'ପରେ ଏକ ଥାଳରେ କିଛି ଖାଦ୍ୟ ରଖି ତା'ର ମୁଣ୍ଡ ପାଖକୁ ଥୋଇ ଦିଅନ୍ତି । ପ୍ରତ୍ୟେକ ଶିକାରୀ ପାଳି କରି ମୃତ ହରିଣଟି ପାଖକୁ ଆସନ୍ତି ଏବଂ ଡାହାଣ ହାତରେ ମୁଣ୍ଡରୁ ଲାଙ୍ଗୁଡ଼ ପର୍ଯ୍ୟନ୍ତ ଥାପୁଡ଼େଇ କି ତାକୁ ଧନ୍ୟବାଦ ଜଣାନ୍ତି ଏଇଥି ପାଇଁ ଯେ, ସେ ନିଜକୁ ମରିବାକୁ ଦେଇଛି ।

ସମସ୍ତେ ତାକୁ ଶୁଭ କାମନା କରନ୍ତି, "ବଡ଼ ଭାଇ ତମେ ଏଥର ବିଶ୍ରାମ ନିଅ !"

ତା'ପରେ ଗୁଣିଆଟି ହରିଣକୁ କହେ :

"ତୁ ଆମକୁ ତୋର ଶିଙ୍ଗଗୁଡ଼ିକ ଦେଇଛୁ, ତେଣୁ ତୋତେ ଆମେ ଧନ୍ୟବାଦ ଜଣାଉଛୁ ।"

# ସପ୍ତମ ଅଧ୍ୟାୟ

## କିସ ପୁଣି ଦେଖା ନଯାଏ... ।

ପିଲା ଦିନେ ତମେମାନେ ଅନେକ ପରୀକାହାଣୀ ଶୁଣିଥିବ । ରୁଷ୍ ପିଲମାନଙ୍କ ମଧ୍ୟରୁ ସମସ୍ତେ ରାଜପୁତ୍ର ଇଭାନ୍ ଏବଂ ସୁନ୍ଦରୀ ଭାସିଲିସା, ନିଆଁ ଚଢ଼େଇ ଏବଂ କୁଜା ଘୋଡ଼ା ସଂପର୍କରେ କାହାଣୀ ସବୁ ଜାଣନ୍ତି । ଆହୁରି ଅନେକ ଗପ ଜାଣନ୍ତି, ଯେଉଁଥିରେ ପଶୁମାନେ ମଣିଷ ପାଲଟି ଯାଆନ୍ତି ଏବଂ ମଣିଷ ବି ପଶୁ ପାଲଟି ଯାଆନ୍ତି ।

ପରୀକାହାଣୀରେ ଆମେ ଯଦି ବିଶ୍ୱାସ କରିବା ତେବେ ମାନିବାକୁ ହେବ ଯେ, ଏ ପୃଥିବୀ ସାରା ରହସ୍ୟମୟ ଜୀବଜନ୍ତୁ, ଦୟାଳୁ ଏବଂ ନିଷ୍ଠୁର, ଦୃଶ୍ୟ ଏବଂ ଅଦୃଶ୍ୟ ପ୍ରାଣୀମାନେ ବାସ କରନ୍ତି । ଏହି ଛଳନାପୂର୍ଣ୍ଣ ଦୁନିଆରେ ନିଷ୍ଠୁର ଯାଦୁକର ବା ଭୟଙ୍କର ଡାଆଣୀମାନଙ୍କ ପ୍ରତି ସର୍ବଦା ହୁସିଆର ରହିବା କଥା ।

ତୁମେ ତୁମର ନିଜ ଆଖିକୁ ବି ଏଠି ବିଶ୍ୱାସ କରି ପାରିବ ନାହିଁ, କାରଣ ହଠାତ୍ କୁତ୍ସିତ ବେଙ୍ଗଟାଏ ଏକ ପରମା ସୁନ୍ଦରୀରେ ପରିଣତ ହୋଇ ଯାଉଛି କିମ୍ବା ସୁନ୍ଦର ଏକ ଯୁବକ ଏକ ଭୟଙ୍କର ଶାପ ପାଲଟି ଯାଉଛି । ଏଠାରେ ପ୍ରତିଟି ଜିନିଷ ତା'ର ନିଜସ୍ୱ କେତେକ ନିୟମକୁ ଅନୁସରଣ କରିଥାଏ : ମୃତ ଲୋକ ଜୀବିତ ହୋଇ ଯାଏ, କଟା ହୋଇଥିବା ମୁଣ୍ଡ ବି କଥା କହେ, ପାଣି ଭିତରେ ରହୁଥିବା ଲୋକେ କେଉଟକୁ ବୁଲେଇ ପାଣି ଭିତରକୁ ନେଇ ଯାଆନ୍ତି ।

ବିଖ୍ୟାତ ରୁଷ୍ କବି ପୁସିନ୍‌ଙ୍କର ଏକ କବିତାରେ ଆମେ ନିମ୍ନଲିଖିତ ପଂକ୍ତିଗୁଡ଼ିକ ପଢ଼ିବାକୁ ପାଉଁ :

> କିସ ପୁଣି ଦେଖା ନଯାଏ ସେଠି
> ପ୍ରେତମାନେ ବୁଲୁ ଥାଆନ୍ତି
> ଜଳପରୀ ଡାଳେ ଥାଆନ୍ତି ବସି

ପରୀକାହାଣୀ ସବୁ ପଢ଼ିଲା ବେଳେ ଆମକୁ ଏସବୁ ସତ ବୋଲି ମନେ ହୁଏ । କିନ୍ତୁ ବହିଟିକୁ ବନ୍ଦ କରି ଦେଲା ପରେ ଆମେ ପୁଣି ଆମର ବାସ୍ତବ ଦୁନିଆକୁ ଫେରି ଆସେ । ବାସ୍ତବ ଦୁନିଆରେ ଗୁଣିଆ ନଥାନ୍ତି କି ଡାଆଣୀ ବି ନଥାନ୍ତି । ଏଠି ସବୁ କିଛିକୁ ବିଶ୍ଳେଷଣ କରି ହୁଏ । ପରୀକାହାଣୀ ଯେତେ ମନମୁଗ୍ଧକର ହେଉନା କାହିଁକି



ନ୍ୟୁ-ପୋମେରାନିଆର ଏକ ପ୍ରେତ-ନୃତ୍ୟ ।

ଆମେ ଏକ ଛଳନାପୂର୍ଣ୍ଣ ଦୁନିଆରେ ବାସ କରିବାକୁ ଗ୍ରହିବୁ ନାହିଁ । କାରଣ ସେ ଦୁନିଆରେ ମଣିଷର ମନ ଅସହାୟ ଏବଂ ମଣିଷକୁ ସେଠି ରାଜକୁମାର ଇଭାନ୍‌ଙ୍କ ଭଳି ସୌଭାଗ୍ୟବାନ ହୋଇ ଜନ୍ମିବା ଦରକାର । ଏମିତି ନହେଲେ ହେଟା ବାଘ କିମ୍ବା ଡାଆଣୀ ସହିତ ଲଢ଼େଇରେ ସେ ବର୍ତ୍ତି ପାରିବ ନାହିଁ ।

କିନ୍ତୁ ଆମର ପ୍ରାଗୈତିହାସିକ ପୂର୍ବପୁରୁଷଙ୍କ ଆଗରେ ପୃଥିବୀଟା ସତକୁ ସତ ଏହି ଭଳି ମନେ ହେଉଥିଲା । ସେମାନେ କାଳ୍ପନିକ ଜଗତ ଆଉ ନିଜେ ବାସ କରୁଥିବା ବାସ୍ତବ ଜଗତ ମଧ୍ୟରେ ପାର୍ଥକ୍ୟ କ'ଣ ଜାଣୁ ନଥିଲେ । ସେମାନେ ଭାବୁଥିଲେ ଭଲ ମନ୍ଦ ସବୁକିଛି କୌଣସି ଏକ ଶକ୍ତିର ନିର୍ଦ୍ଦେଶରେ ଘଟୁଛି ।

ଝୁଣ୍ଟି ପଡ଼ିଲେ ଆମେ ଆମ ନିଜର ବା ନିଜ ଅସାବଧାନତାର ଦୋଷ ଦେଇଥାଏଁ ।

କିନ୍ତୁ ପ୍ରାଗୈତିହାସିକ ମଣିଷ ଏକ ଅଦେଖା ସଇତାନର ମୁଣ୍ଡରେ ଦୋଷକୁ ବୋଳି ଦେଉଥିଲା ।

କିଏ ଛୁରା ଘାତରେ ମରିଗଲେ ଆମେ କହେଁ ସେ ଛୁରା ଘାତରେ ମଲା ।

କିନ୍ତୁ ପ୍ରାଗୈତିହାସିକ ମଣିଷ କହିଥାନ୍ତା, ସେ ଛୁରାଟାକୁ ଗୁଣି କରାଯାଇଛି ବୋଲି ସେ ତାକୁ ମାରି ଦେଲା ।

ଅବଶ୍ୟ ବର୍ତ୍ତମାନ ସୁଦ୍ଧା ଏପରି ଲୋକ ଅଛନ୍ତି, ଯେଉଁମାନେ ଦେହ ଖରାପ ହେଲେ କହନ୍ତି ଅମୁକ ଲୋକର ଦୃଷ୍ଟି ତା ଉପରେ ପଡ଼ିଛି, ସୋମବାରେ କୌଣସି କିଛି କଲେ ଅମଙ୍ଗଳ ହୁଏ, କଳା ବିରାଡ଼ି ଆଗରେ ଗଲିଗଲେ ଖରାପ କିଛି ଘଟେ ।

ଏସବୁ କଥା ଶୁଣିଲେ ଆମେ ସେମାନଙ୍କୁ ବୋକା ବୋଲି କହୁଁ । ଆମ ଯୁଗରେ ଲୋକେ କୁସଂସ୍କାରରେ ବିଶ୍ୱାସ କରିବାର କୌଣସି କାରଣ ନାହିଁ । କାରଣ ମଙ୍ଗଳକର ବା ଅମଙ୍ଗଳକର ଶକ୍ତି ଉପରେ ବିଶ୍ୱାସଟା ଆସିଥାଏ ଅଜ୍ଞତା ମଧ୍ୟରୁ କୁସଂସ୍କାର ହେଉଛି ଏକ ବୁଦ୍ଧି ଆଣୀ ଜାଇ ଉଳି, ଯିଏକି ଅନ୍ଧକାର ମଧ୍ୟରେ ବଢ଼ି ଉଠେ ।

ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନେ ଭୂତ ପ୍ରେତରେ ବିଶ୍ୱାସ କରୁଥିଲେ ବୋଲି ସେମାନଙ୍କୁ ପରିହାସ କରିବା ମଧ୍ୟ ଠିକ୍ ନୁହେଁ । କାରଣ ଏଟା ସେମାନଙ୍କର ଦୋଷ ନୁହେଁ । ସେମାନେ ଚେଷ୍ଟା କରୁଥିଲେ ପ୍ରକୃତିକୁ ବୁଝିବା ପାଇଁ ଏବଂ ଏହି ଭାବେ ପ୍ରକୃତିର ନିୟମକୁ ସେମାନେ ବ୍ୟାଖ୍ୟା କରୁଥିଲେ । ଏକ ସଠିକ ଉତ୍ତର ପାଇବା ପାଇଁ ଯେଉଁ ଜ୍ଞାନ ଦରକାର ସେ ଜ୍ଞାନ ସେମାନଙ୍କ ପାଖରେ ମୋଟେ ନଥିଲା ।

ଅଷ୍ଟ୍ରେଲିଆର ବହୁ ଆଦିମ ଜାତି ଏବେ ମଧ୍ୟ ଏହି ଅବସ୍ଥାରେ ଅଛନ୍ତି ।

ପ୍ରସ୍ତର ଯୁଗର କୁସଂସ୍କାର ଏବଂ ଅନ୍ଧବିଶ୍ୱାସ ଏବେ ମଧ୍ୟ ସେମାନଙ୍କ ମଧ୍ୟରେ ପ୍ରଚଳିତ ବୋଲି ଆଶ୍ଚର୍ଯ୍ୟ ହେବାର କିଛି ନାହିଁ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜଣେ ଆବିଷ୍କାରକ କହିଥିଲେ :

"ଉପକୂଳରେ ବାସ କରୁଥିବା ସ୍ଥାନୀୟ ବାସିନ୍ଦାମାନେ ପାଇଟଣା ନୌକା ବା ନୂଆ ଧରଣର ଅଟ୍ଟାଳ ଦୌଡ଼ି କିମ୍ବା ବେଣି ଚିମ୍ନି ଥିବା ବାଷ୍ପଚାଳିତ ଜାହାଜ ଦେଖିଲେ ଅତ୍ୟନ୍ତ ଆଶ୍ଚର୍ଯ୍ୟ ହୋଇଯାଉଥିଲେ । କେବଳ ସେତିକି ନୁହେଁ, ବର୍ଷାତି, ନୂଆ ରକମର ଟୋପି, ଘୂରନ୍ତ ଚେୟାର ବା ପୂର୍ବରୁ ନଦେଖିଥିବା କୌଣସି ଯନ୍ତ୍ର ଦେଖିଲେ ସେମାନେ ସନ୍ଦେହ କରୁଥିଲେ ।"

ସେମାନଙ୍କର ଧାରଣା, ଆଗରୁ ଯେଉଁସବୁ ଜିନିଷ ସେମାନେ ଦେଖି ନାହାନ୍ତି ସେସବୁ ହେଉଛି ଗୁଣି ଗାରୁଡ଼ିର କାଣ୍ଡ ।

ଅଭିଜ୍ଞତାରୁ ସେମାନେ ଜାଣିଛନ୍ତି ଯେ, ସବୁ କିଛି ପରସ୍ପର ସହିତ ସଂପୃକ୍ତ ।

କିନ୍ତୁ ସେମାନେ ଜାଣନ୍ତି ନାହିଁ କାହିଁକି ଏଭଳି ହେଉଛି । ତେଣୁ ସେମାନଙ୍କର ବିଶ୍ୱାସ କେତେକ ଜିନିଷର ଯାଦୁକରୀ ପ୍ରଭାବ ଅନ୍ୟ କେତେକ ଉପରେ ପଡ଼େ ।

ସେମାନଙ୍କର ଧାରଣା, କାହାରି "ଅଶୁଭ ଦୃଷ୍ଟିକୁ" ଏଡ଼େଇବାକୁ ହେଲେ ତେଉଁରିଆ ବା କବଚ ପିନ୍ଧିବାକୁ ହୁଏ । ସେଟା କୁମ୍ଭୀର ଦାନ୍ତରେ ତିଆରି ମାଳି ହୋଇ ପାରେ ବା ହାତୀ ଙ୍କୁଦରେ ଉଠିଥିବା ବାଳରେ ତିଆରି ଏକ ବାଜୁବନ୍ଧ ହୋଇ ପାରେ । ଏ ଧରଣର ଜିନିଷ ହେଉଛି ରକ୍ଷା କବଚ ଭଳି । ଯିଏ ଯାକୁ ପିନ୍ଧେ ତା'ର ବିପଦ ଆପଦ ପଡ଼େନା ।

ଏହି ଆଦିମ ଅଧିବାସୀମାନେ ପୃଥିବୀ ଏବଂ ପ୍ରକୃତି ସଂପର୍କରେ ଏବେ ଯେତିକି ଜାଣିଛନ୍ତି ତାଠାରୁ ବେଶି ଆମର ପ୍ରାଗୈତିହାସିକ ପୂର୍ବପୁରୁଷମାନେ ଜାଣି ନଥିଲେ ।

ଖୁବ୍ ସମ୍ଭବତଃ ସେମାନେ ବିଶ୍ୱାସ କରୁଥିଲେ ଜାଦୁବିଦ୍ୟା, ଗୁଣି ଗାରୁଡ଼ି ଏବଂ ତନ୍ତ୍ର ବିଦ୍ୟା ଉପରେ । ଏହାର ପ୍ରମାଣ ଦିଏ ପ୍ରତ୍ନତାତ୍ତ୍ୱିକ ଖନନ କ୍ଷେତ୍ରରୁ ମିଳିଥିବା ତେଉଁରିଆ ଏବଂ ଗୁହାମାନଙ୍କରେ ଖୋଦିତ ଜାଦୁକରୀ ଚିତ୍ରଗୁଡ଼ିକ ।

## ଜଗତ ସଂପର୍କରେ ଆମ ପୂର୍ବପୁରୁଷଙ୍କ ଧାରଣା ।

ପ୍ରକୃତିର ନିୟମାବଳୀ ଜାଣି ନଥିଲେ କାହାରି ପକ୍ଷରେ ଏ ଜଗତରେ ଚଳିବା କଷ୍ଟକର । ପ୍ରତି ପଦକ୍ଷେପରେ ଅଦୃଶ୍ୟ ଅଜଣା ଶକ୍ତି ନିକଟରେ ନିଜକୁ ଅସହାୟ ଏବଂ ଦୁର୍ବଳ ମନେ ହେବ । ତା'ର ମନେ ହେବ ପ୍ରତ୍ୟେକଟି ଅଜଣା ଜିନିଷ ହୁଏତ ଏକ ତେଉଁରିଆ ବା ପ୍ରତିଟି ଅଜଣା ମଣିଷ ହୁଏତ ଏକ ଗୁଣିଆ । ତା'ର ବିଶ୍ୱାସ, ସବୁଠି ପ୍ରତିହିଂସା ପରାୟଣ ଏବଂ ଅଶାନ୍ତ ଭୂତ ପ୍ରେତସବୁ ଜୀବନ୍ତ ମଣିଷକୁ ଆକ୍ରମଣ କରିବାକୁ ସର୍ବଦା ଉଦ୍ୟତ ରହିଛନ୍ତି । ଯେଉଁସବୁ ଜୀବଜନ୍ତୁକୁ ଶିକାର କରାଯାଉଛି ସେମାନେ ନିଶ୍ଚୟ ସେମାନଙ୍କୁ ମରିଥିବା ଶିକାରୀ ଉପରେ ପ୍ରତିହିଂସା ନେବାକୁ ଆସନ୍ତି । ତେଣୁ ବିପଦକୁ ଏଡ଼େଇବା ପାଇଁ ସେଇସବୁ ଭୂତ ପ୍ରେତମାନଙ୍କୁ ସବୁବେଳେ ଶାନ୍ତି କରେଇବାକୁ ହେବ, ସେମାନଙ୍କ ନିକଟରେ ଭିକ୍ଷା ପ୍ରାର୍ଥନା କରିବାକୁ ହେବ, ସେମାନଙ୍କୁ ବିଭିନ୍ନ ଜିନିଷ ଅର୍ପଣ କରିବାକୁ ହେବ ।

ଅଜ୍ଞତାରୁ ଆସେ ଭୟ ।

ମଣିଷର ଜ୍ଞାନର ଅଭାବ ଥିଲା । ତେଣୁ ସେ ପ୍ରକୃତି ଉପରେ ହାକିମ୍ ଜାରି ନକରି ପାରି ଭୟରେ ଦୟନୀୟ ଭିକାରୀ ଭଳି ଜୀବନ କାଟୁଥିଲା ।

ମଣିଷ ପକ୍ଷରେ ସେତେବେଳେ ଅବଶ୍ୟ ପ୍ରକୃତି ଉପରେ ପ୍ରଭୁତ୍ୱ ବିସ୍ତାର

କରିବା ସମ୍ଭବ ନଥିଲା । ସେତେବେଳକୁ ସେ ପୃଥିବୀର ସମସ୍ତ ପ୍ରାଣୀମାନଙ୍କ ମଧ୍ୟରେ ବଳିଆନ ହୋଇ ଆସିଥିଲା, ମାମଥ୍ ଭଳି ପ୍ରବଳ ପରାକ୍ରମୀ ଜନ୍ତୁକୁ ସେ ଜୟ କରି ମାରି ଥିଲା । କିନ୍ତୁ ପ୍ରକୃତିର ବିରାଟ ଶକ୍ତିମାନଙ୍କ ଆଗରେ ସେ ଥିଲା ଅତ୍ୟନ୍ତ ଦୁର୍ବଳ । ସେମାନଙ୍କୁ କିପରି ଆୟତ୍ତ କରିବାକୁ ହେବ, ସେ କଥା ତାକୁ ଜଣା ନଥିଲା, ସେ ପର୍ଯ୍ୟନ୍ତ ।

ଦିନେ ଶିକାର ନ ଜୁଟିଲେ ସପ୍ତାହକ ପର୍ଯ୍ୟନ୍ତ ହୁଏତ ତାକୁ ଭୋକରେ ସଢ଼ିବାକୁ ପଡ଼ୁଥିଲା । ସେତେବେଳେ ପ୍ରବଳ ବରଫ ଝଡ଼ଟାଏ ବହି ଆସି ତା'ର କୁଡ଼ିଆକୁ ବରଫରେ ଢାଙ୍କି ପକାଉ ଥିଲା ।

କିନ୍ତୁ ଏଭଳି ଅସହାୟ ଅବସ୍ଥାରେ ମଣିଷକୁ କିଏ ତେବେ ଶକ୍ତି ଯୋଗାଇଲା କ୍ରମେ କ୍ରମେ, ପାଦେ ପାଦେ କରି ପ୍ରକୃତିର ଶକ୍ତିମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କରିବାକୁ ?

ମଣିଷ ଶକ୍ତିର ମୂଳ ଉତ୍ସ ଥିଲା ଏକତା ।

ସମଗ୍ର ଗୋଷ୍ଠୀ, ପୂରା ଉପଜାତି ଦଳବଦ୍ଧ ଭାବେ ପ୍ରକୃତିର ପ୍ରତିକୂଳ ଶକ୍ତି ବିରୁଦ୍ଧରେ ଲଢ଼ି ଯାଉଥିଲେ । ଏକତ୍ର ସେମାନେ କାମ କରୁଥିଲେ, ସେମାନଙ୍କର ଏହି ମିଳିତ ଶ୍ରମ ମଧ୍ୟରୁ ସେମାନେ ସଞ୍ଚୟ କରୁଥିଲେ ଜ୍ଞାନ ।

ସେମାନେ ଅବଶ୍ୟ ଏ କଥା ମୋଟେ ହୃଦୟଙ୍ଗମ କରି ନଥିଲେ । ବରଂ ସେମାନେ ସେମାନଙ୍କ ନିଜସ୍ୱ ବାଟରେ ବୁଝିଥିଲେ ।

ମାନବ ସମାଜ କ'ଣ, ସେ ବିଷୟରେ ସେମାନଙ୍କର କୌଣସି ଧାରଣା ନଥିଲା । କିନ୍ତୁ ସେମାନେ ଏତିକି ଅନୁଭବ କରୁଥିଲେ ଯେ, କୌଣସି ଏକ ଅଦୃଶ୍ୟ ବନ୍ଧନରେ ସେମାନେ ପରସ୍ପର ସହିତ ଆବଦ୍ଧ । କୌଣସି ଏକ ଗୋତ୍ରର ସମସ୍ତ ଲୋକେ ହେଉଛନ୍ତି ଏକ, ବିରାଟ ଏବଂ ବହୁବାହୁଥିବା ଗୋଟିଏ ଲୋକ ।

ସେମାନଙ୍କୁ ତେବେ କେଉଁ ବନ୍ଧନ ଏପରି ଏକ କରିଥିଲା । ରକ୍ତ ସଂପର୍କ ବା ଆତ୍ମୀୟତା ବନ୍ଧନରେ ସେମାନେ ଆବଦ୍ଧ ଥିଲେ । ଲୋକେ ବଡ଼ ବଡ଼ ପରିବାରରେ ବାସ କରୁଥିଲେ, ପିଲାମାନେ ସେମାନଙ୍କ ମାମାନଙ୍କ ପାଖରେ ରହୁଥିଲେ । ସେମାନେ ବଢ଼ି ବୁଢ଼ି ସେମାନଙ୍କର ପିଲାପିଛି ହେଲା ପରେ ମଧ୍ୟ ନିଜର ଭାଇ ଭଉଣୀ, ଦାଦା ଖୁଡ଼ୀ, ମା ଏବଂ ବୁଢ଼ୀମାମାନଙ୍କ ସହିତ ଏକାଠି ରହୁଥିଲେ ।

ଏହି ଭାବେ ପରିବାର ବା କୁଳର ଉତ୍ପତ୍ତି ଘଟିଥିଲା ।

ଆଦିମ ଶିକାରୀମାନେ ବାସ କରୁଥିବା ପ୍ରାଗୈତିହାସିକ ସମାଜ ଥିଲା ତା'ର ନିଜ ପରିବାର ବା କୁଳ । ସମଗ୍ର କୁଳଟି ଏକ ଗୋଟିଏ ପୂର୍ବପୁରୁଷଠାରୁ ଜନ୍ମ ନେଇଥିଲେ । ଲୋକେ ବିଶ୍ୱାସ କରୁଥିଲେ, ସେମାନେ ସବୁ କିଛି ପାଇଁ ସେମାନଙ୍କ

ପୂର୍ବପୁରୁଷମାନଙ୍କ ନିକଟରେ ଋଣୀ । ସେମାନଙ୍କ ପୂର୍ବପୁରୁଷମାନେ ସେମାନଙ୍କୁ ଶିକ୍ଷା ଦେଇଥିଲେ ଶିକାର କିପରି କରିବାକୁ ହୁଏ, ହତିଆର କିପରି ତିଆରି କରିବାକୁ ପଡ଼େ । ସେମାନେ ତାଙ୍କୁ ବାସସ୍ଥାନ ଦେଇଛନ୍ତି ଏବଂ ଅଗ୍ନିର ବ୍ୟବହାର ଶିଖାଇଛନ୍ତି ।

ସେମାନେ ଭାବୁଥିଲେ, କାମ କରିବା ଏବଂ ଶିକାର କରିବା ଅର୍ଥ ପୂର୍ବପୁରୁଷଙ୍କର ଅଭିପ୍ରାୟକୁ ପୂରଣ କରିବା । ସେମାନଙ୍କ ଅଭିପ୍ରାୟ ଯେଉଁମାନେ ପୂରଣ କରନ୍ତି, ସେମାନେ ତାଙ୍କୁ ବିପଦ ଆପଦରୁ ରକ୍ଷା କରନ୍ତି । ପୂର୍ବପୁରୁଷମାନେ ହେଉଛନ୍ତି ସେମାନଙ୍କ ପରିବାରର ଅଭିନ୍ନ ଅଂଶ । ଶିକାର ବେଳେ ସେସବୁ ଆତ୍ମା ସେମାନଙ୍କ ସହିତ ରହିଥାଏ ଏବଂ ସେମାନଙ୍କ ବାସସ୍ଥାନରେ କ'ଣ ହେଉଛି, ସେସବୁକୁ ସେମାନେ ଜାଣି ପାରନ୍ତି ଓ ଦେଖି ପାରନ୍ତି । କେହି ଭୁଲ କଲେ ସେମାନେ ତାକୁ ଦଣ୍ଡ ଦିଅନ୍ତି ଏବଂ ଭଲ କାମ କଲେ ପୁରସ୍କୃତ କରନ୍ତି ।

ଏହି ଭାବେ ସମସ୍ତଙ୍କ ଭଲ ପାଇଁ ସମସ୍ତେ ମିଳି କାମ କରିବାଟା ସେମାନଙ୍କ ପୂର୍ବପୁରୁଷମାନଙ୍କର ଇଚ୍ଛା ପ୍ରତି ଅନୁରକ୍ତି ଏବଂ ସେ ଇଚ୍ଛାର ପରିପୂରଣ ବୋଲି ଆଦିମ ମଣିଷ ମନରେ ସୃଷ୍ଟି ହୋଇଥିଲା ।

ତଥାପି ପ୍ରାଗୈତିହାସିକ ମଣିଷ ଆଜିକାଲିକାର ମଣିଷ ଭଳି ଶ୍ରମର ମର୍ଯ୍ୟାଦା କ'ଣ ଜାଣି ନଥିଲା ।

ଆମେ ଭାବୁଛେ, ପ୍ରାଗୈତିହାସିକ ମଣିଷ ବାଇସନ୍ ମାରି ନିଜେ ଖାଉଥିଲା ଏବଂ ତା ପରିବାରକୁ ଖୁଆଉଥିଲା । କିନ୍ତୁ ସେମାନଙ୍କର ଧାରଣା ଥିଲା ଭିନ୍ନ । ସେମାନେ ଭାବୁଥିଲେ ବାଇସନ୍ ଦୟାକରି ସେମାନଙ୍କୁ ତା'ର ମାଂସ ଖୁଆଉଛି । ଏବେବି ସେହି ପୁରାକାଳର ପ୍ରଭାବରେ ପ୍ରଭାବିତ ହୋଇ ଆମେ କହେଁ, ଗାଈ ଦୁଧ ଦିଏ, ପୃଥିବୀ ଆମର ମା । କିନ୍ତୁ ଆମେ କ'ଣ କେବେ ଦୁଧ ଦୁହିଁବା ପୂର୍ବରୁ ଗାଈଠାରୁ ଅନୁମତି ନିଏଁ ? ତା ସତ୍ତ୍ୱେ ଆମେ କହେଁ, ଗାଈ ଆମକୁ ଦୁଧ ଦିଏ ।

ପ୍ରାଗୈତିହାସିକ ଶିକାରୀର 'ଦାତା' ଥିଲେ ଜୀବଜନ୍ତୁ—ବାଇସନ୍, ମାମଥ୍ ବା ହରିଣ । ଶିକାରୀ ବାଇସନ୍ ଶିକାର କରେ ବୋଲି ଭାବୁ ନଥିଲା, ତା'ର ବିଶ୍ୱାସ ଥିଲା, ସେ ସ୍ୱେଚ୍ଛାରେ ତାକୁ ମାଂସ ଏବଂ ଚମଡ଼ା ଦାନ କରୁଛି । ଆମେରିକାର ଲୋହିତ ଭାରତୀୟମାନେ ଭାବୁଥିଲେ ଜୀବଜନ୍ତୁଙ୍କ ଇଚ୍ଛା ବିରୁଦ୍ଧରେ ସେମାନଙ୍କୁ ମାରି ହେବ ନାହିଁ । ବାଇସନ୍‌କୁ କେହି ମାରିଲା ଅର୍ଥ ବାଇସନ୍ ନିଜେ ମରିବାକୁ ଚାହିଁଲା, ଲୋକଙ୍କ ପାଇଁ ନିଜକୁ ବଳି ଦେବାକୁ ଚାହିଁଲା ।

ବାଇସନ୍‌କୁ ଜୀବନର ରକ୍ଷାକର୍ତ୍ତା ଏବଂ ଦାତା ବୋଲି ସେମାନେ ଭାବୁଥିଲେ । ଏଥି ସଙ୍ଗେ ସଙ୍ଗେ ସେମାନଙ୍କ ଅଭିନ୍ନ ପୂର୍ବପୁରୁଷମାନଙ୍କୁ ସେମାନେ ଭାବୁଥିଲେ ରକ୍ଷାକର୍ତ୍ତା ବୋଲି ।

ଏହି ଭାବେ କୁଳର ରକ୍ଷାକର୍ତ୍ତା ପୂର୍ବପୁରୁଷ ଏବଂ ଜୀବନ ରକ୍ଷାକାରୀ ଜୀବ କ୍ରମଶଃ ପ୍ରାଗୈତିହାସିକ ମଣିଷର ମନରେ (ସେ ପର୍ଯ୍ୟନ୍ତ ଜଗତ ସଂପର୍କରେ ତା'ର ପରିଷ୍କାର ଧାରଣା ନଥିଲା) ଏକାଠି ମିଶିଗଲେ ।

ଶିକାରୀମାନେ କହୁଥିଲେ, "ଆମେ ବାଇସନ୍‌ର ସନ୍ତାନ" । ଏବଂ ସେମାନଙ୍କର ଦୃଢ଼ ବିଶ୍ବାସ ଥିଲା ଯେ, ସେମାନଙ୍କ ପୂର୍ବପୁରୁଷ ବାଇସନ୍ ଥିଲା । ଏହି କାରଣରୁ ସେକାଳର ଶିଳ୍ପୀ ବାଇସନ୍‌ର ଚିତ୍ର ଆଙ୍କିଲା ବେଳେ ତା ଦେହରେ ତିନୋଟି ତମ୍ବୁ ଆଙ୍କି ଦେଉଥିଲା, ଅର୍ଥାତ୍ "ବାଇସନ୍‌ର ପିଲାଙ୍କ ଘର" ।

ମଣିଷ ସେତେବେଳେ ତା'ର ଦୈନନ୍ଦିନ କର୍ମଜୀବନରେ ପଶୁମାନଙ୍କ ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲା । କିନ୍ତୁ କୌଳିକ ସଂପର୍କ ବିନା ଅନ୍ୟ କିଛି ସଂପର୍କ ଥାଇ ପାରେ ବୋଲି ସେ ଭାବି ପାରୁ ନଥିଲା ସେତେବେଳେ । ଯେକୌଣସି ସମାଜ ବୋଇଲେ ସେଥିରେ କିଛି ସାଧାରଣ ବା ଅଭିନ୍ନତା ରହିଥାଏ । କୌଣସି ପଶୁକୁ ହତ୍ୟା କଲା ବେଳେ ସେ ତାକୁ ବଡ଼ ଭାଇ ବୋଲି ସମ୍ବୋଧନ କରି ତାକୁ ହତ୍ୟା କରୁଥିଲା । ତା'ର ସେ ନାଚ ଏବଂ ଗୁଣି ଗାରୁଡ଼ି କାମ ବେଳେ ସେ ଚେଷ୍ଟା କରୁଥିଲା ତା'ର ପଶୁ ବଡ଼ ଭାଇକୁ ଅନୁକରଣ କରିବାକୁ । ତା'ର ଚମଡ଼ାକୁ ସେ ପିନ୍ଧୁଥିଲା ଏବଂ ତା'ର ଗତିବିଧିକୁ ଅନୁକରଣ କରୁଥିଲା ।

ମଣିଷ ସେ ପର୍ଯ୍ୟନ୍ତ ନିଜକୁ "ମୁଁ" ବୋଲି ଡାକିବାକୁ ଶିଖି ନଥିଲା । ସେ ଭାବୁଥିଲା, ସେ ହେଉଛି ତା କୁଳର ଗୋଟାଏ ଅଂଶ ବା ହତିଆର । ପ୍ରତିଟି କୁଳର ନିଜସ୍ୱ ନାମ ବା କୁଳ ଚିହ୍ନ ଥିଲା । ସେସବୁ ଥିଲା ପଶୁଙ୍କ ନାମରେ – କେଉଁ କୁଳର ନାମ "ବାଇସନ୍" ଥିଲା ତ ଆଉ କେଉଁ କୁଳର ନାମ "ଭାଲୁ" । ଆଉ କାହାର "ହରିଣ" ଆଦି । କୁଳର ପ୍ରତିଟି ଲୋକ ପରସ୍ପର ପାଇଁ ଜୀବନ ଦେବାକୁ ପ୍ରସ୍ତୁତ ଥିଲେ । ସେମାନେ ଭାବୁଥିଲେ କୁଳର ପରମ୍ପରା ହେଉଛି ସେମାନଙ୍କ କୁଳ-ପ୍ରତୀକର ଇଚ୍ଛା ଏବଂ କୁଳପ୍ରତୀକର ଇଚ୍ଛା ବା ନିର୍ଦ୍ଦେଶ ହେଉଛି ନିୟମ ।

## ପୂର୍ବପୁରୁଷଙ୍କ ସହିତ ଆଳାପ ।

ଏଥର ପୁଣି ଥରେ ଆମକୁ ପ୍ରାଗୈତିହାସିକ ମଣିଷର ଗୁହାରେ ପ୍ରବେଶ କରିବାକୁ ହେବ । ତା ସହିତ ଆଲୋଚନା କରିବା ତା'ର ବିଶ୍ବାସ ଏବଂ ଆଗ୍ରହ ବ୍ୟବହାର ସଂପର୍କରେ ।

ତାକୁ ଆମେ ପଗ୍ଭରିବା ଏହି ଯେଉଁ ଗୁହା ଚିତ୍ର ଏବଂ ହାଡ଼ରୁ ତିଆରି ସୁନ୍ଦର ଡେଉଁରିଆଗୁଡ଼ିକୁ ସେମାନେ ଆମ ପାଇଁ ରଖି ଯାଇଛନ୍ତି, ସେସବୁ ସଂପର୍କରେ ଆମେ ଯେଉଁ ଅନୁମାନ କରୁଛେ ସେ କ'ଣ ସତ ।

କିନ୍ତୁ ଗୁହାରେ ବାସ କରୁଥିବା ଲୋକମାନେ ଆମ ସହିତ କଥା ବା କେମିତି କହିବେ ?

ହଜାର ହଜାର ବର୍ଷ ଆଗେ ଚୁଲୀରୁ ପାଉଁଶକୁ ପବନ କୁଆଡ଼େ ଉଡ଼ାଇ ନେଇଛି । ଯେଉଁମାନେ ସେ ନିଆଁ ପାଖରେ ବସୁଥିଲେ, ପଥର ଆଉ ହାଡ଼ରେ ସେମାନଙ୍କ ହତିଆର ତିଆରି କରୁଥିଲେ ଏବଂ ପଶୁ ଚର୍ମରେ ସେମାନଙ୍କ ପୋଷାକ ଖିଉଁଥିଲେ, ସେମାନେ ବହୁ ଦିନରୁ ଧୂଳିରେ ମିଶି ଗଲେଣି । କେବେ କେବେ ପ୍ରତ୍ନତାତ୍ତ୍ୱିକମାନେ ମାଟି ତଳୁ ମଣିଷର ଶୁଖିଲା ହଳଦିଆ ଖପୁରି ଦେଖିବାକୁ ପାଇଥାନ୍ତି ।

ମଣିଷର ଖପୁରି କ'ଣ କଥା କହିବ ?

ଆମେ ଗୁହାର ତଳକୁ ଖୋଳି ହତିଆରର ବିଭିନ୍ନ ଅଂଶକୁ ବାହାର କରିଛେ । ସେଥିରୁ ଆମେ ଜାଣି ପାରିଛେ ମଣିଷ କିପରି କାମ କରୁଥିଲା ।

କିନ୍ତୁ ପ୍ରାଗୈତିହାସିକ ମଣିଷର କଥାର ଖଣ୍ଡ ସବୁକୁ କେଉଁଠୁ ପାଇବା ।

ସେସବୁକୁ ଖୋଜିବାକୁ ହେବ ଆମର ଆଧୁନିକ ଭାଷାମାନଙ୍କରେ ।

ଏହି ଖନନ କାର୍ଯ୍ୟ ପାଇଁ ଆମକୁ କୋଦାଳ ବା ଗଇଁତିର ଆବଶ୍ୟକତା ପଡ଼ିବ ନାହିଁ । କାରଣ ଆମେ ମାଟି ଖୋଳିବା ନାହିଁ, ଖୋଳିବା ଅଭିଧାନକୁ । ପ୍ରତ୍ୟେକ ଭାଷା ଏବଂ ପ୍ରତ୍ୟେକ ଭାଷା କୋଷରେ ଅତୀତର ବହୁ ମୂଲ୍ୟବାନ ଜିନିଷ ସଂରକ୍ଷିତ ହୋଇ ରହିଛି । ଏଥିରେ କୌଣସି ଆଶ୍ଚର୍ଯ୍ୟ ହେବାର ନାହିଁ । କାରଣ, ହଜାର ହଜାର ବଂଶଧରମାନଙ୍କର ଅଭିଜ୍ଞତା କ୍ରମଶଃ ଗଡ଼ି ଗଡ଼ି ଆମମାନଙ୍କ ଭାଷାକୁ ଆସିଛି ।

ତୁମେ କହିପାର, ଭାଷା ବିଷୟରେ ଅନୁଧ୍ୟାନ କରିବା ଏବଂ ଆବିଷ୍କାର କରିବାଟା ତ ଖୁବ୍ ସହଜ କଥା । ଟେବୁଲ ପାଖରେ ବସି ଅଭିଧାନର ପୃଷ୍ଠା ଲେଉଟାଇ ଗ୍ଭଲିଲେ ତ ସବୁ କଥା ହୋଇ ଯିବ !

କିନ୍ତୁ ବିଷୟଟା ଏତେ ସହଜ ନୁହେଁ ।

ପୁରାତନ ଶବ୍ଦ କେଉଟି ଆବିଷ୍କାର କରିବା ପାଇଁ ଆବିଷ୍କାରକ ଏବଂ ଗବେଷକମାନଙ୍କୁ କେତେ ଉଚ୍ଚ ପାହାଡ଼ ପର୍ବତ ଚଢ଼ିବାକୁ ପଡ଼େ ଏବଂ ମହାସାଗର ପାର ହେବାକୁ ହୁଏ । କେତେକ ଛୋଟ ଛୋଟ ଜାତି ସୁଉଚ୍ଚ ପର୍ବତମାଳାର ଆର ପାରିରେ ବାସ କରୁଛନ୍ତି । ବାହାର ଜଗତ ସହିତ ସେମାନଙ୍କର ସଂପର୍କ ନାହିଁ ।

ସେମାନଙ୍କ ମଧ୍ୟରେ ଅନେକ ପ୍ରାଚୀନ ଶବ୍ଦ ଏବେ ପ୍ରଚଳିତ, ଯେଉଁଗୁଡ଼ିକୁ ଅନ୍ୟାନ୍ୟ ଭାଷାରେ ଭୁଲି ଗଲେଣି ।

ମଣିଷର ସୁଦୂର ଯାତ୍ରାପଥରେ ପ୍ରତ୍ୟେକଟି ଭାଷା ହେଉଛି ଗୋଟିଏ ଗୋଟିଏ ଶିବିର ଭଳି । ଅଷ୍ଟ୍ରେଲିଆ, ଆଫ୍ରିକା ଏବଂ ଆମେରିକାର ଶିକାରୀ ଜାତିମାନଙ୍କର ଭାଷା ରୂପକ କ୍ୟାମ୍ପକୁ ଅନେକ ଆଗରୁ ଆମେ ଛାଡ଼ି ଆସିଛେ । ତା'ପରେ ଗବେଷକମାନେ ମହାସାଗର ପାର ହୋଇ ପଲିନେସିଆକୁ ଯାଉଛନ୍ତି ସେଠାକାର ପ୍ରାଚୀନ ଶବ୍ଦ ଓ ଅଭିବ୍ୟକ୍ତିକୁ ଜାଣିବା ପାଇଁ ।

ସେସବୁର ସୀମାହୀନ ଅନ୍ୱେଷଣ କାର୍ଯ୍ୟରେ ସେମାନେ ଦକ୍ଷିଣର ସୁଦୂର ମରୁଭୂମି ଏବଂ ଉତ୍ତରର ତୁନ୍ଦ୍ରା ଅଞ୍ଚଳକୁ ଯାଇଥାନ୍ତି ।

ସୋଭିଏତ୍ ୟୁନିଅନ୍‌ର ସୁଦୂର ଉତ୍ତରାଞ୍ଚଳରେ ଚଳନ୍ତି ଭାଷାରେ ଏବେ ବି ଅନେକ ଶବ୍ଦ ଅଛି, ଯେଉଁଥିରୁ ଜଣା ପଡ଼େ ସେସବୁ ବ୍ୟକ୍ତିଗତ ସଂପତ୍ତି ନଥିବା ଯୁଗରୁ ପ୍ରଚଳିତ ହୋଇ ଆସିଛି । ସେତେବେଳେ ଲୋକେ 'ମୋର' ଅର୍ଥ, ଅର୍ଥାତ୍ "ମୋ ଘର", "ମୋ କୁକୁର" କ'ଣ ଜାଣି ନଥିଲେ ।

ପ୍ରାଗୈତିହାସିକ ବାସସ୍ଥାନମାନଙ୍କରେ ବାସଗୃହ ଏବଂ ହତିଆରଗୁଡ଼ିକର ଅବଶେଷାଂଶ ପାଇବା ପାଇଁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଯେପରି ମାଟିକୁ ଖୋଳିଥାନ୍ତି ସେଇ ଭାବେ ଆମକୁ ଏବେକାର ଭାଷାକୁ ଖୋଳିବାକୁ ହେବ ପ୍ରାଚୀନ ଭାଷାର ଅବଶେଷାଂଶକୁ ପାଇବା ପାଇଁ ।

କିନ୍ତୁ ସମସ୍ତେ ଅଭିଧାନ-ପ୍ରତ୍ନତତ୍ତ୍ୱବିତ୍ ହୋଇ ପାରିବେ ନାହିଁ । ସେଥିପାଇଁ ବିଶେଷ ତାଲିମ୍ ଏବଂ ଜ୍ଞାନ ଆବଶ୍ୟକ । ମିଉଜିଅମ୍ ଭଳି ପ୍ରାଚୀନ ଶବ୍ଦ ସବୁକୁ ଦେଖିବା ପାଇଁ ସାଇତି ରଖାଯାଇ ନାହିଁ । ଶହ ଶହ ବର୍ଷ ଧରି ଶବ୍ଦସବୁ ଅନେକ ଥର ବଦଳି ଗଲଣି । ସେସବୁ ଗୋଟିଏ ଭାଷାରୁ ଆଉ ଏକ ଭାଷାକୁ ଯାଇଛନ୍ତି, ସେସବୁ ସହିତ ମିଶି ଯାଇଛନ୍ତି, ସେସବୁର ପ୍ରତ୍ୟୟ ଆଦି ମଧ୍ୟ ବଦଳି ଗଲଣି । ବେଳେ ବେଳେ କେତେକ ଶବ୍ଦର ଶବ୍ଦମୂଳସବୁ ରହିଯାଇଛି ପୁରୁଣା ଦରପୋଡ଼ା ଗଛର ମୂଳ ଭଳି । ଏହିସବୁ ଶବ୍ଦମୂଳ ଦ୍ୱାରା ଆମକୁ ଜାଣିବାକୁ ହେବ ସେସବୁ କେଉଁଠୁ ଆସିଛି ।

ହଜାର ହଜାର ବର୍ଷ ମଧ୍ୟରେ ଶବ୍ଦଗୁଡ଼ିକର ରୂପ କେବଳ ବଦଳି ଯାଇନି, ସେସବୁର ଅର୍ଥ ମଧ୍ୟ ବଦଳି ଯାଇଛି । ଅନେକ ସମୟରେ କେତେକ ଶବ୍ଦରେ କେତେକ ନୂଆ ଅର୍ଥ ଆରୋପିତ ହୋଇଛି, ଯିଏକି ପୂର୍ବର ଅର୍ଥଠାରୁ ସଂପୂର୍ଣ୍ଣ ଅଲଗା ।

ଏବେ ବି ଏହି ପ୍ରକ୍ରିୟାଟି ଚାଲିଛି । ନୂଆ କିଛି ଆବିଷ୍କୃତ ବା ଉଦ୍ଭାବିତ ହେଲେ ଆମେ ସେସବୁ ପାଇଁ ସବୁବେଳେ ନୂଆ ଶବ୍ଦ ବାହାର କରେ ନାହିଁ ।

ପୁରୁଣା ଶବ୍ଦମାନଙ୍କ ମଧ୍ୟରୁ ଗୋଟିକୁ ବାଛି ନୂଆ ପଦାର୍ଥଟି ଉପରେ ଛାପ ମାରିଲା ଭଳି ଆମେ ମାରି ଦିଏଁ ।

ଆମେ ଯେଉଁ ପେନ୍‌ସିଲ୍‌ରେ ଲେଖେଁ, ତାହା ପେନ୍ ବା କଲମ ନୁହେଁ, ଯେଉଁ କାଉଣ୍ଟରରେ ବସେଁ ତାହା କାଉଣ୍ଟ ବା ଗଣନା ନୁହେଁ, ଶୋଭେଲ ବା କୋଦାଳ ବୋଇଲେ ଯାହା ଦ୍ୱାରା ମାଟି ଖୋଳା ହୁଏ । କିନ୍ତୁ, ଷ୍ଟିମ୍ ଶୋଭେଲ ସହିତ ଏହାର କୌଣସି ସଂପର୍କ ନାହିଁ, ଯଦିଓ ଉଭୟ ମଧ୍ୟରେ ସାଦୃଶ୍ୟ ରହିଛି । ସେଇ ଭଳି ନଟ୍‌ରେ ସ୍କ୍ରୁ ଲଗେଇ ଆମେ ବୋଲ୍‌ଟ କରେଁ, କିନ୍ତୁ ନଟ୍‌କୁ ଆମେ ବାଦାମ ବୋଲି ଖାଇ ପାରିବା ନାହିଁ । ଆମେ ଟାଇପ୍‌ରାଇଟର୍‌କୁ ରାଇଟର ବା ଲେଖକ ବୋଲି କହୁଁ । କିନ୍ତୁ ଏହା ଛାପା ଟାଇପ୍ କରେ, ଲେଖେ ନାହିଁ ।

ଏହି ଭାବେ "ପେନ୍" (କଲମ), "କାଉଣ୍ଟ" (ଗଣନା), "ଶୋଭେଲ" (କୋଦାଳ) ଏବଂ "ରାଇଟ୍" (ଲେଖିବା) ଆଦି ଶବ୍ଦର ଅର୍ଥ ବଦଳି ଯାଇଛି ।

ଏସବୁ ପରିବର୍ତ୍ତନ କିନ୍ତୁ ବେଶି ଦିନ ଆଗେ ଘଟି ନାହିଁ । ଏବଂ ଏହା ଘଟିଛି ଭାଷାର ଉପରି ସ୍ତରରେ । ତେଣୁ କରି ଏସବୁର ପୂର୍ବ ଅର୍ଥଗୁଡ଼ିକୁ ଖୋଜି ବାହାର କରିବା ସହଜ ।

କିନ୍ତୁ ଯେତେ ତଳକୁ ଆମେ ଯିବା ସେତେ ଏ କାମଟା କଷ୍ଟକର ହେବ । ଶବ୍ଦମାନଙ୍କର ହଜି ଯାଇଥିବା ପ୍ରାଚୀନ ଅର୍ଥ ବୁଝିବା ପାଇଁ ଭାଷାରେ ବିରାଟ ପାଣ୍ଡିତ୍ୟ ଆବଶ୍ୟକ ।

କେତେକ ଭାଷାରେ "ସିଂହ" ବୋଇଲେ "ବଡ଼ କୁକୁର"କୁ ଏବଂ "ଶିଆଳ" ବୋଇଲେ "ଛୋଟ କୁକୁର"କୁ ବୁଝାଏ । ଏହାର କାରଣ ସିଂହ ଏବଂ ଶିଆଳ ଶବ୍ଦ ଭାଷା ମଧ୍ୟକୁ ଆସିବା ପୂର୍ବରୁ କୁକୁର ଶବ୍ଦଟା ଆସି ଯାଇଥିଲା ।

## ପୁରୁଣା କଥାର ଟୁକୁରା ।

ସୋଭିଏତ୍ ୟୁନିଅନ୍‌ର ବିଖ୍ୟାତ ଭାଷା ବିଜ୍ଞାନୀ ଆକାଡ଼େମିସିଆନ୍ ଆଇ. ମେଷାନିନୋଭ୍ ଲେଖିଛନ୍ତି, ୟୁକାଗିର୍ ନାମକ ଜାତିର ଲୋକଙ୍କ ଭାଷାରେ 'ମାଣ୍ଡିର୍‌କିଲ୍' ("Mandeerkill") ନାମକ ଏକ ଶବ୍ଦ ଅଛି । ଶବ୍ଦଟା ବଡ଼ ଅଡ଼ୁଆ ଏବଂ ଲମ୍ବା ଏବଂ ତା'ର ଅର୍ଥ ବୁଝିବା କଷ୍ଟକର ।

କିଏ କାହାକୁ ମାରେ ? ମଣିଷ ହରିଣକୁ ମାରେ ନା ହରିଣ ମଣିଷକୁ ମାରେ ? ନା, ଉଭୟ ମିଳି ଆଉ କାହାକୁ ମାରନ୍ତି ବା ଅନ୍ୟ କିଏ ଉଭୟଙ୍କୁ ମାରେ ?

କିନ୍ତୁ ୟୁକାଗିର୍‌ଙ୍କ ପକ୍ଷରେ ଏ ଶବ୍ଦଟିର ଅର୍ଥ ବୁଝିବା ଖୁବ୍ ସହଜ । "ମଣିଷ ବଲ୍‌ଗା ହରିଣ ମାରିଛି" କହିଲା ବେଳେ ସେ ଏ ଶବ୍ଦଟିକୁ ବ୍ୟବହାର କରିଥାଏ ।

ଏଭଳି ଏକ ଅଦ୍ଭୁତ ଶବ୍ଦ କିପରି ହେଲା ?

ଏହି ଶବ୍ଦଟି ସୃଷ୍ଟି ହେଲା ବେଳକୁ ମଣିଷ ନିଜକୁ "ମୁଁ" ବୋଲି କହି ଜାଣି ନଥିଲା । ସେ ସେପର୍ଯ୍ୟନ୍ତ ବୁଝି ନଥିଲା ଯେ, ସେ ନିଜେ କାମ କରେ, ଶିକାର କରେ, ହରିଣ ପଛରେ ଧାଏଁ ଏବଂ ତାକୁ ମାରେ । ସେ ବିଶ୍ୱାସ କରୁଥିଲା, ସେ ହରିଣକୁ ମାରିନି, ତା'ର ସମସ୍ତ ଗୋତ୍ର ଲୋକେ, ଏପରିକି ତା'ର ଗୋତ୍ର ଲୋକେ ନୁହେଁ, କୌଣସି ରହସ୍ୟପୂର୍ଣ୍ଣ ଅଜ୍ଞାତ ଶକ୍ତି ମାରିଛି । ସେ ଶକ୍ତିଟି ଏ ଦୁନିଆ ଉପରେ ରାଜତ୍ୱ କରେ । ସେଇ ସୁଦୂର ଅତୀତରେ ମଣିଷ ନିଜକୁ ଜଗତରେ ଅତ୍ୟନ୍ତ ଦୁର୍ବଳ ଅସହାୟ ପ୍ରାଣୀ ବୋଲି ବିଚାର କରୁଥିଲା । କାରଣ ପ୍ରକୃତି ତାକୁ ମାନୁ ନଥିଲା ।

କୌଣସି ଦିନ "ମାନ୍ଧିର୍‌କିଲ୍" ହୁଏତ ଅଜଣା ଶକ୍ତିର ଇଚ୍ଛା କ୍ରମେ ସଫଳ ହୋଇଥିଲା । ପରଦିନ ସଫଳ ନହୋଇ ଖାଲି ହାତରେ ଲୋକେ ଘରକୁ ଫେରିଲେ । ତେଣୁ ବଲ୍‌ଗା ହରିଣ ମାରିବା ଶବ୍ଦଟିରେ କୌଣସି ସ୍ପଷ୍ଟ କର୍ତ୍ତୃବାଚକ ନାହିଁ । ରହିବ ବା କିପରି ? କିଏ ସେ ମାରିଲା, ହରିଣ ନା ମଣିଷ, ତାହା ସେପର୍ଯ୍ୟନ୍ତ ପ୍ରାଗୈତିହାସିକ ମଣିଷ ନିକଟରେ ସ୍ପଷ୍ଟ ନଥିଲା । ଆଗରୁ ତମେ ଜାଣିଛ, ସେ ସେତେବେଳକୁ ବିଶ୍ୱାସ କରୁଥିଲା, ହରିଣଟିକୁ ତା'ର ରକ୍ଷାକର୍ତ୍ତା ଅର୍ଥାତ୍ ହରିଣ ଆଉ ମଣିଷର ସାଧାରଣ ପୂର୍ବପୁରୁଷ ଦେଇଛନ୍ତି ।

ଆମେ ଆମର ଖନନର ଆହୁରି ତଳକୁ ଯଦି ଯାଏ ଏବଂ ମଣିଷ ଭାଷାର ପ୍ରଥମ ସ୍ତରରେ ପହଞ୍ଚେ, ତେବେ ଆମ ଆଖିରେ ସେଇ କାଳର ଭାଷାର କେତେକ ଅବଶେଷାଂଶ ପଡ଼ିବ, ଯେତେବେଳେ ମଣିଷ ନିଜକୁ ରହସ୍ୟମୟ ଶକ୍ତିମାନଙ୍କ ହାତରେ ଏକ ପୁତଳୀ ବୋଲି ବିଚାର କରୁଥିଲା ।

ଚୁକ୍‌ଚିସ୍ ଜାତିର ଗୋଟିଏ ଶବ୍ଦ ଅଛି, ଯା'ର ଅର୍ଥ ହେଉଛି "ମଣିଷ ଜରିଆରେ ତାହା କୁକୁର ମାଂସ ଦିଏ" ।

ଶବ୍ଦଟା ବଡ଼ ଅବୋଧ୍ୟ ମନେ ହୁଏ । ଆମେ ଏହି ଶବ୍ଦଟିକୁ ଏପରି ଏକ ସ୍ତରରୁ ଖୋଳିକି ପାଇଛେ, ଯେଉଁଠି ଏହା ଅନେକ ଦିନ ଆଗେ ପୋତି ହୋଇ ପଡ଼ିଥିଲା । ଲୋକେ ସେତେବେଳେ ଆମ ଭଳି ଚିନ୍ତା କରି ଜାଣି ନଥିଲେ ।

"ମଣିଷ ତା କୁକୁରକୁ କିଛି ମାଂସ ଦେଲା" କହିବା ପରିବର୍ତ୍ତେ ସେମାନେ କହନ୍ତି :

"ମଣିଷ ଜରିଆରେ ତାହା କୁକୁର ମାଂସ ଦିଏ ।"

ମଣିଷ କରିଆରେ କିଏ ତେବେ ମାଂସ ଦେଲା ?

ସେ ହେଉଛି ଏକ ରହସ୍ୟମୟ ଶକ୍ତି, ଯିଏ ମଣିଷକୁ ଯନ୍ତ୍ର ଭଳି ବ୍ୟବହାର କରେ ।

"ମୁଁ ବୁଣେ" କହିବା ପରିବର୍ତ୍ତେ ତାକୋଟା ଲୋହିତ ଭାରତୀୟମାନେ କହନ୍ତି "ମୋ ଦ୍ୱାରା ବୁଣା ହେଉଛି" । ଏହା ଅର୍ଥ ମଣିଷ ନିଜେ ଯେପରି ଛୁଞ୍ଚିରେ ବୁଣୁ ନାହିଁ, ସେ ନିଜେ ହେଉଛି ବୁଣିବା ଛୁଞ୍ଚି ।

ପ୍ରାଚୀନ କଥାର ଅବଶେଷାଂଶର ଢଙ୍ଗଢାଙ୍ଗ ଏବେ ମଧ୍ୟ ସମସ୍ତ ୟୁରୋପୀୟ ଭାଷାରେ ରହି ଯାଇଛି ।

ଫରାସୀ ଭାଷାରେ ଲୋକେ କହନ୍ତି : "ଇଲ୍ ଫେଚ୍ ଫ୍ରଏଦ୍", ଅର୍ଥାତ୍ ଶୀତ ପଡ଼ିଛି । କିନ୍ତୁ ଆକ୍ଷରିକ ଅର୍ଥରେ ଏହାର ମାନେ ହେଉଛି : "ସେ ଶୀତ କରୁଛି" ।

ପୁଣି ଥରେ ସେହି ରହସ୍ୟମୟ 'ସେ', ଯିଏକି ଜଗତକୁ ଚଳଉଛି ।

କେବଳ ବିଦେଶୀ ଭାଷାରେ ନୁହେଁ, ଆମ ରୁଷ୍ ଭାଷାରେ ଏବଂ ରୁଷୀୟ ଚିନ୍ତା ପଦ୍ଧତିରେ ମଧ୍ୟ ପ୍ରାଚୀନ ଭାଷାର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ ।

ଉଦାହରଣ ସ୍ୱରୂପ ଆମେ କୁହେଁ, "ତାକୁ ଖିଲି ଚଡ଼କ ମାରିଲା" ବା "ତାକୁ ବନ୍ଧେଇ ଦିଆଗଲା" । ତେବେ ସେ ଶକ୍ତିଟି କ'ଣ, ଯିଏକି ଚଡ଼କ ମରେଇ ଦିଏ ବା ବନ୍ଧେଇ ଦିଏ ।

ସେଇ ଅଜ୍ଞାତ, ରହସ୍ୟମୟ "ଏହା" ଏବେବି କେତେକ କଥାରେ ପ୍ରକାଶ ପାଏ, ଯଥା, "ଗରମ ହେଉଛି", "ରାତି ହୋଇ ଆସୁଛି", "ବର୍ଷା ହେଉଛି" ।

ଆମେ କୌଣସି ରହସ୍ୟମୟ ଶକ୍ତିରେ ବିଶ୍ୱାସ କରୁନା, କିନ୍ତୁ ଆମ ଭାଷାରେ ଆମ ପ୍ରାଗୈତିହାସିକ ପୂର୍ବପୁରୁଷମାନଙ୍କ ଭାଷାର କେତେକ ଅଂଶ ଏବେବି ରହି ଯାଇଛି । ସେମାନେ ସେଇସବୁ ରହସ୍ୟମୟ ଶକ୍ତିକୁ ବିଶ୍ୱାସ କରୁଥିଲେ ।

ଏହି ଭାବେ, ଭାଷାର ସ୍ତରଗୁଡ଼ିକୁ ଖୋଳି ଖୋଳିକା ଯାଇ କେବଳ ପ୍ରାଗୈତିହାସିକ ମଣିଷର ଶବ୍ଦସବୁ ପାଏଁ ନାହିଁ, ସେମାନଙ୍କ ଚିନ୍ତାରାଜିକୁ ମଧ୍ୟ ପାଇଥାଏଁ । ସେ ମଣିଷ ଏକ ଅଦ୍ଭୁତ ରହସ୍ୟମୟ ଜଗତରେ ବାସ କରୁଥିଲା । ସେ ଜଗତରେ ସେ କେବଳ କାମ କରୁ ନଥିଲା କି ଶିକାର କରୁ ନଥିଲା ; ଆଉ ଜଣେ ତାକୁ ବ୍ୟବହାର କରୁଥିଲା କାମ କରିବାରେ, ହରିଣକୁ ମାରିବାରେ । ସେ ଜଗତରେ ସବୁ କିଛି ଘଟୁଥିଲା କୌଣସି ଏକ ଅଜ୍ଞାତ ଶକ୍ତି ବଳରେ ।

କିନ୍ତୁ ସମୟ ଗଡ଼ି ଗ୍ରଲିବା ସଙ୍ଗେ ସଙ୍ଗେ ମଣିଷ ଶକ୍ତିଶାଳୀ ହେଲା । ଯେତେ ସେ ଶକ୍ତିଶାଳୀ ହେଲା ସେତେ ସେ ଜଗତକୁ, ନିଜକୁ ଏବଂ ଜଗତରେ ତା ସ୍ଥାନ

ସଂପର୍କକୁ ବୁଝିଲ । କ୍ରମଶଃ ତା ଭାଷାରେ ଦେଖା ଦେଲ, 'ମୁଁ' ଶବ୍ଦଟି ଏବଂ ଏଥି ସାଥେ ସାଥେ ଏକ ବ୍ୟକ୍ତିର ଆବିର୍ଭାବ ଘଟିଲ, ଯିଏ କାର୍ଯ୍ୟ କରେ, ସଂଗ୍ରାମ କରେ, ଜିନିଷ ତିଆରି କରେ ଏବଂ ନିଜର ଇଚ୍ଛାକୁ ପୂରଣ କରେ ।

ଆମେ ଏବେ କହୁଁନା : "ମାମୀର୍ କିଲ୍" ବୋଲି, ଆମେ କହୁଁ, "ମଣିଷ ହରିଣ ମାରିଛି" । ତଥାପି ବର୍ତ୍ତମାନ ମଧ୍ୟ ଦେଲ ଅତୀତର ଛାୟା ଭାଷାରେ ଦେଖା ଦିଏ । ଆମେ ଏବେ ବି କହୁଁ, "ଏହା ହେବାର ନୁହେଁ", "ଏହା ହେବା କଥା", "ଏହା ଦୁର୍ଭାଗ୍ୟ" ।

କାହା ଦ୍ୱାରା ହେବାର ନୁହେଁ ? କିଏ ଦୁର୍ଭାଗ୍ୟ ଘଟାଏ ?

ଭାଗ୍ୟ, ନା !

ଭାଗ୍ୟ ମଧ୍ୟ ସେଇ ଏକା ଅଜଣା ଶକ୍ତି, ଯାହାକୁ ପ୍ରାଗୈତିହାସିକ ମଣିଷ ଏତେ ଭୟ କରୁଥିଲ ।

"ଭାଗ୍ୟ" କଥାଟା ଏବେବି ଆମ ଭାଷାରେ ରହିଛି । କିନ୍ତୁ ଭବିଷ୍ୟତରେ ଏହା ଅଚଳ ହୋଇ ଯିବ ବୋଲି ନିଶ୍ଚିତ ଭାବେ କୁହା ଯାଇ ପାରେ ।

କାରଣ ଏଠି ଚାଷୀ ଆତ୍ମବିଶ୍ୱାସ ନେଇ ଚାଷ କରେ । ସେ ଜାଣେ ଚାଷ ଭଲ ହେବ କି ଖରାପ ହେବ, ସେ କଥା ତା ନିଜ ଉପରେ ନିର୍ଭର କରେ ।

ତାକୁ ସାହାଯ୍ୟ କରନ୍ତି ବହୁ ଖମାର ମେସିନ୍ ଏବଂ ସାର । ସେସବୁ ସାହାଯ୍ୟରେ ସେ ନିଷ୍ଫଳ ଜମିକୁ ଉର୍ବର ଜମିରେ ପରିଣତ କରେ । ବିଜ୍ଞାନ ତାକୁ ସାହାଯ୍ୟ କରେ ଉଦ୍‌ଭିଦ୍‌ମାନଙ୍କ ଜୀବନକୁ ପରିଚାଳିତ କରିବାରେ ।

ଜାହାଜ ଚାଳକମାନେ ଆତ୍ମବିଶ୍ୱାସର ସହିତ ସମୁଦ୍ରରେ ଯାତ୍ରା କରନ୍ତି । ଅଗଭୀର ଜାଗା କେଉଁଠି ପଡ଼ିବ, ଏବଂ ଝଡ଼ର ପୂର୍ବାଭାଷକୁ ସେ ବିଶେଷ ଯନ୍ତ୍ର ସାହାଯ୍ୟରେ ଜାଣି ପାରେ ।

"ଏହା ତା'ର କପାଳ ଲିଖନ", "ଏହା ପୂର୍ବରୁ ନିର୍ଦ୍ଧାରିତ" ଆଦି କଥାଗୁଡ଼ିକ ଏବେ କମ୍ ଶୁଣାଯାଏ ।

ଅଜ୍ଞତାରୁ ଜାତ ହୁଏ ଭୟ । ଜ୍ଞାନ ହିଁ ଆତ୍ମବିଶ୍ୱାସ ସୃଷ୍ଟି କରେ, ଏହା ମଣିଷକୁ ପ୍ରକୃତିର ଦାସ ନକରି ତା'ର ପ୍ରଭୁରେ ପରିଣତ କରେ ।

# ଅଷ୍ଟମ ଅଧ୍ୟାୟ

---

## ହିମବାହଗୁଡ଼ିକର ଅନ୍ତର୍ଦ୍ଧାନ ।

ଯେଉଁ ଦେଶମାନଙ୍କରେ ବରଫ ପଡ଼େ, ସେଠି ବରଫ ତରଳିବା ଭଳି ଏକ ବିଚିତ୍ର ଦୃଶ୍ୟ ଦେଖିବାକୁ ମିଳେ । ଯେଉଁ ଆଡ଼କୁ ଚାହିଁବ ସିଆଡ଼େ ଦେଖିବ ପ୍ରକୃତିର ରୂପ ବଦଳି ଯାଉଛି । ବରଫ ତରଳିବା ସଙ୍ଗେ ଦୁର୍ବାର ଗତିରେ ଝରଣା ଛୁଟେ, ଚାରିଆଡ଼େ ନାଳ ଆଉ ଜଳପ୍ରପାତ ସୃଷ୍ଟି ହୋଇଯାଏ - ଜଙ୍ଗଲ, କ୍ଷେତ, ଗାଁର ରାସ୍ତା ଏବଂ ରାସ୍ତା ପାଖ ଖାଲମାନଙ୍କରେ ।

ସେସବୁ ପିଠା ଭଳି ବସି ଯାଇଥିବା ଅସନା ବରଫ ତଳୁ ଅଥୟ ହୋଇ ଛୁଟନ୍ତି, ଯେମିତି ପିଲମାନେ ଘରେ ନରହି ବାହାରକୁ ଦୌଡ଼ି ପଳାଇ ଯାଆନ୍ତି । ଝରଣାସବୁ ପଥର, ରାସ୍ତା ଘାଟ ଡେଇଁ ଛୁଟନ୍ତି, ପବନରେ ସେମାନଙ୍କର କୁଳୁକୁଳୁ ଶବ୍ଦରେ ମୁଖରିତ ହୋଇ ଉଠେ ।

ବରଫସବୁ ସୂର୍ଯ୍ୟାଲୋକଭରା ଉଠାଣି ଆଉ ଖୋଲା ପ୍ରାନ୍ତରରୁ ଫେରି ଆସେ ସଂକୀର୍ଣ୍ଣ ପାହାଡ଼ ତଳକୁ, ଖାଲୁଆ ନାଳ ଆଉ ଖାତକୁ, ପାଚିରୀ ପଛରେ ଥିବା ଛାୟା ଘେରା ଜାଗାକୁ । ସେସବୁ ଜାଗାରେ ଏହା କିଛି ଦିନ ପାଇଁ ନିଜକୁ ମେ ମାସର ଉତପ୍ତ ସୂର୍ଯ୍ୟାଲୋକରୁ ଲୁଚାଇ ପାରିବ ।

ମନେ ହୁଏ ପ୍ରକୃତି ଯେମିତି ରାତାରାତି ବଦଳି ଯାଉଛି । ମାତ୍ର କେଇ ଦିନ ମଧ୍ୟରେ ଫୁଲୁଲା ପାହାଡ଼ ସବୁ ସୂର୍ଯ୍ୟ କିରଣରେ ସବୁଜ ପାଲଟି ଯାଏ, ଥୁଣ୍ଟା ଗଛମାନଙ୍କରେ ପତ୍ରସବୁ କଅଁଳି ଉଠେ ।

ଶୀତ ଋତୁରେ କମ୍ବଳ ଭଳି ଜମିଥିବା ବରଫ ତରଳିବା କ୍ଷଣି ପ୍ରତ୍ୟେକ ବର୍ଷ ବସନ୍ତ ଋତୁରେ ଏଭଳି ଘଟିଥାଏ ।

କିନ୍ତୁ ପ୍ରାଗୈତିହାସିକ ଯୁଗରେ ପୃଥିବୀକୁ ଏକ ଟୋପି ଭଳି ଢାଙ୍କି ରଖିଥିବା ବରଫର ବିଶାଳ ସେଇ କମ୍ବଳଟା ଯେତେବେଳେ ଶେଷକୁ ତରଳିବାକୁ ଲାଗିଲା ସେତେବେଳେ କ'ଣ ଘଟିଥିଲା ?

ସେତେବେଳେ ଝରଣା ଆଉ ନାଳସବୁ ବହିବାକୁ ଲାଗିଲା ନାହିଁ, ବିଶାଳ ବିଶାଳ ଅକାତ ନଈସବୁ ବରଫର ତଳେ ତଳେ ବହିବାକୁ ଲାଗିଲେ । ସେସବୁ ମଧ୍ୟରୁ ଅନେକ ଛୋଟ ଝରଣା ଏବଂ ନଦୀ ଦ୍ୱାରା ପୁଷ୍ଟ ହୋଇ ସମୁଦ୍ରରେ ଯାଇ ମିଶିଗଲେ ।

ପ୍ରକୃତି ସେତେବେଳେ ଯେମିତି ଗଭୀର ନିଦ୍ରାରୁ ଜାଗି ଉଠିଥିଲା । ମହା ବସନ୍ତର ସମାଗମରେ ଉତ୍ତରାଞ୍ଚଳର ଫୁଙ୍ଗୁଳା ସମତଳ ଅଞ୍ଚଳରେ ହସିଉଠିଲା ବିଶାଳ ଜଙ୍ଗଲସବୁ ।

କିନ୍ତୁ ଏ ବସନ୍ତର ଆଗମନ ହଠାତ୍ ହୋଇ ନଥିଲା । ବେଳେ ବେଳେ ମେ ମାସରେ, ଉଷ୍ମ ସୂର୍ଯ୍ୟାଲୋକଭରା ଏକ ଦିନ ପରେ ହଠାତ୍ ଶୀତଳ ପବନ ବହିଲା ଏବଂ ତା ପରଦିନ ସକାଳେ ତମେ ବିଛଣାରୁ ଉଠି ଦେଖିଲ ତମ ଛାତ ଉପରେ ବରଫସବୁ ଜମି ଯାଇଛି । ଚାରିଆଡ଼େ ସବୁ ସଫେଦ, ମନେ ହେଲା ବସନ୍ତ ମୋଟେ ଆସିନି । ସେହି ପ୍ରାଗୈତିହାସିକ ମହା ବସନ୍ତ ପକ୍ଷରେ, ଶୀତକୁ ଜୟ କରିବାଟା ଦିନକରେ ସମ୍ଭବ ହୋଇ ନଥିଲା । ହିମବାହସବୁ ଧୀରେ ଧୀରେ କମିବାକୁ ଲାଗିଲେ, ମତେ ଯେମିତି ସେମାନଙ୍କ ଇଚ୍ଛାର ବିରୁଦ୍ଧରେ କେହି ପଛକୁ ଠେଲି ଦେଉଥିଲା ।

ଦୂରେଇ ଯାଉଁ ଯାଉଁ କେତେକ ଜାଗାରେ ସେସବୁ ଶହ ଶହ ବର୍ଷ ପର୍ଯ୍ୟନ୍ତ ବି ରହି ଯାଇଥିଲା । ଆଉ କେତେବେଳେ, ପଛକୁ ଟିକିଏ ହଟିଯାଇ ହିମବାହସବୁ ଅଟକି ଯାଉଥିଲେ ଏବଂ ଶକ୍ତି ସଞ୍ଚୟ କରି ପୁଣି ଆଗକୁ ଆଗଉଥିଲେ । ଫଳରେ ସେମାନଙ୍କ ସହିତ ତୁନ୍ଦ୍ରା ଦକ୍ଷିଣକୁ ଘୁଞ୍ଚୁଥିଲା ଏବଂ ସାଙ୍ଗରେ ତା'ର ଘେନି ଆସୁଥିଲା ତା'ର ଚିରସାଥୀ ବଲ୍‌ଗା ହରିଣକୁ ।

ସମତଳ ଭୂଇଁରେ ଘାସର ବିଛାଣି ଉପରେ ମାଡ଼ି ବସିଲା ଶିଉଳିସବୁ । ବାଇସନ୍ ଏବଂ ଘୋଡ଼ାମାନେ ଘାସ ପାଇଁ ଆହୁରି ଦକ୍ଷିଣାଞ୍ଚଳର ତୃଣଭୂଇଁକୁ ମାଡ଼ି ଆସିଲେ ।

ଉଷ୍ଣତା ଏବଂ ଶୀତ ମଧ୍ୟରେ ଏ ସଂଗ୍ରାମ ଅନେକ କାଳ ପର୍ଯ୍ୟନ୍ତ ଚାଲିଲା, ଶେଷରେ ଜୟ ଲାଭ କଲା ଉଷ୍ଣତା ।

ତରଳୁଥିବା ହିମବାହଗୁଡ଼ିକ ତଳୁ ବିଶାଳ ନଦୀସବୁ ଫୁଟି ବାହାରିଲେ । ପୃଥିବୀ ଉପରେ ଢାଙ୍କି ହୋଇ ରହିଥିବା ତୁଷାର ଧବଳ ଟୋପି କ୍ଷୟ ହେବାକୁ ଲାଗିଲା ଏବଂ ବରଫର ସୀମାରେଖାଟା କ୍ରମଶଃ ଉତ୍ତରକୁ ଘୁଞ୍ଚି ଘୁଞ୍ଚି ଗଲା । ତା ସଙ୍ଗେ ସଙ୍ଗେ ଉତ୍ତରକୁ ମାଡ଼ି ମାଡ଼ିକା ଗଲା ତୁନ୍ଦ୍ରା । ଯେଉଁସବୁ ଅଞ୍ଚଳରେ ଏକଦା ଶିଉଳି, ଛୋଟ ଛୋଟ ମୋଡ଼ି ମୋଡ଼ିକିଆ ପାଇନ୍ ଗଛ ଗହଳି କରିଥିଲେ, ସେଠି ଦେଖା ଦେଲା ବିଶାଳ ବିଶାଳ ପାଇନ୍ ଗଛର ବିରାଟ ଜଙ୍ଗଲ । ସେସବୁ ପାଇନ୍ ଗଛ ମଧ୍ୟରୁ ଗୋଟି ଗୋଟିକର ଗଣ୍ଡିର ପରିଧି ପାଞ୍ଚ ଫୁଟରୁ ଅଧିକ ।

କ୍ରମଶଃ ଉଷ୍ଣତା ବଢ଼ି ବଢ଼ି ଚାଲିଲା ।

ପାଇନ୍ ଗଛର ସେଇସବୁ ଅନ୍ଧାରୁଆ ସବୁଜ ଜଙ୍ଗଲ ଫାଙ୍କରେ ଉଜ୍ଜ୍ୱଳ ସବୁଜ ଆସ୍ପ ଏବଂ ବାର୍ଚ୍ଚ ଗଛସବୁ ମୁଣ୍ଡଟେକି ଉଠିଲେ ।

ସେସବୁ ସାଙ୍ଗକୁ ଉତ୍ତରାଞ୍ଚଳକୁ ମାଡ଼ି ଗ୍ଲଲିଲେ ବଡ଼ ବଡ଼ ଚଟକା ପତ୍ରଭରା ଓକ୍ ଏବଂ ଲିଣ୍ଡେନ୍ ଗଛର ବିରାଟ ବାହିନୀ ରୂପେ ।

'ପାଇନ୍ ଯୁଗ' ପରିବର୍ତ୍ତେ "ଓକ୍ ଯୁଗ" ଆରମ୍ଭ ହୋଇଗଲା । ଗୋଟିଏ ଜଙ୍ଗଲ ପ୍ରାସାଦ ଜାଗାରେ ଆଉ ଏକ ଜଙ୍ଗଲ ପ୍ରାସାଦ ଠିଆ ହେଲା ।

କିନ୍ତୁ ପ୍ରତିଟି ଜଙ୍ଗଲ ପ୍ରାସାଦରେ ଅଲଗା ଅଲଗା ବାସିନ୍ଦା ବାସ କରନ୍ତି ।

ପତ୍ର ଗହଳିଆ ଜଙ୍ଗଲସବୁ ଉତ୍ତରକୁ ମାଡ଼ି ଗ୍ଲଲିବା ସଙ୍ଗେ ସଙ୍ଗେ ସେମାନଙ୍କ ସହିତ ମାଡ଼ି ଗ୍ଲଲିଲେ ଛୋଟ ଛୋଟ ଗଛର ବୁଦା, ଛତୁ, ବେରି କୋଳି ଆଦିର ଗଛସବୁ । ସେମାନଙ୍କ ସାଙ୍ଗରେ ଗଲେ ଏହିସବୁ ଜଙ୍ଗଲର ଫଳ ଖାଇ ବଞ୍ଚୁଥିବା ପ୍ରାଣୀମାନେ । ସେସବୁ ପ୍ରାଣୀମାନଙ୍କ ମଧ୍ୟରେ ଥିଲେ ବଣୁଆ ଘୁଷୁରି, ଏଲକ୍‌ହରିଣ, ବାଇସନ୍ ଏବଂ ଲାଲ ହରିଣ, ଯେଉଁମାନଙ୍କର ମୁନିଆ ଶିଙ୍ଗ ଥିଲା । ଧୂସର ଭାଲୁମାନଙ୍କର ଦାନ୍ତ ଟିକେ ମିଠାପ୍ରିୟ, ସେମାନେ ବଣର ମହୁ ଖୋଜି ଖୋଜି ବୁଦ୍‌ବୁଦିକିଆ ଜଙ୍ଗଲ ଭିତରେ ବୁଲିଲେ । ହେଟାମାନେ ପଡ଼ିଥିବା ପତ୍ର ଉପରେ ଠେକୁଆମାନଙ୍କ ପଛେ ପଛେ ଧାଇଁଲେ । ଗୋଲମୁହାଁ ଛୋଟ ଗୋଡ଼ିଆ ବିଲରମାନେ ଜଙ୍ଗଲ ଝରଣା ଉପରେ ବନ୍ଧ ତିଆରି କଲେ । ଅନେକ ସଂଖ୍ୟକ ବିଚିତ୍ର ପକ୍ଷୀମାନଙ୍କ କଳରବରେ ଜଙ୍ଗଲ ଉଚ୍ଛୁଳି ପଡ଼ିଲା ଏବଂ ଜଙ୍ଗଲର ହ୍ରଦମାନଙ୍କରେ ହଂସମାନଙ୍କର କଳରବ ଶୁଣାଗଲା ।

## ତୁଷାର ମଧ୍ୟରେ ବନ୍ଦୀ ।

ପ୍ରକୃତିରେ ଗ୍ଲରିଆଡ଼େ ଏହିସବୁ ବିରାଟ ପରିବର୍ତ୍ତନ ଘଟିଲା ବେଳେ ମଣିଷ କେବଳ ଦର୍ଶକ ହୋଇ ବସି ପାରି ନଥିଲା । ଥିଏଟରର ଦୃଶ୍ୟ ପରିବର୍ତ୍ତନ ଭଳି ତା'ର ଚତୁର୍ପାର୍ଶ୍ୱରେ ସବୁ କିଛି ବଦଳି ଗ୍ଲଲିଥାଏ । କିନ୍ତୁ ନାଟକରେ ଗୋଟିଏ ଗୋଟିଏ ଦୃଶ୍ୟ ବଦଳିବାକୁ ବେଶି ସମୟ ଲାଗେ ନାହିଁ, କିନ୍ତୁ ପ୍ରକୃତିର ପ୍ରତିଟି ଦୃଶ୍ୟ ପରିବର୍ତ୍ତନ ପାଇଁ ଲାଗୁଥିଲା ହଜାର ହଜାର ବର୍ଷ । ଏବଂ ଏ ଦୃଶ୍ୟର ରଙ୍ଗମଞ୍ଚ ଥିଲା ଲକ୍ଷ ଲକ୍ଷ ବର୍ଗ ମାଇଲ ବ୍ୟାପି ।

ଏହି ବିଶ୍ୱବ୍ୟାପୀ ଦୃଶ୍ୟପଟରେ ମଣିଷ ଦର୍ଶକ ରୂପେ ବସି ନଥିଲା, ସେ ଥିଲା ଜଣେ ଅଭିନେତା ।

ପ୍ରତିଥର ଦୃଶ୍ୟପଟ ବଦଳିବା ସଙ୍ଗେ ସଙ୍ଗେ ମଣିଷ ନିଜକୁ ବଞ୍ଚାଇବା ପାଇଁ ତା'ର ଜୀବନ ଧାରାକୁ ବଦଳଉଥିଲା ।

ତୁନ୍ଦ୍ରା ଦକ୍ଷିଣକୁ ମାଡ଼ି ମାଡ଼ି ଆସିଲା ବେଳେ ସାଙ୍ଗରେ ତା'ର ଘେନି ଆସିଲା ବଲ୍‌ଗା

ହରିଣମାନଙ୍କୁ । ସେମାନେ ଯେମିତି ତା ସହିତ ଶିକୁଳିରେ ବନ୍ଧା ହୋଇଥିବା ଯୁଦ୍ଧ ବନ୍ଦୀ । ସେ ଶିକୁଳିର ଗୋଟିଏ ପାଖରେ ଏହି ବଲ୍‌ଗା ହରିଣମାନେ ବନ୍ଧା ହୋଇଥିଲେ ଏବଂ ଅନ୍ୟ ପାଖଟିରେ ତୁନ୍ଦ୍ରାର ଶିଉଳିଘାସ ବନ୍ଧା ହୋଇ ଆସିଥିଲେ ।

ବଲ୍‌ଗା ହରିଣମାନେ ଶିଉଳିଘାସ ଖାଇ ଖାଇ ତୁନ୍ଦ୍ରା ଆଡ଼କୁ ଘୁଞ୍ଚି ଆସିଥିଲେ ଏବଂ ମଣିଷ ସେମାନଙ୍କ ଅନ୍ୱେଷଣରେ ସେମାନଙ୍କ ପିଛା ଧରି ଚାଲିଥିଲା ।

ଷ୍ଟେପ୍‌ର ତୃଣଭୂଇଁରେ ମଣିଷ ଶିକାର କରୁଥିଲା ଘୋଡ଼ା ଆଉ ବାଇସନ୍‌କୁ । କିନ୍ତୁ ତୁନ୍ଦ୍ରା ଅଞ୍ଚଳରେ ତାକୁ ଶିକାର କରିବାକୁ ପଡ଼ିଲା ବଲ୍‌ଗା ହରିଣ ।

ବଲ୍‌ଗା ହରିଣ ଛଡ଼ା ତୁନ୍ଦ୍ରା ଅଞ୍ଚଳରେ ସେ ଆଉ କ'ଣ ବା ଶିକାର କରିଥାନ୍ତା ?

ମାମଥ୍‌ମାନେ ତ ମରି ହଜି ଗଲେ । ପ୍ରାଗୈତିହାସିକ ମଣିଷ ତ ସେମାନଙ୍କୁ ହଜାର ହଜାର ସଂଖ୍ୟାରେ ହତ୍ୟା କରି ସେମାନଙ୍କ ବାସସ୍ଥାନ ନିକଟରେ ପାହାଡ଼-ପ୍ରମାଣ ମାମଥ୍ ହାଡ଼ସବୁ ଜମା କରି ଦେଇ ଥିଲା । ଖାଦ୍ୟ ପାଇଁ ଘୋଡ଼ାମାନଙ୍କର ବିରାଟ ବିରାଟ ପଲକୁ ଖତମ କରି ଦେଇଥିଲା । ଯେଉଁମାନେ ବଞ୍ଚିଥିଲେ ସେମାନେ ସୁଦୂର ଦକ୍ଷିଣକୁ ଫେରି ଆସିଲେ, ଯେତେବେଳେ ସେ ଅଞ୍ଚଳରେ ଓଦା ଘାସ ଜାଗାରେ ଶୁଖିଲା ଘାସସବୁ ଦେଖା ଦେଲା ।

ତେଣୁ କରି ତୁନ୍ଦ୍ରା ଅଞ୍ଚଳରେ ବଲ୍‌ଗା ହରିଣ ହେଲା ଏକମାତ୍ର ଖାଦ୍ୟଦାତା । ସେ ତା'ର ମାଂସକୁ ଭକ୍ଷଣ କଲା, ଚମଡ଼ାରେ ପୋଷାକ କରି ପିନ୍ଧିଲା ଏବଂ ଶିଙ୍ଗରେ ବର୍ଚ୍ଛା ଆଦି ହତିଆର ତିଆରି କଲା । ଏଇଥିପାଇଁ ତା'ର ସମସ୍ତ ଜୀବନ ଧାରାଟାକୁ ସେ ଖାପଖୁଆଇ ନେଇଥିଲା ବଲ୍‌ଗା ହରିଣ ସହିତ ।

ବଲ୍‌ଗା ହରିଣ ପଲସବୁ ଯୁଆଡ଼କୁ ଛୁଟିଲେ ମଣିଷ ସେମାନଙ୍କ ପଛେ ପଛେ ଛୁଟିଲା । ଗୋଷ୍ଠୀଟା ଯାକ କେଉଁଠି ଡେରା ପାତିଲେ ସ୍ତ୍ରୀଲୋକମାନେ ତମ୍ବୁ ବାନ୍ଧିବା ଏବଂ ସେସବୁ ଉପରେ ଚମଡ଼ା ଢାଙ୍କିବା କାମରେ ଲାଗି ଯାଉଥିଲେ । ସେମାନେ କେଉଁଠି ବେଶି ଦିନ ରହି ପାରିବେ ନାହିଁ ବୋଲି ଜାଣିଥିଲେ । ମେଘ ଖଣ୍ଡ ଭଳି ମଣ୍ଡା ଡାଆଁଶର ପଲସବୁ ପଶୁପଲକୁ ବାଧ୍ୟ କରୁଥିଲେ ନୂଆ ତୃଣଭୂମି ଆଡ଼କୁ ପଳେଇ ଯିବାକୁ ଏବଂ ଲୋକେ ମଧ୍ୟ ବାଧ୍ୟ ହେଉଥିଲେ ତମ୍ବୁ ଉଠେଇ ସେମାନଙ୍କ ପଛେ ପଛେ ଚାଲିବାକୁ । ସ୍ତ୍ରୀଲୋକମାନେ ତମ୍ବୁକୁ ଖୋଲି ପିଠି ଉପରେ ଧରି ଚାଲୁଥିଲେ । ତୁନ୍ଦ୍ରା ଉପରେ ସେମାନେ ଧଇଁସଇଁ ହୋଇ ଯାଉଥିଲା ବେଳେ ପୁରୁଷମାନେ କେବଳ ବର୍ଚ୍ଛା ବା ତେଣ୍ଟା ଧରି ଛାତି ଫୁଲେଇ କି ଯାଉଥିଲେ । ଘର କରଣା ବିଷୟରେ ପୁରୁଷମାନେ ଚିନ୍ତା କରୁ ନଥିଲେ ।

କିନ୍ତୁ ତୁନ୍ଦ୍ରା ପୁଣି ଉତ୍ତରାଞ୍ଚଳକୁ ଘୁଞ୍ଚିବାକୁ ଲାଗିଲା ଏବଂ ତା ସହିତ ବଲ୍‌ଗା ହରିଣମାନେ ବି ଚାଲିଲେ । ତୁନ୍ଦ୍ରା ଯେଉଁଠି ଥିଲା ସେଠାରେ ବିଶାଳ ବିଶାଳ ଅଭେଦ୍ୟ

ଜଙ୍ଗଲସବୁ ମୁଣ୍ଡ ଟେକି ଉଠିଲ । ଏହା ଫଳରେ ପ୍ରାଗୈତିହାସିକ ମଣିଷର କ'ଣ ହେଲ ?

କେତେକ ଶିକାରୀ ଉପଜାତି ବଲ୍‌ଗା ହରିଣ ପଲ ପଛେ ପଛେ ମେରୁ ପ୍ରଦେଶକୁ ଗ୍ଭଲିଗଲେ । ସେମାନଙ୍କ ପକ୍ଷରେ ଏଟା ଥିଲ ସହଜ ଉପାୟ, କାରଣ ଦୀର୍ଘ ଦିନ ଧରି ଉତ୍ତରାଞ୍ଚଳର ଜଳବାୟୁରେ ଚଳାଚଳ ହେବାର ଅଭ୍ୟାସ ସେମାନଙ୍କର ଥିଲ । ତୁଷାର ଯୁଗର କଠୋର ଜଳବାୟୁର ରାଜତ୍ୱ ଗ୍ଭଲିଥିଲ ଲକ୍ଷ ଲକ୍ଷ ବର୍ଷ ଧରି । ଏହି ଲକ୍ଷ ଲକ୍ଷ ବର୍ଷ ମଧ୍ୟରେ ପ୍ରାଗୈତିହାସିକ ମଣିଷ ଶିକ୍ଷା କରିଥିଲ ଶୀତ ସହିତ ଲଢ଼ିବାକୁ, ପଶୁମାନଙ୍କର ଉଷ୍ମ ଚମଡ଼ାରୁ ପୋଷାକ ତିଆରି କରିବାକୁ । ବାହାରେ ଯେତେ ବେଶି ଥଣ୍ଡା ହେଉଥିଲ ଘର ଭିତରେ ଚୁଲୀର ନିଆଁ ସେତେ ଜୋରରେ ଜଳୁଥିଲ ।

ପଛରେ ପଡ଼ି ରହିବା ଅପେକ୍ଷା ମେରୁ ଅଞ୍ଚଳକୁ ଗ୍ଭଲି ଯିବାଟା ଥିଲ ସହଜ, କିନ୍ତୁ ଅଳ୍ପ ଅସୁବିଧା ଥିବା ରାସ୍ତାଟା ସବୁବେଳେ ସବୁଠୁଁ ଭଲ ରାସ୍ତା ନୁହଁ । ଯେଉଁମାନେ ଉତ୍ତରକୁ ତୁନ୍ଦ୍ରା ସହିତ ଗ୍ଭଲି ଯାଇଥିଲେ ସେମାନେ ଶେଷ ପର୍ଯ୍ୟନ୍ତ ଠକାମିରେ ପଡ଼ିଲେ । ସେ ଅଞ୍ଚଳରେ ତୁଷାର ଯୁଗର ସ୍ଥାୟିତ୍ୱ ଲକ୍ଷ ଲକ୍ଷ ବର୍ଷ ଆହୁରି ବଢ଼ି ଗଲ । ଗ୍ରୀନ୍‌ଲଣ୍ଡର ଏସ୍କିମୋମାନେ ଏବେ ମଧ୍ୟ ତୁଷାର ଯୁଗରେ ବାସ କରୁଛନ୍ତି । କଠୋର ଦୁର୍ଦ୍ଦାନ୍ତ ପ୍ରକୃତି ସହିତ ସେମାନଙ୍କର ଅବିରାମ ସଂଗ୍ରାମ ଏବେ ବି ଗ୍ଭଲିଛି ।

ଯେଉଁସବୁ ଉପଜାତି ପଛରେ ରହିଯାଇଥିଲେ ସେମାନଙ୍କ ଜୀବନ ଭିନ୍ନ ରୂପ ଧାରଣ କରି ଥିଲ । ପ୍ରଥମେ ସେମାନଙ୍କ ଜୀବନ ବୃଦ୍ଧିପାଉଥିବା ଜଙ୍ଗଲ ମଧ୍ୟରେ ଥିଲ ଖୁବ୍ କଷ୍ଟକର । କିନ୍ତୁ ଅବଶେଷରେ ସେମାନେ ନିଜକୁ ତୁଷାର ପିଞ୍ଜରା ମଧ୍ୟରୁ ମୁକ୍ତ କରି ପାରିଥିଲେ, ଯେଉଁ ପିଞ୍ଜରା ମଧ୍ୟରେ ସେମାନଙ୍କ ପୂର୍ବପୁରୁଷମାନେ ଥିଲେ ଲକ୍ଷ ଲକ୍ଷ ବର୍ଷ ଧରି ବନ୍ଦୀ ।

## ଜଙ୍ଗଲ ବିରୁଦ୍ଧରେ ମଣିଷର ଲଢ଼େଇ ।

ସେ କାଳର ତୁନ୍ଦ୍ରାରେ ଯେଉଁ ଜଙ୍ଗଲ ଦେଖା ଦେଇଥିଲ ସେସବୁ ଏ ଯୁଗର ଜଙ୍ଗଲ ଭଳି ନୁହେଁ । ସେ ଗହନବନ ଥିଲ ବିଶାଳ ବିଶାଳ ବୃକ୍ଷ ଆଉ ବୁଦାର ଅଭେଦ୍ୟ ପ୍ରାଚୀର ଭଳି । ହଜାର ହଜାର ମାଇଲ ଧରି ନଦୀ ଏବଂ ହ୍ରଦ କୂଳେ ଏବଂ କେତେକ ସ୍ଥାନରେ ସମୁଦ୍ର କୂଳ ପର୍ଯ୍ୟନ୍ତ ଏହା ମାଡ଼ି ଆସିଥିଲ ।

ଏହା ଅଜ୍ଞାତ ନୂଆ ଦୁନିଆଟାରେ ପ୍ରାଗୈତିହାସିକ ମଣିଷର ଜୀବନ ସହଜ ନଥିଲା ।

ଗହନ ଜଙ୍ଗଲ ତା'ର ଲୋମଶ ଥାବାରେ କଣ୍ଠ ରୁଦ୍ଧ କରି ନିଶ୍ୱାସ ପ୍ରଶ୍ୱାସ ନେବାକୁ ଦେଉ ନାହିଁ । ତେଣୁ ତାକୁ ଅହରହ ଜଙ୍ଗଲ ସହିତ ଲଢ଼େଇ କରିବାକୁ ପଡ଼ିଲା, ପଛକୁ କାଟି ସଫା କରିବାକୁ ପଡ଼ିଲା ।

ତୁନ୍ଦ୍ରା କିମ୍ବା ଷ୍ଟେପ୍‌ର ତୃଣଭୂମିରେ ପ୍ରାଗୈତିହାସିକ ମଣିଷକୁ ବସବାସ କରିବା ପାଇଁ ଭଲ ଜାଗା ଖଣ୍ଡେ ଖୋଜି ପାଇବାରେ ଅସୁବିଧା ନଥିଲା । ଘୁରିଆଡ଼େ ଫାଙ୍କା ଜାଗା ସବୁ ରହିଥିଲା । କିନ୍ତୁ ଜଙ୍ଗଲ ମଧ୍ୟରେ ପ୍ରକୃତି ହାତରୁ ଫାଙ୍କା ଜାଗା ଖଣ୍ଡେ ଜବରଦସ୍ତ ଛଡ଼େଇ ନେବାକୁ ପଡ଼ିଲା ।

ସେଠାରେ ପ୍ରତ୍ୟେକ ଇଞ୍ଚ ଜାଗା ଗଛ ବୁଛ ଏବଂ ନିଘଞ୍ଚ ବୁଦାରେ ଆବୃତ । ତେଣୁ ତା ପକ୍ଷରେ ଜଙ୍ଗଲକୁ ଏକ ଶତ୍ରୁର ଦୁର୍ଗ ପରି ଆକ୍ରମଣ କରିବାକୁ ପଡ଼ୁଥିଲା ।

କିନ୍ତୁ ବିନା ଅସ୍ତ୍ରରେ ସେ ଲଢ଼େଇ କରିବ କେମିତି ?

ଗଛ କାଟିବାକୁ ହେଲେ ତା'ର ଦରକାର ପଡ଼ିଲା କୁରାଢ଼ି ।

ତେଣୁ ସେ ତା'ର ସେଇ ପଥର ତିଆରି ଓଜନିଆ ତିନିକଣିଆ ହତିଆରରେ ଲମ୍ବା କାଠ ଖଣ୍ଡେ ଲଗେଇ କୁରାଢ଼ି ତିଆରି କଲା ।

ଏଥର ଜଙ୍ଗଲରେ ଶୁଣାଗଲା ନୂଆ ଏକ ଅସ୍ତ୍ରର ଆବାଜ । କେବଳ କାଠହଣା ଚଢ଼େଇ ସେଠି ଆଗରୁ ଗଛମାନଙ୍କୁ ଆକ୍ରମଣ କରୁଥିଲା । ଏହି ନୂତନ ଅସ୍ତ୍ରର ଆବାଜରେ ପଶୁପକ୍ଷୀମାନେ ଭୟଭୀତ ହୋଇ ଉଠିଲେ । ସେ ଆବାଜ ଥିଲା ପ୍ରଥମ କରି କୁରାଢ଼ିରେ ପ୍ରଥମ ଗଛକୁ ହାଣିବାର ଶବ୍ଦ ।

ଧାରୁଆ ପଥର ଅସ୍ତ୍ରଟି ଗଛର ଦେହରେ ଗଳି ଯାଉଥିଲା ଗହୀରକୁ । କ୍ଷତ ଜାଗାରୁ ବହଳ ରସ ଝରି ଆସିଥିଲା । କଟାଳୀର ପାଦ ତଳେ ପଡ଼ିଯିବା ପୂର୍ବରୁ ଗଛଟା ଗିଁ ଗିଁ ହୋଇ ମଡ଼ ମଡ଼ ଚିତ୍କାର କରି ଉଠିଥିଲା ।

ଦିନ ପରେ ଦିନ ଲୋକେ ବଡ଼ ଅଧ୍ୟବସାୟ ଏବଂ ଧୈର୍ଯ୍ୟର ସହିତ କୁରାଢ଼ିରେ ଜଙ୍ଗଲ କାଟି ନିଜେ ରହିବା ପାଇଁ ଜାଗା ମଳାଏ ଲେଖାଏଁ ବାହାର କଲେ ।

ସଫା ହୋଇଗଲା ପରେ ଗଛର ମୂଳ ଏବଂ ବୁଦାଗୁଡ଼ିକୁ ନିଆଁ ଲଗାଇ ଜାଳି ଦେଲେ ।

ଏହି ଭାବେ ସେମାନେ ଜଙ୍ଗଲ ବିରୁଦ୍ଧରେ ଲଢ଼େଇ କରି ଜୟଯୁକ୍ତ ହେଲେ । କିନ୍ତୁ ସେ ପରାଜିତ ଶତ୍ରୁକୁ ସେମାନେ ପୂରା ଛାଡ଼ି ଦେଲେ ନାହିଁ ।

ଗଛର ଡାଳଗୁଡ଼ିକୁ କାଟି ଦେଇ ପରେ ସେମାନେ ଗଛର ଗୋଟାଏ ଅଗକୁ ମୁନିଆ କରି ପଥର ହାତୁଡ଼ିରେ ବାଡ଼େଇ ମାଟିରେ ପୋତି ଦେଲେ । ତା'ପରେ ଆଉ ଗୋଟିଏ ଖୁଣ୍ଟ ତା ପାଖକୁ ଏବଂ ଆଉ ଦୁଇଟା ସାମନାକୁ ପୋତିଲେ । ଏହି ଗୁରି ଖୁଣ୍ଟ ମଝିରେ ସେମାନେ ଡାଳପତ୍ର ଛନି କାଛ କରି ପକାଇଲେ । ତା'ପରେ ଜଙ୍ଗଲ ମଧ୍ୟରେ କାଠଗରରେ ତିଆରି ଏକ ଘର ଗଢ଼ି ଉଠିଲ ଏବଂ ବିଶାଳ ଜଙ୍ଗଲ ଭିତରେ ଏକ ଛୋଟ ଜଙ୍ଗଲ ଭଳି ଦିଶିଲ । ସେ ଛୋଟ ଜଙ୍ଗଲଟିର ପାଚିରୀଗୁଡ଼ିକ ଗଛର ଗଣ୍ଡି ସହିତ ଡାଳପତ୍ରକୁ ଛନି ତିଆରି ହୋଇଛି । କିନ୍ତୁ ଗଛର ସେ ଗଣ୍ଡିସବୁ ସେଠାରେ ନିଜେ ମୂଣ୍ଡ ଟେକି ଉଠି ନାହାନ୍ତି । ମଣିଷ ସେଗୁଡ଼ିକ ମାଟିରେ ଦୃଢ଼ ଭାବେ ପୋତି ଛିଡ଼ା କରାଇଛି ।

ପ୍ରାଗୈତିହାସିକ ମଣିଷ ପକ୍ଷରେ ଜଙ୍ଗଲରେ ଘର ଖଣ୍ଡେ କରିବା ଯେତିକି କଷ୍ଟକର ଥିଲ, ତା ଅପେକ୍ଷା ସେଠି ଖାଇବା ଯୋଗାଡ଼ କରିବାଟା ଆହୁରି କଷ୍ଟକର ହୋଇ ଉଠିଲ ।

ଆଗେ ଉନ୍ମୁକ୍ତ ସମତଳ ଭୂଇଁରେ ଦଳଦଳ ହୋଇ ବାସ କରୁଥିବା ପଶୁମାନଙ୍କୁ ଶିକାର କରୁଥିଲ । ଛୋଟ ପାହାଡ଼ ମୁଣ୍ଡିଆ ଉପରେ ଛିଡ଼ା ହୋଇ ଆଖି ପକାଇଲେ ସେ ଏକାବେଳକେ ମାଇଲ ମାଇଲ ଦୂରକୁ ଦେଖି ପାରୁଥିଲ । ଫଳରେ ପଶୁ ପଲ କେଉଁଠି ଚରୁଥିଲେ ସେ ଜାଣି ପାରୁଥିଲ ।

କିନ୍ତୁ ଜଙ୍ଗଲରେ ସେ କଥା ହେଲ ନାହିଁ । ଜଙ୍ଗଲ ପ୍ରାସାଦରେ ବାସିନ୍ଦାଙ୍କ ସଂଖ୍ୟା କମ୍ ନଥିଲେ ମଧ୍ୟ ସେମାନେ ଦେଖା ପଡ଼ୁ ନଥିଲେ । ସେମାନଙ୍କ କିଚିରି ମିଚିରି, ଖଡ଼ଖାଡ଼ ଶବ୍ଦରେ ଜଙ୍ଗଲର ସମସ୍ତ ମହଲ କଂପି ଉଠୁଥିଲେ ବି ସେମାନଙ୍କୁ ଧରିବା ଥିଲ କଷ୍ଟକର ।

କିଏ ଗୋଟାଏ ଗୋଡ଼ ତଳେ ଖଡ଼ ଖଡ଼ କରି ଉଠିଲ ତ ଆଉ ଗୋଟାଏ ମୁଣ୍ଡ ଉପରେ ଉଡ଼ି ଗଲ । ଡାଳପତ୍ରଗୁଡ଼ାକ ହଲି ଉଠୁଥିଲେ ।

ପ୍ରାଗୈତିହାସିକ ମଣିଷ ପକ୍ଷରେ ସେସବୁ ପଶୁପକ୍ଷୀଙ୍କର ଖଡ଼ ଖଡ଼ ଶବ୍ଦ ଏବଂ ଦେହର ବାସନାକୁ ବାରି କେଉଁ ଗଛର ଗଣ୍ଡିରେ ଶିକାର ବସିଛି ଜାଣିବା ମୁସ୍କିଲ ହୋଇ ପଡ଼ିଲ ।

ପ୍ରତ୍ୟେକଟି ଜଙ୍ଗଲୀ ପକ୍ଷୀ ଏବଂ ପଶୁଙ୍କର ଥାଏ ସେମାନଙ୍କୁ ରକ୍ଷା କଲ ଭଳି ରଙ୍ଗ । ପକ୍ଷୀମାନଙ୍କର ଦେହର ରଙ୍ଗ ଦାଗ ପଡ଼ିଥିବା ଗଛର ଗଣ୍ଡି ଭଳି, ଦର ଅନ୍ଧାରୁଆ ଜଙ୍ଗଲରେ ପଶୁମାନଙ୍କର ବାଦାମୀ ଲୋମ ସବୁ ଦିଶେ ଶୁଖିଲ ପତ୍ର ଭଳି ।

ଫଳରେ ପଶୁପକ୍ଷୀଙ୍କୁ ମାରିବା କଷ୍ଟକର ହୋଇ ପଡ଼ିଲ । ଶିକାରଟାଏ ପାଖକୁ ଆସିଗଲ କ୍ଷଣି ତାକୁ ଆଖି ପଛୁଡ଼ାକେ ନମାରିଲେ ସେ କୁଆଡ଼େ ଉଭାନ ହୋଇ

ଯାଏ । ଦ୍ୱିତୀୟ ଥର ତାକୁ ମାରି ହୁଏ ନାହିଁ । ଜଙ୍ଗଲ ମଧ୍ୟରେ ସେ ଲୁଚି ଯାଏ । ତେଣୁ ଶିକାରୀ ପକ୍ଷରେ ଆବଶ୍ୟକ ନିର୍ଭୁଲ ଲକ୍ଷ୍ୟଭେଦ ।

ଏଥି ପାଇଁ ପ୍ରାଗୈତିହାସିକ ଶିକାରୀକୁ ତା'ର ବଲମ ବା ବର୍ଚ୍ଛା ବଦଳରେ ଖୁବ୍ ଦ୍ରୁତଗାମୀ, ନିର୍ଭୁଲ ଭାବେ ଲକ୍ଷ୍ୟଭେଦୀ ଏକ ଅସ୍ତ୍ର ତିଆରି କରିବାକୁ ପଡ଼ିଥିଲା । ସେ ହେଲା ତୀର । ତୀରଭର୍ତ୍ତି ତୂଣ କାନ୍ଧରେ ଝୁଲା ଏବଂ ହାତରେ ଧନୁ ଧରି ସେ ବାହାରିଲା ଜଙ୍ଗଲକୁ । ଜଙ୍ଗଲର ଘୁଷୁରି ଏବଂ ଜଳାଭୂଇଁର ହଂସ ବତକ ଆଦି ସେ ଶିକାର କଲା ।

## ମଣିଷର ଘରିଗୋଡ଼ିଆ ସାଥୀ ।

ପ୍ରତ୍ୟେକ ଶିକାରୀର ଥିଲା ଏକ ବିଶ୍ୱସ୍ତ ସାଥୀ । ସେ ସାଥୀଟିର ଥିଲା ଘରୋଟି ଥାବା, ଦୁଇଟି ଲମ୍ବ ତୀକ୍ଷ୍ଣ କାନ ଏବଂ ଏକ କଳା ଅନୁସନ୍ଧିତ୍ସୁ ନାକ ।

ଶିକାର ବେଳେ ଏହି ଘରି ଗୋଡ଼ିଆ ସାଥୀଟି ତାକୁ ସାହାଯ୍ୟ କରୁଥିଲା ଶିକାର ଠଉରେଇବାରେ । ଖାଇଲା ବେଳେ ସେ ତା ମୁନିବ ପାଖରେ ବସି ତା'ର ଆଖିକୁ ଗ୍ରହିଁ ରହୁଥିଲା । ସେ ଯେମିତି କହିବାକୁ ଗ୍ରହୁଁଥିଲା : "ମୋ ଭାଗଟା କାହିଁ ?"

ହଜାର ହଜାର ବର୍ଷ ଧରି ଏହି ଘରି ଗୋଡ଼ିଆ ବନ୍ଧୁଟି ମଣିଷକୁ ଅନୁରକ୍ତ ଭାବେ ସେବା କରି ଆସିଛି । କାରଣ ସେହି ସୁଦୂର ଅତୀତରେ ମଣିଷ ଧନୁ ଶର ଧରି ଶିକାର କଲା ବେଳେ କୁକୁରକୁ ତାଲିମ ଦେଇଥିଲା ।

ସୋଭିଏତ୍ ପ୍ରତ୍ନତତ୍ତ୍ୱବିତ୍‌ମାନେ ୟେନିସ୍‌ର ଆଫୋଣ୍ଟୋଭା ପର୍ବତର ଏକ ସ୍ଥାନ ଖନନ କରି ପ୍ରାଗୈତିହାସିକ ଶିକାରୀମାନଙ୍କର ଶିକାର ଛଳୀରେ ଏକ କୁକୁରର କଙ୍କାଳ ପାଇଥିଲେ । କଙ୍କାଳଟା ଏକ ହେଟାବାଘର କଙ୍କାଳ ଭଳି, କେବଳ ମୁହଁ ଥୋମଣିଟା ଅନେକ ଛୋଟ ।

ପ୍ରାଗୈତିହାସିକ ମଣିଷର କୁକୁର ସମ୍ଭବତଃ ତା'ର ବାସ ଛଳୀକୁ ଜଗୁଥିଲା ଏବଂ ଶିକାରରେ ତାକୁ ସାହାଯ୍ୟ କରୁଥିଲା । ଜଙ୍ଗଲର ସେଇସବୁ ଆଦିମ ବାସସ୍ଥାନଗୁଡ଼ିକରେ ଥିବା ଅଳିଆ ଗଦାମାନଙ୍କରୁ ବିଜ୍ଞାନୀମାନେ ଯେଉଁସବୁ ପଶୁ ହାଡ଼ ବାହାର କରିଛନ୍ତି ସେସବୁରେ କୁକୁର ଦାନ୍ତର ଦାଗ ଲାଗିଥିବାର ଜଣାଯାଏ । ତେଣୁ ସେତେବେଳେ ମଧ୍ୟ ଖାଇଲା ବେଳେ କୁକୁର ତା ପାଖରେ ବସି ହାଡ଼ ଖଣ୍ଡେ ପାଇଁ ଭିକ୍ଷା କରୁଥିଲା ।

ବିନା କାରଣରେ କୌଣସି ଲୋକ କୁକୁରକୁ ଖୁଆଇ ପିଆଇ ପୋଷିବ ନାହିଁ ।

ପିଲ୍ ଡେଲ୍ଟ ମଣିଷ ତାକୁ ପୋଷି ଚାଲିମ୍ ଦେଉଥିଲା ଜଙ୍ଗଲରେ କିପରି ଶିକାରକୁ ଠଉରେଇବାକୁ ହୁଏ ।

ଏହି ସାହାଯ୍ୟକାରୀଟିକୁ ବାଛିବାରେ ମଣିଷ ଭୁଲ କରି ନଥିଲା । ମଣିଷ ଶିକାରର ଟେର୍ ପାଇବା ଆଗରୁ କୁକୁର ତାକୁ ଠଉରେଇ ନାକରେ ତା'ର ଗନ୍ଧକୁ ବାରି ନିଏ ।

ବୃଦାସବୁ କେମିତି ବାସେ, ତା ମଧ୍ୟଦେଇ କିଏ ସଙ୍ଗେ ସଙ୍ଗେ ଚାଲିଗଲା – ଏସବୁକୁ ସେ ଥରେ ଦୁଇଥର ନାକରେ ସୁଁ ସୁଁ କରି ଜାଣି ନିଏ । କୁକୁର ଅବଶ୍ୟ କିଛି ଶୁଣୁ ନଥିଲା କି ଦେଖି ପାରୁ ନଥିଲା, ତା'ର ମୁଖ୍ୟ କାମଟି ଥିଲା ଶିକାରକୁ ଠଉରେଇବା ଏବଂ ଚୁପ୍‌ଚାପ୍ ଦ୍ରୁତ ଗତିରେ ଜଙ୍ଗଲ ମଧ୍ୟରେ ଦୌଡ଼ିବା । ତା'ପରେ ତା ମୁନିବ ତାକୁ କେବଳ ଅନୁସରଣ କରି ଚାଲିଥିଲା ।

କୁକୁରକୁ ପୋଷ ମନେଇ ନେଲା ପରେ ମଣିଷର ଶକ୍ତି ଆହୁରି ବଢ଼ିଗଲା । ମଣିଷର ନାକଠାରୁ କୁକୁର ନାକର ଘ୍ରାଣ ଶକ୍ତି ଅନେକ ବେଶି ଏବଂ ସେ ନାକକୁ ମଣିଷ ତା ସେବାରେ ଲଗାଇଲା ।

ସେ ଅବଶ୍ୟ, କେବଳ ତା ନାକକୁ କାମରେ ଲଗାଇଲା ନାହିଁ । ତା'ର ଚାରି ଗୋଡ଼କୁ ମଧ୍ୟ ତା ସେବାରେ ବ୍ୟବହାର କଲା । ଘୋଡ଼ାକୁ ଗାଡ଼ିରେ ଜୋଟି ଚଳେଇବା ପୂର୍ବରୁ ସେ କୁକୁରକୁ ବ୍ୟବହାର କରିଥିଲା ତା'ର ଜିନିଷପତ୍ର ଆଉ ପରିବାର ବର୍ଗଙ୍କୁ ଟାଣିବାରେ ।

ସାଇବେରିଆର ଏକ ପ୍ରାଗୈତିହାସିକ ବସତିରେ କୁକୁରର ହାଡ଼ ଗୋଡ଼ ସାଙ୍ଗକୁ ତା'ର ସାଞ୍ଜ ମିଳିଛି ।

ତା ଅର୍ଥ କୁକୁରମାନେ ମଣିଷକୁ କେବଳ ଶିକାରରେ ସାହାଯ୍ୟ କରୁ ନଥିଲେ, ତାକୁ ଟାଣିଟାଣି ନେଉଥିଲେ ।

ଏହି ଭାବେ ଆମେ ମଣିଷର ସର୍ବଶ୍ରେଷ୍ଠ ବନ୍ଧୁ କୁକୁର ସଂପର୍କରେ ଜାଣିବାକୁ ପାଇଲେ ।

ଏହି ବୁଦ୍ଧିମାନ ଜୀବଟି ପାର୍ବତ୍ୟ ଅଞ୍ଚଳରେ ଭ୍ରମଣକାରୀମାନଙ୍କୁ କିପରି ରକ୍ଷା କରିଛି, ଯୁଦ୍ଧ କ୍ଷେତ୍ରରୁ କ୍ଷତ ବିକ୍ଷତ ସୈନିକମାନଙ୍କୁ କିପରି ବହି ନେଇଛି, ଘର ଏବଂ ଦେଶର ସୀମାନ୍ତକୁ ଜଗିଛି – ସେ ସଂପର୍କରେ ଅସଂଖ୍ୟ ସତ୍ୟ ଘଟଣାକୁ ନେଇ କେତେ ଯେ ଗଳ୍ପ ଲେଖା ନହୋଇଛି ! କୁକୁରମାନେ ହେଉଛନ୍ତି ଘରେ, ଶିକାର, ଯୁଦ୍ଧ କ୍ଷେତ୍ର ଏବଂ ଗବେଷଣାଗାରରେ ଆମର ବିଶ୍ୱସ୍ତ ସେବକ ।

ବିଜ୍ଞାନର ସ୍ୱାର୍ଥ ତଥା ମାନବଜାତିର କଲ୍ୟାଣ ପାଇଁ ମଣିଷ ଯେତେବେଳେ ଅପରେସନ୍ ଟେବୁଲ ଉପରେ ଏକ କୁକୁରକୁ ନେଇ ଶୁଆଇ ଦିଅନ୍ତି, ସେ ତାକୁ

ବିଶ୍ୱାସପୂର୍ଣ୍ଣ ଆଖିରେ ଚାହିଁ ରହେ । ମନେ ହୁଏ ସେ ଯେମିତି ତା ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ଅଛି ।

ଲେନିନ୍‌ଗ୍ରାଦ୍ ନିକଟବର୍ତ୍ତୀ ପାଭ୍‌ଲଭ୍ ସହରରେ ଏକ ଗବେଷଣା ପ୍ରାସାଦ ଅଛି । ସେଠାରେ ବିଜ୍ଞାନୀମାନେ ମସ୍ତିଷ୍କର କ୍ରିୟାକଳାପ ସଂପର୍କରେ ଗବେଷଣା କରନ୍ତି । ଏହି ଗବେଷଣା ପ୍ରାସାଦ ଆଗରେ ଏକ ସ୍ମୃତିସ୍ତମ୍ଭ ରହିଛି ।

ଏହି ସ୍ମୃତିସ୍ତମ୍ଭଟି ନିର୍ମିତ ହୋଇଥିଲା ଆମର ଏକ ଚାରି ଗୋଡ଼ିଆ ସାଥୀର ସମ୍ମାନାର୍ଥେ ।

## ନଦୀ ସହିତ ମଣିଷର ଲଢ଼େଇ ।

ପ୍ରାଗୈତିହାସିକ ମଣିଷଙ୍କ ମଧ୍ୟରୁ ସମସ୍ତେ ଜଙ୍ଗଲରେ ବାସ କଲେ ନାହିଁ । ସେମାନଙ୍କ ମଧ୍ୟରୁ କେତେକ ନିଘଞ୍ଚ ଜଙ୍ଗଲ ଛାଡ଼ି ନଦୀ ଏବଂ ହ୍ରଦ ତୀରରେ ଯାଇ ବସବାସ କଲେ ।

ଜଙ୍ଗଲ ଏବଂ ନଦୀ ମଝିରେ ଥିବା ସରୁ ଜମିରେ ସେମାନେ ବସତି ସ୍ଥାପନ କଲେ ।

ଜଙ୍ଗଲ ଅପେକ୍ଷା ନଦୀ କୂଳରେ ଜାଗା ଅନେକ । କିନ୍ତୁ ସେଠାରେ ମଧ୍ୟ କମ୍ ବ୍ୟତିବ୍ୟସ୍ତ ହେବାକୁ ପଡ଼ିଲା ନାହିଁ ।

ତା'ର ଏହି ଦୁର୍ଦ୍ଦାନ୍ତ ପ୍ରତିବେଶୀ ହଠାତ୍ ବସନ୍ତ କାଳରେ କୂଳକୁ ଅତିକ୍ରମ ମଣିଷର କୁଡ଼ିଆକୁ ଭସାଇ ନେଉଥିଲା । ବରଫ ଖଣ୍ଡ ସବୁ ଭାସୁଥିଲା ଏବଂ ଗଛର ଗଣ୍ଡିଗୁଡ଼ିକ ପାଣିରେ ବୁଡ଼ି ଯାଉଥିଲା । ବନ୍ୟାରୁ ରକ୍ଷା ପାଇବା ପାଇଁ ଲୋକେ ଘର ଦ୍ୱାର ଛାଡ଼ି ଗଛରେ ଚଢ଼ି ଆତ୍ମରକ୍ଷା କରୁଥିଲେ । କ୍ଷୋଭାନ୍ୱିତ ନଦୀ ଶାନ୍ତ ହେଲା ପର୍ଯ୍ୟନ୍ତ ସେ ଆଶ୍ରୟ ନେଉଥିଲା ସେଇଠି ଏବଂ ପାଣି ଛାଡ଼ି ଗଲା ପରେ ତଳକୁ ଓହ୍ଲାଇ ପୁଣି ନଦୀ କୂଳରେ ଭଙ୍ଗା କୁଡ଼ିଆ ନୂଆ କରି ତିଆରି କରୁଥିଲା ।

ପ୍ରଥମେ ବନ୍ୟା ଆସି ଆତର୍କିତ ଭାବେ ସେମାନଙ୍କୁ ଆକ୍ରମଣ କରୁଥିଲା, କିନ୍ତୁ କ୍ରମେ ମଣିଷ ନଦୀର କାରସାଦି ବୁଝି ପାରିଲା ।

ସେ ବଡ଼ ବଡ଼ ଗଛକୁ କାଟି ସେସବୁର ଗଣ୍ଡିକୁ ଏକାଠି ବାନ୍ଧି ତିଆରି କଲା ଭେଳା । ସେ ଭେଳାକୁ ସେ ନଦୀ କୂଳରେ ପାତି ଦେଲା ଏବଂ ତା ଉପରେ କାଠର ଆଉ ଏକ ସ୍ତର ବିଛେଇଲା । ଏହି ଭାବେ ସ୍ତର ସ୍ତର କରି ବିଛେଇ ସେ ତିଆରି କଲା ଉଚ୍ଚ ଏକ ମଞ୍ଚା । ସେଇ ମଞ୍ଚା ଉପରେ ସେମାନେ ବସାସବୁ ବାନ୍ଧିଲେ ।

ଏଥର ବନ୍ୟାର ଭୟ ଆଉ ରହିଲା ନାହିଁ । ଦୁର୍ଦ୍ଦାନ୍ତ ନଦୀର ପାଣି ଯେତେ ଉପରକୁ ଉଠିଲେ ମଧ୍ୟ ସେମାନଙ୍କ ଦୁଆର ଛୁଇଁ ପାରିଲା ନାହିଁ ।

ମଣିଷ ପକ୍ଷରେ ଏଟା ଥିଲା ଏକ ବିରାଟ ବିଜୟ । କାରଣ ନଦୀର ନାଚ ତାଁରକୁ ଇଚ୍ଛା କରିବା କ'ଣ ସହଜ କଥା ! ଆଜି ଆମେ ନଦୀକୁ ଆୟତ୍ତ କରିବା ପାଇଁ ଯେଉଁ ବନ୍ଧ ବାଡ଼ ତିଆରି କରୁଛେ ସେମାନଙ୍କର ଏହି କାଠଗଡ଼ ମଞ୍ଚା ଥିଲା ଏସବୁର ଶୁଭାରମ୍ଭ ।

ପ୍ରାଗୈତିହାସିକ ମଣିଷକୁ ନଦୀ ସହିତ ଅନେକ ସଂଗ୍ରାମ କରିବାକୁ ପଡ଼ିଥିଲା । କିନ୍ତୁ ନଦୀ କୂଳରେ କାହିଁକି ସେ ବାସ କରିବାକୁ ଗ୍ରହିଁଲା ?

ନଦୀ କୂଳର ଦିନ ସାରା ମାଛ ଅପେକ୍ଷାରେ ଜଗିଥିବା କେଉଟମାନଙ୍କୁ ପଗ୍ଭରି ଏହି ପ୍ରଶ୍ନର ଜବାବ ମିଳି ଯିବ ।

ପ୍ରାଗୈତିହାସିକ ମଣିଷ ପାଇଁ ସବୁଠାରୁ ବଡ଼ ଆକର୍ଷଣ ଥିଲା ନଦୀର ମାଛ ।

କିନ୍ତୁ ଶିକାରୀ ପୁଣି କେମିତି କେଉଟ ପାଲଟି ଗଲା ? ପ୍ରଥମତଃ ମାଛ ମାରିବା ପାଇଁ ଦରକାର ପଡ଼ିଥିବା ଏମିତିସବୁ ଅସ୍ତ୍ର ଯାହା ଶିକାରରେ ଦରକାର ପଡ଼େନା । ତା'ଛଡ଼ା ମାଛ ଧରା ଧରି କାଇଦା କାନୁନ୍ ସବୁ ଅଲଗା ।

ଘଟଣାବଳୀ ଆଗଭ ଆଗଭ ଯେଉଁଠି ବନ୍ଦ ହୋଇ ଯାଏ ଆମେ ସେଇଠି ଚେଷ୍ଟା କରେ ହରେଇ ଥିବା ଖିଅଟାକୁ ଖୋଜିବାକୁ ।

ଶିକାରୀ ରାତାରାତି ଜାଲୁଆ ହୋଇ ଯାଇ ନଥିଲା । ପ୍ରଥମେ ଜାଲରେ ମାଛ ଧରିବା ପୂର୍ବରୁ ସେ ମାଛ ଶିକାର କରିଥିଲା ।

ତାହାହିଁ ପ୍ରକୃତରେ ଘଟିଥିଲା । ପ୍ରଥମ ମାଛ ମାରିବା ଅସ୍ତ୍ରଟି ଥିଲା ମାଛମରା ବର୍ଚ୍ଛା । ସେଟା ଦେଖିବାକୁ ଶିକାର-ବର୍ଚ୍ଛା ଭଳି ।

ପ୍ରାଗୈତିହାସିକ ମଣିଷ ଅଣ୍ଟା ପର୍ଯ୍ୟନ୍ତ ପାଣି ଭିତରକୁ ପଶି ପଥର ଫାଙ୍କରେ ଲୁଚି ଥିବା ମାଛକୁ ବର୍ଚ୍ଛାରେ ମାରିଲା । ଏହା ଛଡ଼ା ସେ ଚେଷ୍ଟା କଲା ଅନ୍ୟ ଉପାୟରେ ମାଛ ଧରିବାକୁ । ସେତେବେଳକୁ ସେ ଜାଲରେ ଚଢ଼େଇ ଧରିବା ବିଦ୍ୟା ଶିଖି ଯାଇଥିଲା । ଏଥର ସେ ଚେଷ୍ଟା କଲା ସେ ଜାଲକୁ ମାଛ ଧରା କାମରେ ଲଗାଇବାକୁ । ଲୋକେ ନଦୀରେ ଜାଲ ପକାଇ ମାଛ ମାରିଲେ ।

ପ୍ରତ୍ନତତ୍ତ୍ୱବିଦ୍‌ମାନେ ମାଟି ତଳୁ ମାଛମରା ବର୍ଚ୍ଛା, ଠେଙ୍ଗା ଏବଂ ମାଛମରା ଜାଲରେ ଲଗିଥିବା ପଥର ଏବଂ ହାଡ଼ରେ ତିଆରି ବନଶୀ କଣ୍ଟାସବୁ ଉଦ୍ଧାର କରିଛନ୍ତି ।

# ଶିକାରୀ-ଧୀବରର ଘର ।

ଏସ୍. ତଲଷ୍ଟୋଭ୍ ନାମକ ଜଣେ ସୋଭିଏତ୍ ପ୍ରତ୍ନତତ୍ତ୍ୱବିତ୍ ଏବଂ ତାଙ୍କର ସହକର୍ମୀଗଣ ଆମୁ-ଦର୍‌ୟା ନଦୀ ଏବଂ ଆରାଲ ସାଗର ନିକଟବର୍ତ୍ତୀ କ୍‌ଜିଲ-କୁମ ମରୁଭୂମିର ବାଲୁକା ମଧ୍ୟରୁ ପ୍ରାଗୈତିହାସିକ ଶିକାରୀ-ଧୀବରମାନଙ୍କର ଏକ ବସତି ଆବିଷ୍କାର କରିଥିଲେ ।

ବାଲିପାହାଡ଼ ନିକଟରେ ବାଲି ଆଉ କାଦୁଅର ଆସ୍ତରଣ ତଳେ ସେମାନେ ଦେଖିବାକୁ ପାଇଲେ ସୁନ୍ଦର ପଥର ହତିଆର, ମାଟି ପାତ୍ରର ଟୁକୁରା ଏବଂ ଅଳିଆ ଗଦାସବୁ । ଏହିସବୁ ଅଳିଆ ଗଦାରେ ବଣ ଘୁଷୁରି, ହରିଣ ପ୍ରଭୃତିର ହାଡ଼ସବୁ ବାହାରିଲା । କିନ୍ତୁ ଅଧିକାଂଶ ଅଳିଆ ଉପରେ ଥିଲା ପାଇକ୍ ଏବଂ ଶିଟ୍ ମାଛର କଣ୍ଟା । ଏଥିରୁ ଜଣାଯାଏ ସେମାନଙ୍କ ଖାଦ୍ୟ ସାମଗ୍ରୀ ମଧ୍ୟରେ ମାଛ ଥିଲା ମୁଖ୍ୟ ।

ଗୋଟାଏ ପୋଡ଼ା ଘରର ଚିହ୍ନ ମଧ୍ୟ ସେଠାକାର ମାଟି ତଳୁ ମିଳିଛି । ଗାଡ଼ଗୁଡ଼ିକ ମଧ୍ୟରେ ପାଉଁଶ, କାଠ, ଦରପୋଡ଼ା ନଳ ଗଛର ଟୁକୁରା ଏବଂ କେନ୍ଦ୍ରରେ ଥିବା ଚୁଲୀରେ ମିଳିଥିବା ଦରପୋଡ଼ା କୋଇଲାର ରେଖାସବୁ ଦେଖିବାକୁ ମିଳେ । ଘରର କେନ୍ଦ୍ର ସ୍ଥଳୀରେ ଉଜ୍ଜ୍ୱଳ ରଙ୍ଗର ଘନ ପୋଡ଼ା ବାଲି ଉପରେ ଏକ ପରିଷ୍କାର ଧଳା ପାଉଁଶର ବହଳ ସ୍ତର ।

କେନ୍ଦ୍ର ସ୍ଥଳରେ ଥିବା ଚୁଲୀର ଚାରି ପାଖରେ ଆହୁରି କେତେକ ଚୁଲୀ ରହିଛି । ସେସବୁଥିରେ ରହିଛି କଳା, ମଇଳିଆ ପାଉଁଶ ଏବଂ ରୋଷେଇ ଘରର ଅଳିଆ ।

ବାସ ସ୍ଥଳୀଟିରୁ ଏସବୁ ମିଳିଛି । ତା'ପରେ ବୈଜ୍ଞାନିକମାନଙ୍କର କାମ ହେଲା ପ୍ରଧାନ ବାସଗୃହ ସେସବୁର ସାଜସଜ୍ଜାକୁ ପୁନର୍ସ୍ଥାପିତ କରିବା ଏବଂ ମିଳିଥିବା ଅଳ୍ପ କେତେକ ପୋଡ଼ା ଜିନିଷକୁ ଭିତ୍ତି କରି ସେସବୁରେ ରହୁଥିବା ଅଧିବାସୀମାନଙ୍କ ଜୀବନର ବର୍ଣ୍ଣନା କରିବା ।

ଯେଉଁମାନେ ପ୍ରତ୍ନତତ୍ତ୍ୱ ସଂପର୍କରେ ବେଶି କିଛି ଜାଣନ୍ତି ନାହିଁ ସେମାନେ ଏହି ସମସ୍ୟାର ସମାଧାନ କରି ପାରିବେ ନାହିଁ । କିନ୍ତୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ସଙ୍ଗେ ସଙ୍ଗେ ବୁଝି ପାରିଥିଲେ ଯେ, ପୋଡ଼ା କୋଇଲା ଏବଂ ପାଉଁଶ ଭର୍ତ୍ତି ଗାଡ଼ସବୁ ସେଇସବୁ ଜାଗାରେ ଅବସ୍ଥିତ, ଯେଉଁଠି ଛାତକୁ ଧରିଥିବା ଖୁଣ୍ଟଗୁଡ଼ିକ ଛିଡ଼ା ହୋଇଥିଲା । ପଥର ପାଇଟି ଯାଇଥିବା ନଳ ଗଛର ଟୁକୁରାଗୁଡ଼ିକରୁ ଜଣାଯାଏ, ଘର ଛପରଟା ନଳ ଗଛରେ ତିଆରି ହୋଇଥିଲା । ଯେଉଁସବୁ ପୋଡ଼ା ଦାଗ ଯାଇ

ମଝିରେ ମିଶିଛି ସେଗୁଡ଼ିକ ହେଉଛି ସେଇସବୁ ଖୁଣ୍ଟର ଚିହ୍ନ । କୌଣସି କାରଣରୁ ଘରେ ନିଆଁ ଲଗିଯିବା ଫଳରେ ସେସବୁ ମାଟିରେ ପଡ଼ିଯାଇଥିଲା ।

ମଝିରେ ଥିବା ଚୁଲିରେ ରନ୍ଧାରନ୍ଧି ହେଉ ନଥିଲା । କାରଣ, ରନ୍ଧାରନ୍ଧି ଯଦି ହେଉଥାନ୍ତା, ତେବେ ଏତେ ପରିଷ୍କାର ଏବଂ ସଫେଦ ଦେଖା ଯାଉ ନଥାନ୍ତା । ପାଉଁଶର ଆସ୍ତରଣଟା ମଧ୍ୟ ସେଥିରେ ବହଳିଆ । ସମ୍ଭବତଃ ମଝି ଚୁଲିଟିରେ ପ୍ରାଚୀନ ପ୍ରଥା ଅନୁଯାୟୀ ସବୁବେଳେ ଅଗ୍ନି ଜଳୁଥିଲା ।

କେବଳ ନିଆଁ ହିଁ ଏ ଅଗ୍ନି ଶିଖାକୁ ଲିଭାଇ ପାରେ ।

ଘରର ସ୍ତ୍ରୀଲୋକମାନେ ଅନ୍ୟ ଚୁଲିରେ ରନ୍ଧାରନ୍ଧି କରୁଥିଲେ । ସେସବୁ ଛାତକୁ ଧରି ରଖିଥିବା ଖୁଣ୍ଟଗୁଡ଼ିକ ମଧ୍ୟରେ ଅବସ୍ଥିତ ଥିଲା । ତେଣୁ କରି ସେସବୁ ଚୁଲିର ପାଉଁଶ ମଳିଆ ଏବଂ ସେଥିରେ ହାଡ଼ ଏବଂ କଣ୍ଟାସବୁ ଜମିଛି ।

ଅନେକ ଚୁଲି ରହିଛି ଅର୍ଥ ଅନେକ ସ୍ତ୍ରୀଲୋକ ମଧ୍ୟ ଥିଲେ । ସେସବୁ ସ୍ତ୍ରୀଲୋକ, ସେମାନଙ୍କ ସ୍ୱାମୀସମୂହ ଏବଂ ପିଲମାନେ ମିଶି ଏକ ଗୋଷ୍ଠୀ ଗଠନ କରିଥିଲେ । ସେ ଗୋଷ୍ଠୀଟି କୌଳିକ ସଂପର୍କ ଉପରେ ପ୍ରତିଷ୍ଠିତ ଥିଲା ।

ଗୋଷ୍ଠୀଟି ଥିଲା ବଡ଼, ସେଥିରେ ଶହେ କିମ୍ବା ତାଠାରୁ ଅଧିକ ଲୋକ ରହୁଥିଲେ । ତେଣୁ କରି ବାସ ଘରଟି ଏତେ ବଡ଼ । ତଥାପି ଏହାର ସାଦୃଶ୍ୟ ଥିଲା ତା'ର ପୂର୍ବପୁରୁଷ ସହିତ, ଅର୍ଥାତ୍ ଗୋଳିଆ ଛାତବାଲା ଗୋଲକାର ତମ୍ବୁ ସହିତ ।

ଦୁଇ ଧାଡ଼ି ଖୁଣ୍ଟ ମଧ୍ୟ ଦେଇ ଏକ ଲମ୍ବା ବାଟ ପଡ଼ିଥିଲା କେନ୍ଦ୍ରରେ ଥିବା ଚୁଲିଟି ନିକଟକୁ । ଏହି ବାଟର ଦକ୍ଷିଣ ପାଖକୁ ଥିଲା ରନ୍ଧାଚୁଲି ସବୁ ଏବଂ ବାଆଁକୁ ଥିଲା ଖାଲି ଜାଗା ।

ଘର ମଧ୍ୟରେ ସେମାନଙ୍କର ଖାଲି ଜାଗାର ଦରକାର କ'ଣ ଥିଲା ?

ଏହି ପ୍ରଶ୍ନର ଉତ୍ତର ମିଳେ ମଧ୍ୟ ଏସିଆର ବହୁ ଦୂରରେ ଅବସ୍ଥିତ ଆଣ୍ଡାମାନ ଦ୍ୱିପପୁଞ୍ଜର ସାଧାରଣ ବାସ ଘରଗୁଡ଼ିକରେ । ଏହି ଦ୍ୱିପପୁଞ୍ଜର ଅଧିବାସୀମାନେ ଏହି ଖୋଲା ଜାଗାକୁ ବ୍ୟବହାର କରୁଥିଲେ ପୂଜା ପାଠ ଏବଂ ଉତ୍ସବ ଆଦି ପାଇଁ ।

ଏଠାରେ ବି ବାଟର ବାଆଁ ପାଖକୁ କାନ୍ଥକୁ ଲଗି ଛୋଟ ଛୋଟ ଚୁଲିର ଚିହ୍ନ ଦେଖିବାକୁ ମିଳିଛି । ସେଠାରେ ସମ୍ଭବତଃ କୁଳର ଅବିବାହିତା ଲୋକମାନେ ବାସ କରୁଥିଲେ ।

ଏହି ଭାବେ, ପ୍ରତ୍ନତତ୍ତ୍ୱବିଦ୍‌ମାନେ ନିଜର କଳ୍ପନା ଚକ୍ଷୁରେ ପ୍ରାଗୈତିହାସିକ ଧୀବରମାନେ ରହୁଥିବା ଘରଗୁଡ଼ିକର ଚିତ୍ର ଆଙ୍କି ନେଇଥିଲେ ।

କିନ୍ତୁ ଏହି ବସତିରୁ ମିଳୁଥିବା ଧ୍ୱଂସାବଶେଷ ମଧ୍ୟରୁ ଜଣା ଯାଏ ନାହିଁ, ସେମାନେ କିପରି ମାଛ ଧରୁଥିଲେ ବା ସେମାନଙ୍କର ଛୋଟ ଛୋଟ ଡଙ୍ଗା ଥିଲା କି ନଥିଲା ।

ରୁଷିଆର ଲଦୋଗା ହ୍ରଦ କୂଳରେ ସେଇଭଳି ଏକ ଡଙ୍ଗାର ସନ୍ଧାନ ମିଳିଛି ।

## ସମସ୍ତ ଜାହାଜର ବୁଢ଼ାବାପା ।

ପ୍ରାୟ ଷାଠିଏ ବର୍ଷ ଆଗେ ରୁଷିଆର ଲଦୋଗା ହ୍ରଦ କୂଳରେ କେତେକ ଲୋକ ମାଟି ଖୋଳୁ ଥିଲେ । ପଙ୍କ ଏବଂ ବାଲି ଖୋଳୁ ଖୋଳୁ ଗୋଟାଏ ମଣିଷ ମୁଣ୍ଡର ଖପୁରି ଏବଂ କେତେକ ପଥର ହତିଆର ସେମାନେ ପାଇଥିଲେ ।

ସେ ଖବରଟା ଯାଇ ପହଞ୍ଚିଲା ପ୍ରତ୍ନତତ୍ତ୍ୱବିଦ୍‌ମାନଙ୍କ କାନରେ । ସେମାନେ ଆସି ଜଙ୍ଗଲାଭୂଇଁ ଭିତରୁ ସମସ୍ତ ପ୍ରକାରର ଜିନିଷକୁ ଖୋଳି ବାହାର କଲେ । ସେସବୁକୁ ଦେଖିଲେ ମନେ ହେବ ମିଉଜିଅମ୍‌ରେ ଦେଖାଇବା ପାଇଁ ଯେମିତି ସେଠି ଥୁଆ ହୋଇଥିଲା । ସେସବୁ ଜିନିଷ ମଧ୍ୟରେ ଥିଲା ପଥର କୁରାଢ଼ି, ପଥରର ହାତୁଡ଼ି, ମାଛ ଧରା ବନଶୀ, ବର୍ଛା, କରତ ଦାନ୍ତ ଭଳି ଟେଣ୍ଟା ଏବଂ ଏକ ହାଡ଼ ତିଆରି ଡେଉଁରିଆ । ଏସବୁ ପାଇବା ପରେ ଆହୁରି ମାଟି ଖୋଳା ହେଲାରୁ ସେମାନଙ୍କର ସର୍ବଶ୍ରେଷ୍ଠ ଆବିଷ୍କାରଟି ବାହାରିଲା । ସେ ଆବିଷ୍କାରଟି ହେଉଛି ଗୋଟାଏ କାଠୁଆ ଡଙ୍ଗା । ଡଙ୍ଗାଟା ନଷ୍ଟ ହୋଇ ନଥିଲା । ଏବଂ ଏମିତି ଭାବେ ରହିଥିଲା ଯେ, ମଣିଷ ସେଥିରେ ବସି ଚଳେଇ ନେଇ ଯାଇ ପାରେ ।

ଡଙ୍ଗାଟା ଅବଶ୍ୟ ଆଜିକାଲିକାର ନୌକା ଭଳି ଦେଖିବାକୁ ନଥିଲା । ଆମର ସମସ୍ତ ନୌକା, ବାଷ୍ପୀୟ ଜାହାଜ, ଡିଜେଲ ଚାଳିତ ଜାହାଜ ଆଦିର ବୁଢ଼ା ବାପା ହେଉଛି ସେ ଡଙ୍ଗାଟି । ଏହା ଖୋଳା ହୋଇଥିଲା ବିରାଟ ଏକ ଓକ୍ ଗଛର ଗଣ୍ଡିରୁ ।

ତୁମେ ଯଦି ସେ ଡଙ୍ଗାଟିକୁ ଚାହିଁବ, ଦେଖି ପାରିବ, ପଥର କୁରାଢ଼ିରେ କିପରି ଓକ୍ ଗଛର ଗଣ୍ଡିକୁ ଖୋଳା ଯାଇଛି ।

ଗଛର ଛାଇ ପାଖକୁ ଯେଉଁଠି କୁରାଢ଼ି ଚାଲିଛି ସେଠାରେ ଆବୁଡ଼ା ଖାବୁଡ଼ା ହୋଇନି, ଉପରି ଅଂଶଟା ଅନେକ ଖାଉଁଳିଆ ହୋଇଛି । କିନ୍ତୁ ଯେଉଁଠି ଶକ୍ତ କାଠ ପଡ଼ିଛି ସେଠି ହାଣିବା ସହଜ ହୋଇନି । ସେଠି କାଠ ଆବୁଡ଼ା ଖାବୁଡ଼ା ହୋଇଛି । ମନେ ହେଉଛି କୁରାଢ଼ିଟାର ଦାଢ଼ ଯେମିତି ଓକ୍ କାଠରେ ବାଜି ବାଙ୍କି ଯାଇଛି । କୌଣସି କୌଣସି ଜାଗାରେ, ଗଛର ଗଣ୍ଠି ଥାଉ ବଙ୍କା ଜାଗାରେ,

କୁରାଢ଼ି ମୋଟେ ଚଳିନି । କାଠ ସାଙ୍ଗରେ କୁରାଢ଼ିର ଏହି ଲଢ଼େଇରେ କୁରାଢ଼ିକୁ ସାହାଯ୍ୟ କରିଛି ନିଆଁ ।

ଗଛର ଗଣ୍ଡି ଜାଗାଗୁଡ଼ିକୁ ନିଆଁ ଲଗେଇ ପୋଡ଼ି ଦିଆଯାଇଥିଲା । ସେସବୁ ଜାଗାରେ କଳା ଦାଗସବୁ ରହିଯାଇଛି ।

ଯେଉଁ କୁରାଢ଼ିରେ ଡଙ୍ଗାଟା ତିଆରି ହୋଇଥିଲା ସେଟାକୁ ବିଜ୍ଞାନୀମାନେ ତା ପାଖରୁ ପାଇଛନ୍ତି । ସେଟାର ଦାଢ଼କୁ ପଜା ଯାଇ ପାଲିଶ୍ କରାଯାଇଥିଲା । ଏହାର ଅନତିଦୂରରେ ପଙ୍କ ମଧ୍ୟରେ ପୋତି ହୋଇ ପଡ଼ିଥିଲା ଏକ ପଥର ଘୋରଣା । ତା' ଅର୍ଥ, ସେତେବେଳେ ପଥର ଅସ୍ତ୍ରଗୁଡ଼ିକୁ କେବଳ ହାଣିକି ତିଆରି କରାଯାଉଥିଲା, ସେସବୁକୁ ପାଲିଶ୍ କରାଯାଇ ଧାରୁଆ କରାଯାଉଥିଲା ।

କିନ୍ତୁ ଏକ ଛୋଟ୍ଟା କୁରାଢ଼ିରେ କ'ଣ ଏକ ଶକ୍ତ ଓକ୍ କାଠକୁ ହାଣି ହେଉଥିଲା ?

ଓକ୍ ଗଛର ଗଣ୍ଡିକୁ ଖୋଳି ଡଙ୍ଗା ତିଆରି କରିବାରେ ଅନେକ ଦିନ ଲାଗୁଥିଲା ଏବଂ ଅନେକ ପରିଶ୍ରମ କରିବାକୁ ପଡ଼ୁଥିଲା ।

ଶେଷକୁ ଡଙ୍ଗା ଖୋଳା କାମ ଶେଷ ହେଉଥିଲା ଏବଂ ଡଙ୍ଗାଟିକୁ ପାଣିରେ ଭସାଇ ଦିଆଯାଉଥିଲା । ଧୀବର ଗୋଷ୍ଠୀର ଲୋକେ ହ୍ରଦରେ ନୌକା ନେଇ ମାଛ ମାରିବାକୁ ବାହାରି ପଡ଼ୁଥିଲେ । ସାଙ୍ଗରେ ନେଇ ଯାଉଥିଲେ ମାଛ ମାରିବା ପାଇଁ ତେଣ୍ଟା, ବନୀଶ, ମାଛ ମରା ବର୍ଚ୍ଛା ଏବଂ ନାନା ଧରଣର ଜାଲ ।

ହ୍ରଦଟା ଥିଲା ଅନେକ ବଡ଼ । ସେଥିରେ ଅନେକ ମାଛ ରହୁଥିଲେ । କିନ୍ତୁ କୂଳଠୁ ବେଶି ଦୂରକୁ ଯିବାକୁ ଲୋକଙ୍କ ସାହସ ପାଉ ନଥିଲା ।

କାରଣ ପାଣି ଥିଲା ସେମାନଙ୍କ ପକ୍ଷରେ ନୂଆ ଏକ ଅଜ୍ଞାତ ଜଗତ ଭଳି । ସେମାନେ ବା କେମିତି ଜାଣନ୍ତେ ଯେ, ଏହା କେମିତିକା ଏବଂ ତା'ପରେ ସେଠାରେ କ'ଣ ଘଟିବ ? ଦିନେ ଶାନ୍ତ ଶାଉଁଳିଆ ଦିଶିଲା ବେଳେ ଅନ୍ୟ ଦିନ ସେଥିରେ ଛୋଟ୍ଟୋଳିତ ଢେଉସବୁ ଉଠେ ।

ଯେଉଁ ଓକ୍ ଗଛକୁ ଝଡ଼ କେବେ ଭାଙ୍ଗି ପାରୁ ନଥିଲା ସେଟା ଢେଉ ଉପର ଭାସି ଚାଲିଲା କାଠ ଖଣ୍ଡକ ଭଳି ।

କିଛି ବାଟ ଗଲା ପରେ ଲୋକେ ଭୟରେ କୂଳ ଆଡ଼କୁ ଡଙ୍ଗା ନେଇ ପଳେଇ ଆସୁଥିଲେ । ଶକ୍ତ ମାଟି ସେଠାରେ ସେମାନଙ୍କୁ ଅପେକ୍ଷା କରୁଥିଲା ଏବଂ ସେମାନଙ୍କ ପାଦସବୁ ଅଭ୍ୟସ୍ତ ଥିଲା ମାଟି ଉପରେ ଚାଲିବାରେ । ମାଟି ସେମାନଙ୍କୁ ଦୋହଲାଉ ନଥିଲା କି ହଲେଇ କି ଫିଙ୍ଗି ଦେଉ ନଥିଲା ।

ଡେଣ୍ଟୁ କରି ଏକ ଶିଶୁ ଭଳି ପ୍ରାଗୈତିହାସିକ ମଣିଷ ମା ଧରିତ୍ରୀକୁ ନିବିଡ଼ ଭାବେ ଧରିକି ରହିଛି, ସେ ତାକୁ ତା ଉପରେ ଛିଡ଼ା କରେଇଛି ।

ଆକାଶ ପର୍ଯ୍ୟନ୍ତ ମାଡ଼ି ଯାଇଥିବା ଜଳରାଶି ଉପରେ ମାଛ ପଛେ ବିପଦ ମଧ୍ୟକୁ ନଯାଇ ଧୀବରମାନେ କୂଳରେ ଅପେକ୍ଷା କଲେ ମାଛ କୂଳ ପାଖକୁ ଉଠି ଆସିବା ପାଇଁ ।

ଠିକ୍ ସମୟରେ ଏବଂ ସତର୍କତାର ସହିତ ସେମାନେ ଆତ୍ମବିଶ୍ୱାସ ଲାଭ କଲେ ଏବଂ ଆହୁରି ଦୂରକୁ ଯାତ୍ରା କଲେ ।

ଦିନ ଥିଲା ପାଣି ଯେଉଁଠି ପଡ଼ୁଥିଲା, ମଣିଷର ଦୁନିଆ ସେଇଠି ଶେଷ ହେଉଥିଲା । ପ୍ରତିଟି ନଦୀ କୂଳରେ ଯେମିତି ତା ପାଇଁ ଲେଖା ହୋଇଥିଲା: "ପ୍ରବେଶ ନିଷେଧ !"

ମଣିଷ କିନ୍ତୁ ସେ ଅଦୃଶ୍ୟ ପ୍ରାଚୀରକୁ ଭାଙ୍ଗି ଆଗେଇ ଯାଇଛି । ସେ ପର୍ଯ୍ୟନ୍ତ ସେ ତା'ର ନୂଆ ଦୁନିଆ, ଜଳ ଦୁନିଆର ସୀମାନ୍ତର ନିକଟରେ ରହିଥିଲା । କିନ୍ତୁ ନୂଆ କିଛି କରିବାକୁ ଗଲେ ପ୍ରଥମେ କଷ୍ଟ କରିବାକୁ ପଡ଼େ । ସମୟ ଆସିଲା, ଯେତେବେଳେ ତାକୁ କୂଳ ସହିତ ବାନ୍ଧିଥିବା ଜଞ୍ଜିରକୁ ଛିଡ଼େଇ ପଳେଇ ଗଲା ।

ସେ ଆଉ ସେ କାଠ ଡଙ୍ଗାରେ ଆଗେଇଲା ନାହିଁ । ସେ ଜାହାଜରେ ଗଲା, ଯେଉଁ ଜାହାଜ ସମୁଦ୍ରରେ ଭାସି ଗ୍ଲଲିଲା । ଦିଗ୍‌ବଳୟ ତଳେ ନୂଆ ସମୁଦ୍ର କୂଳରେ, ନୂଆ ଦେଶରେ ତାକୁ ପହଞ୍ଚାଇ ଦେଲା, ଯେଉଁଠି ପରିଭଳି ମଣିଷ ବାସ କରନ୍ତି ।

## ପ୍ରଥମ କାରିଗର ।

ମୁଁ ସେଇ ତରୁଣ କାରିଗରକୁ କହୁଛି ଯିଏ ସଂପ୍ରତି ଜାଣିଛି କେମିତି କୁରାଢ଼ି, ହାତୁଡ଼ି ଏବଂ ବିନ୍ଧଣୀ ଚଳେଇବାକୁ ହୁଏ ।



କାଠଖୋପ ଯୁକ୍ତ ପଥରର କୁରାଢ଼ି ।

ମୁଁ ଭବିଷ୍ୟତର ସେଇ ଇସ୍‌ପାତ ନିର୍ମାତା, ରସାୟନବିତ୍, ମେସିନ ଏବଂ ଉଡ଼ାଜାହାଜର ଡିଜାଇନର, ଘର ଏବଂ ଜାହାଜର ନିର୍ମାତାମାନଙ୍କୁ କହୁଛି :

ଏ ବହିଟି ତୁମରିମାନଙ୍କ ପାଇଁ ଲେଖା ହୋଇଛି, ତୁମେ, ଯେଉଁମାନେ ତୁମର ଯନ୍ତ୍ରପାତି ଆଉ କାମକୁ ଭଲ ପାଅ ।

ତୁମେମାନେ ଜାଣିଥିବ ତୁମର ଯନ୍ତ୍ର ଆଉ ଯେଉଁ କାଠ ବା ଧାତୁ ନେଇ କାମ କରୁଛ, ସେ ଦିହିଁଙ୍କ ମଧ୍ୟରେ ଲଢ଼େଇଟା କେତେ କଠିନ । ତୁମେ ଜାଣିଥିବ, ତୁମର କାମଟି ଶେଷ ହୋଇଗଲ ପରେ ତମେ କେତେ ଆନନ୍ଦିତ ହୁଅ ।

ତୁମେ ଯେତେବେଳେ ଖଣ୍ଡେ କାଠ ନେଇ କାମ କରିବାକୁ ବସ, ସେତେବେଳେ ତମ ମନରେ ତମେ ଆଙ୍କି ଯାଅ କ'ଣ ତମେ କରିବାକୁ ଚାହୁଁଛ । କାମଟା ତୁମକୁ ଖୁବ୍ ସହଜ ମନେ ହୁଏ । କରତରେ କେଉଁଠୁ ଟିକେ କାଟି ପକାଅ, ଗାତଟାଏ ବିନ୍ଧଣୀରେ କରି ଦିଅ । କିନ୍ତୁ କାଠଟା ତମ କଥାରେ ରାଜି ହୁଏ ନାହିଁ । ତାକୁ କାଟୁଥିବା ଯନ୍ତ୍ରଟାକୁ ସେ ତା'ର ପାରୁପର୍ଯ୍ୟନ୍ତ ବାଧା ଦେବାରେ ଲଗି ପଡ଼େ ।

ଗୋଟାକ ପରେ ଗୋଟାଏ ଯନ୍ତ୍ର ଏହି ଯୁଦ୍ଧରେ ଆସି ଯୋଗ ଦିଅନ୍ତି । ଛୁରି ନପାରିଲେ କୁରାଢ଼ି ଆସି ଯୋଗ ଦିଏ । କୁରାଢ଼ି ଯଦି ଖୁବ୍ ଶକ୍ତ ନହୋଇଥାଏ, ତେବେ ଶହ ଶହ ଦାନ୍ତୁଆ ଦାନ୍ତ ଥିବା କରତ ଆସି ଯୁଦ୍ଧ ଚଳାଇଯାଏ ।

ଠିକ୍ ସମୟରେ ଅନାବଶ୍ୟକ କାଠ ସବୁକୁ ହାଣି ଏବଂ ଚିରି ବାହାର କରି ଦିଆଯାଏ । ସେସବୁ ପଳଖା, କରତଗୁଣ୍ଡରେ ପରିଣତ ହୁଏ ।

ଏଥର ତମେ ଜିତିଗଲ ; କିନ୍ତୁ ସେ ଜିତିବାଟା କେବଳ ତମର ନୁହଁ । ତମର ଜିତିବାଟା ସମ୍ଭବ ହୋଇଛି ସେଇସବୁ କାରିଗରମାନଙ୍କ ପାଇଁ, ଯେଉଁମାନେ ଶହ ଶହ ବର୍ଷ ଧରି ଯନ୍ତ୍ର ଉଦ୍‌ଭାବନ କରିଛନ୍ତି ଏବଂ ସେସବୁକୁ ବିକଶିତ କରିଛନ୍ତି । ସେମାନେ ନୂଆ ନୂଆ ଉପାଦାନ ଖୋଜି ବାହାର କରିଛନ୍ତି ଏବଂ ସେସବୁଥିରେ ଏହିସବୁ ଯନ୍ତ୍ରପାତି ତିଆରି କରିବା ସଙ୍ଗେ ସଙ୍ଗେ ସେସବୁକୁ ବ୍ୟବହାର କରିବାର ଉପାୟ ଆବିଷ୍କାର କରିଛନ୍ତି ।

ଏହି ପୁସ୍ତକଟିରୁ ତୁମେ ଇତିମଧ୍ୟରେ ପଢ଼ିଛ ପ୍ରଥମ ଛୁରି, ପ୍ରଥମ କୁରାଢ଼ି ଏବଂ ହାତୁଡ଼ି ତିଆରି କରିଥିବା କାରିଗର ସଂପର୍କରେ ।

ସେମାନଙ୍କୁ କାମ କରିବା ଅବସ୍ଥାରେ ମଧ୍ୟ ତୁମେ ଦେଖିଥିବ । ତମ କାମ ଯେମିତି କଷ୍ଟକର, ସେମାନଙ୍କର ମଧ୍ୟ ତଦ୍ରୂପ ; କିନ୍ତୁ କାମ ଶେଷ ହୋଇଗଲ ପରେ ତୁମେ ଯେମିତି ଆନନ୍ଦିତ ହୁଅ, ସେମାନେ ମଧ୍ୟ ସେଇ ଭଳି ହୁଅନ୍ତି ।

ଏହିସବୁ ପ୍ରଥମ ବଢ଼େଇ, ପ୍ରଥମ ଗୁଷୀ ବା ରାଜମିସ୍ତ୍ରୀ ପଶୁ ଚମଡ଼ାର ପୋଷାକ ପିନ୍ଧୁଥିଲେ । ସେମାନଙ୍କର ଯନ୍ତ୍ରସବୁ ଥିଲ ଅସୁନ୍ଦର ଏବଂ ଓଜନିଆ ।

ଆଜିକାଲି ଆମ ପକ୍ଷରେ ଏକ ମୂର୍ତ୍ତି ତିଆରି କରିବାଟା ଯେତେ କଷ୍ଟସାଧ୍ୟ ନୁହଁ, ତାଠାରୁ ଅଧିକ କଷ୍ଟସାଧ୍ୟ ଥିଲା ସେମାନଙ୍କ ପକ୍ଷରେ ମାଟି ହାଣ୍ଡିଟିଏ ତିଆରି କରିବା ।

କିନ୍ତୁ ଏହିସବୁ ବଢ଼େଇ, ସ୍ରଷ୍ଟା ଏବଂ କୁମ୍ଭାରମାନେ ଥିଲେ ଅସଂଖ୍ୟ ନିର୍ମାତା, ରସାୟନବିତ୍ ଏବଂ ଇସ୍ପାତ ନିର୍ମାତାମାନଙ୍କ ମଧ୍ୟରେ ପ୍ରଥମ କେଇଜଣ । ଏହିମାନେ ତ ସେମାନଙ୍କ ଦୈନନ୍ଦିନ ଶ୍ରମ ବଳରେ ପୃଥିବୀର ଚେହେରାକୁ ବଦଳେଇ ଦେଉଛନ୍ତି ।

ଦୃଷ୍ଟାନ୍ତ ସ୍ୱରୂପ ପ୍ରାଚୀନ କୁମ୍ଭାରମାନଙ୍କ କଥା ଧରାଯାଉ । ସେମାନେ ପ୍ରଥମେ ନୂଆ ଏକ ବସ୍ତୁ କାଦୁଅରେ ତିଆରି କରିଥିଲେ, ଯେଉଁଟା କି ପ୍ରକୃତି ମଧ୍ୟରେ ନଥିଲା । ସେମାନଙ୍କ ଆଗରୁ ପ୍ରାଗୈତିହାସିକ କାରିଗର ପଥରରେ କୁରାଢ଼ି କିମ୍ବା ହାଡ଼ରେ ତେଣ୍ଟା ତିଆରି କରିଥିଲେ । କିନ୍ତୁ ଯେଉଁ ବସ୍ତୁରୁ ସେମାନେ ସେସବୁ ହତିଆର ତିଆରି କରିଥିଲେ ତାକୁ ସେମାନେ ତିଆରି କରି ନଥିଲେ । ସେ କେବଳ ସେସବୁର ରୂପକୁ ବଦଳାଇ ନୂଆ ରୂପ ଦେଉଥିଲା । କିନ୍ତୁ ଏବେ ସଂପୂର୍ଣ୍ଣ ନୂଆ ଏକ ଘଟଣା ଘଟିଲା । କାଦୁଅରେ ମଣିଷ ଏକ ପାତ୍ର ତିଆରି କରି ନିଆଁରେ ତାକୁ ପୋଡ଼ିଲା । ନିଆଁ କାଦୁଅର ଗୁଣକୁ ଏପରି ବଦଳେଇ ଦେଲା ଯେ, ତାକୁ ଆଉ କାଦୁଅ ବୋଲି ଚିହ୍ନି ହେଲା ନାହିଁ ।

ଆଗରୁ ମାଟି ଟିକେ ଓଦା ରହିଲେ ସେଥିରେ ଶିଉଳି ଗଜେଇ ଉଠୁଥିଲା । କିନ୍ତୁ ତାକୁ ନିଆଁରେ ପୋଡ଼ି ଦେଲା ପରେ ଜଳ ତା'ର ଆଉ କ୍ଷତି କରି ପାରିଲା ନାହିଁ । ପାଣି ତା ମଧ୍ୟରେ ଭରି ଦେଲେ ତା'ର ଚେହେରାରେ ପରିବର୍ତ୍ତନ ଘଟିଲା ନାହିଁ କି ନରମ ବି ହେଲା ନାହିଁ ।

ପ୍ରାଗୈତିହାସିକ ମଣିଷ କାଦୁଅକୁ ନୂଆ ଏକ ଜିନିଷରେ ପରିବର୍ତ୍ତନ କରିବା ପାଇଁ ନିଆଁକୁ ବ୍ୟବହାର କରିଥିଲା । ଏକାବେଳକେ ସେ ଦୁଇଟି ବିଜୟ ହାସଲ କରିଥିଲା : କାଦୁଅ ଉପରେ ବିଜୟ ଏବଂ ନିଆଁ ଉପରେ ବିଜୟ । ନିଆଁ ଅବଶ୍ୟ ଇତିପୂର୍ବରୁ ମଣିଷର ସେବାରେ ଲାଗିଥିଲା – ତାକୁ ଶୀତରୁ ରକ୍ଷା କରୁଥିଲା, ବଣୁଆ ଜୀବଜନ୍ତୁଙ୍କୁ ତା ପାଖକୁ ପୂରେଇ ଦେଉ ନଥିଲା, ବଣକୁ ପରିଷ୍କାର କରିବାରେ ସାହାଯ୍ୟ କରୁଥିଲା, ଡଙ୍ଗା ତିଆରି କଲା ବେଳେ ତା କୁରାଢ଼ିକୁ ଚଟେଇ କାଠର ଗଣ୍ଡିକୁ ପୋଡ଼ି ଦେଉଥିଲା । ତା'ପରେ ଲୋକେ ନିଆଁ ଜାଳିବାର ଗୋପନ କାଇଦାଟିକୁ ସେମାନେ ଆବିଷ୍କାର କରି ପାରିଛନ୍ତି । ଦରକାର ହେଲେ ସେ ଦୁଇ ଖଣ୍ଡ କାଠକୁ ଘଷି ନିଆଁ ବାହାର କରି ନେଲା ।

ତା'ପରେ ମଣିଷ ନିଆଁକୁ ଆଉ ଏକ କଠିନ କାମ ଦେଇଥିଲା । ସେ କାମଟି ହେଉଛି ଗୋଟିଏ ଉପାଦାନକୁ ଆଉ ଏକ ଉପାଦାନରେ ପରିବର୍ତ୍ତନ କରିବା ।

ସେ ନିଆଁର ଏହି ଅଲୌକିକ ଗୁଣଟିକୁ ଆବିଷ୍କାର କଲା ପରେ ତାକୁ କାଦୁଅ ତିଆରି ପାତ୍ରକୁ ପୋଡ଼ିବାରେ, ଖାଦ୍ୟପେୟ ରାନ୍ଧିବାରେ, ରୁଟି ସେକିବାରେ ଏବଂ ତମ୍ବାକୁ ତରଳାଇବାରେ ଲଗେଇଲା ।

ଆଜିକାଲି ଦୁନିଆ ସାରା ତମେ ଏଭଳି ଏକ କାରଖାନା ପାଇବ ନାହିଁ, ଯେଉଁଠି ନିଆଁର ବିନା ସାହାଯ୍ୟରେ ଗୋଟିଏ ଉପାଦାନକୁ ଆଉ ଏକ ଉପାଦାନରେ ପରିଣତ କରାଯାଉଛି ।

ନିଆଁ ସାହାଯ୍ୟରେ ଆମେ ଲୁହା ପଥରରୁ ଲୁହା ବାହାର କରୁଛେ, ବାଲିରୁ ଗ୍ଲାସ ଏବଂ କାଠରୁ କାଗଜ ତିଆରି କରୁଛେ । ଇସ୍ପାତ ନିର୍ମାତା ଏବଂ ରସାୟନବିତ୍‌ମାନେ ଇସ୍ପାତ କାରଖାନାରେ ଜଳୁଥିବା ନିଆଁକୁ ନିୟନ୍ତ୍ରଣ କରିଥାନ୍ତି । ଏବଂ ତମେ ଜାଣିଲେ ଆଶ୍ଚର୍ଯ୍ୟ ହେବ ଯେ, ଏହିସବୁ କଳକାରଖାନାର ଯେଉଁସବୁ ଫର୍ଣେସ ବା ଲୁହା ତରଳେଇବା ବିରାଟ ବିରାଟ ଚୁଲୀ ଜଳୁଛି ସେସବୁର ଉତ୍ପତ୍ତିସ୍ଥଳ ହେଉଛି ସେଇ ଚୁଲୀଟି, ଯେଉଁଠି ପ୍ରାଗୈତିହାସିକ କୁମ୍ଭାର ତା'ର ସେ ଅଙ୍କାବଙ୍କା, ଗୋଜିଆ ମାଟି ପାତ୍ରଟିକୁ ପୋଡ଼ିଥିଲା ।

# ବିହନ ହେଉଛି ଆଉ ଏକ ସାକ୍ଷୀ।

ପ୍ରତ୍ନତତ୍ତ୍ୱବିଦ୍‌ମାନେ ଆଉ ଏକ ପ୍ରାଗୈତିହାସିକ ଜନବସତିକୁ ମାଟି ତଳୁ ଖୋଳି ବାହାର କଲା ବେଳେ ଅନେକ ଜିନିଷପତ୍ର ପାଇଥିଲେ । ସେସବୁ ମଧ୍ୟରେ କେତୋଟି ହାଣ୍ଡି ମିଳିଥିଲା ।

ହାଣ୍ଡିଗୁଡ଼ିକ ଉପରେ ନାନା ପ୍ରକାରର ନକ୍ସାର ଦାଗ କଟା ଯାଇଥିଲା । କେତେକ ବୈଜ୍ଞାନିକମାନଙ୍କ ମତରେ, ପ୍ରାଗୈତିହାସିକ କୁମ୍ଭାରମାନେ କେମିତି ହାଣ୍ଡି ମାଠିଆ ତିଆରି କରୁଥିଲେ ଏବଂ ପୋଡୁଥିଲେ ତାହା ଏହିସବୁ ଦାଗରୁ ଅନୁମାନ କରି ହୁଏ ।

ପ୍ରଥମେ ଖୋଇରେ ପାଛିଆ ତିଆରି କରି ତା ଭିତରେ କାଦୁଅକୁ ପରସ୍ତ କରି ଲେପି ଦିଆ ଯାଉଥିଲା । ତା'ପରେ ନିଆଁରେ ସେଟାକୁ ପୋଡ଼ି ଦେଲେ ଖୋଇ-ତକ ଜଳି ଯାଇ ଖାଲି ମାଟି ରହିଯାଉଥିଲା । ଏହିସବୁ ମାଟି ବାସନ ଦେହରେ ତେଣୁ କରି ଏହିସବୁ ଫ୍ରେମ୍‌ର ଦାଗ ଥାଏ ।

ତା'ପରେ ବିନା ଫ୍ରେମ୍‌ରେ କିପରି ମାଟି ବାସନକୁ ପୋଡ଼ିବାକୁ ହୁଏ, କୁମ୍ଭାରମାନେ ଜାଣି ଯାଇଥିଲେ । ପୋଡ଼ିବା ଆଗରୁ ସେସବୁ ଉପରେ ନାନା ରକମର ଗାର ଏବଂ ଛକ ଆଙ୍କୁଥିଲେ । ସେମାନଙ୍କର ଧାରଣା ଥିଲା, ହାଣ୍ଡି ଉପରେ

ଗାର ଏବଂ ଛକ ନଟାଣିଲେ ଏବଂ ସେମାନଙ୍କ ଗୋଷ୍ଠବାପା ଏବଂ ଗୋଷ୍ଠମାଙ୍କ ହାଣ୍ଡି ବାସନ ଭଳି ସେସବୁ ଦେଖା ନଗଲେ, ସେଥିରେ ଭଲ ରନ୍ଧା ହେବ ନାହିଁ ।

ଆଦିମ ଯୁଗରେ କାରିଗରମାନେ ମନେ କରୁଥିଲେ, ପ୍ରତିଟି ପଦାର୍ଥ ମଧ୍ୟରେ କୌଣସି ନା କୌଣସି ଅଜ୍ଞାତ ରହସ୍ୟପୂର୍ଣ୍ଣ ଶକ୍ତି ଏବଂ ଗୁଣ ଲୁଚିକି ରହିଛି । କିଏ କହି ପାରିବ ଯେ, ସମ୍ଭବତଃ ହାଣ୍ଡିରେ ଲୁଚିକି ଥିବା ସେଇ ଶକ୍ତିର ଚିତ୍ର ତା ଉପରେ ଅଙ୍କା ହୋଇଛି ବୋଲି ! ସେମାନେ ଯଦି ସେ ନକ୍‌ସାକୁ ବଦଳେଇ ଦିଅନ୍ତି ତେବେ ସେଥି ପାଇଁ ସେମାନଙ୍କୁ ଚିର ଦିନ ପାଇଁ ଅନୁତାପ କରିବାକୁ ପଡ଼ିବ । କାରଣ, ସେ ବାସନ ସେମାନଙ୍କ ଜୀବନରେ ଦୁର୍ଭାଗ୍ୟ, ଦୁଃସମୟ ଏବଂ କ୍ଷୁଧା ଆଣିବ । ବେଳେ ବେଳେ ସେ ବାସନକୁ କାହାର ଅମଙ୍ଗଳ ଦୃଷ୍ଟିରୁ ରକ୍ଷା କରିବା ନିମିତ୍ତ କୁମ୍ଭାର ଏକ କୁକୁରର ଛବି ଆଙ୍କି ଦେଉଥିଲା ।

କୁକୁର ଥିଲା ମଣିଷର ସହାୟକ, ସେ ତା ସହିତ ଶିକାର ବେଳେ ରହୁଥିଲା ଏବଂ ତା'ର ଘରେ ପହରା ଦେଉଥିଲା ।

କୁମ୍ଭାରଟି ମାଟି ବାସନ ଉପରେ କୁକୁରର ଛବିଟି ଆଙ୍କିଲା ବେଳେ ନିଜକୁ ନିଜେ ହୁଏତ କହୁଥିଲା : କୁକୁର ହେଉଛି ପହରୀ, ତା ହେଲେ ସେ ଏ ବାସନକୁ ଏବଂ ତା ମଧ୍ୟରେ ଥିବା ସବୁ କିଛିକୁ ପହରା ଦେଉ ।

ନାନା ରକମର ଛବି ଅଙ୍କା ହୋଇଥିବା ମାଟି ହାଣ୍ଡି ମଧ୍ୟ ଆହୁରି ଅନେକ ସ୍ଥାନରେ ମିଳିଛି । ସେସବୁ ମଧ୍ୟରୁ ଗୋଟିଏ ବିଖ୍ୟାତ ହାଣ୍ଡି ମିଳିଥିଲା ଫ୍ରାନସ୍‌ର କାଁପିନି ସହରରେ । ପ୍ରତ୍ନତତ୍ତ୍ୱବିଦ୍‌ମାନେ ତାକୁ ପରୀକ୍ଷା କଲା ବେଳେ ଦେଖିଲେ ଯେ, ତା ଉପରେ ଏକ ଯଅ ଦାନାର ଛବି ଅଙ୍କା ହୋଇଛି ।

ଏହି ଆବିଷ୍କାରଟିକୁ ଦେଖି ସେମାନେ ଉଲ୍ଲସିତ ହୋଇ ଉଠିଥିଲେ । ଏହା କେବଳ ଏକ ଶସ୍ୟ ଦାନା ବା ବିହନ ନୁହେଁ । ଏହା ହେଉଛି ସେହିସବୁ ବିରାଟ ପରିବର୍ତ୍ତନର ଏକ କ୍ଷୁଦ୍ର ସାକ୍ଷୀ, ଯେଉଁସବୁ ପରିବର୍ତ୍ତନ ପ୍ରାଗୈତିହାସିକ ମଣିଷ ଜୀବନରେ ଘଟି ଯାଇଛି ।

ଶସ୍ୟ ଯେଉଁଠି ଥିଲା, ଗ୍ରାମ ବାସ ନିଶ୍ଚୟ ସେଠି ହେଉଥିଲା । ଗ୍ରାମ ନହେଉଥିଲେ ସେମାନେ କାହିଁକି ସେଠାରେ ଶସ୍ୟ ପେଷା ଯନ୍ତ ଆଉ ପଥର ଫାଉଡ଼ା ପାଇଥାନ୍ତେ ।

ଶିକାରୀ ଏବଂ ଧୀବର, ଉଭୟ ସେତେବେଳେ ଗ୍ରାମ କରୁଥିଲେ ।

ତା ବୋଲି, କୁଳର ପ୍ରତ୍ୟେକ ଲୋକ ଯେ ଶିକାର କରୁଥିଲା ବା ମାଛ ମାରୁଥିଲା, ତା ନୁହେଁ । ପୁରୁଷମାନେ ଯେତେବେଳେ ଶିକାରରେ ବାହାରି ଯାଉଥିଲେ, ସ୍ତ୍ରୀଲୋକ ଏବଂ ପିଲାମାନେ ପାଛିଆ ଏବଂ ହାଣ୍ଡି ଧରି ବାହାରି ପଡ଼ୁଥିଲେ ଖାଇବା



ନିଗ୍ରୋ ମହିଳା ଶିଳରେ ଶସ୍ୟ ପେଶୁଅଛି ।

ଜିନିଷ ଗୋଟେଇ ଆଣିବାକୁ । ସମୁଦ୍ର କୂଳରେ ଶାମୁକା, ଜଙ୍ଗଲରୁ ଫଳ ମୂଳ ଆଉ ଛତୁ ଗୋଟଉଥିଲେ ଏପରିକି ସେମାନେ ଓକ୍ ଗଛର ମଞ୍ଜି ବି ଖାଉଥିଲେ । ଓକ୍ ଗଛରୁ ଫଳ ପାରି ତାକୁ ଚୂରିକି ସେଥିରେ ପିଠା ତିଆରି କରୁଥିଲେ । ତେଣୁ କରି ଅନେକ ଭାଷାରେ ଅନେକ ଦିନ ପର୍ଯ୍ୟନ୍ତ "ଆକର୍ଣ୍ଣ" ବା ଓକ୍ ମଞ୍ଜି ବୋଇଲେ ରୁଟିକୁ ବୁଝାଉ ଥିଲା ।



ପ୍ରାଗୈତିହାସିକ ମହିଳା ଏହି ପଥର ଶିଳରେ ଶସ୍ୟ ଇତ୍ୟାଦି ଚୂନା କରୁଥିଲେ ।

ଏହି ଭାବେ ବୁଲୁ ବୁଲୁ ସେମାନେ ଦିନେ ମହୁ ଫେଣାର ସନ୍ଧାନ ପାଇଲେ । ସେତେବେଳେ ସେମାନଙ୍କ ଆନନ୍ଦ କହିଲେ ନସରେ ।

ପାହାଡ଼ ଦେହରେ ଗୋଟିଏ ସ୍ତ୍ରୀଲୋକ ମହୁ ସଂଗ୍ରହ କରୁଥିବାର ଛବିଟିଏ ଅଙ୍କା ଅଛି । ସ୍ତ୍ରୀଲୋକଟି ଗଛରେ ଚଢ଼ି ଗୋଟିଏ ହାତରେ ହାଣ୍ଡି ଏବଂ ଅନ୍ୟ ହାତରେ ମହୁ ଫେଣା ଧରିଛି । ଘରି ପାଖରେ ତା'ର କ୍ରୁଦ୍ଧ ମହୁମାଛିମାନେ ଉଡ଼ୁଛନ୍ତି, ତା'ର କିନ୍ତୁ ସେମାନଙ୍କ ପ୍ରତି ଭ୍ରୁକ୍ଷେପ ନାହିଁ । ସେ ତା'ର ହାଣ୍ଡିରେ ମହୁ ଫେଣାକୁ ଚିପୁଡ଼ିବାରେ ଲାଗିଛି ।

ସ୍ତ୍ରୀଲୋକ ଏବଂ ପିଲମାନେ ସାଧାରଣତଃ ଜଙ୍ଗଲରୁ ପୁଳା ପୁଳା ବେରିକୋଳି, ମହୁ, ବଣୁଆ ଆପେଲ ଏବଂ ନାଶପାତି ଧରି ଫେରୁ ଥିଲେ ।

ଏତେ ଜିନିଷ ଧରି ଫେରୁଥିଲେ ଯେ ସେସବୁ ଗୋଟାଏ ବଡ଼ ଭୋଜି ପାଇଁ ଯଥେଷ୍ଟ ହେଉଥିଲା, କିନ୍ତୁ ସ୍ତ୍ରୀଲୋକମାନେ ସେମାନଙ୍କ ସଂଗୃହୀତ ଜିନିଷକୁ ଏତେ ଶୀଘ୍ର ଶେଷ କରି ଦେବାକୁ ଚାହାନ୍ତି ନାହିଁ । ପିଲମାନଙ୍କୁ ସେମାନେ ଘୋଉଡ଼ାଇ ଦେଇ ସେସବୁ ଜିନିଷକୁ ହାଣ୍ଡି କୁଣ୍ଡେଇ ପାଛିଆରେ ସାଇତି ରଖୁଥିଲେ । ଏଭଳି ରଖିବାର ଉଦ୍ଦେଶ୍ୟ ହେଉଛି, ଶିକାର ତ ସବୁବେଳେ ମିଳେନା, ତେଣୁ ଅସୁବିଧା ବେଳେ ଏହିସବୁ ଖାଦ୍ୟକୁ ବାହାର କରି ଖାଇବା ।

ଏହି ଭାବେ ଉଷ୍ଣ ଜଳବାୟୁ ଲୋକଙ୍କୁ ପୁଣି ଥରେ ଫଳ ମୂଳ ସଂଗ୍ରହକାରୀରେ ପରିଣତ କରି ଦେଲା । ତୁମେମାନେ ହୁଏତ ଭାବୁ ଥିବ, ମଣିଷ ତାହେଲେ ପଛକୁ ପାଦେ ଫେରି ଗଲା ନା କ'ଣ ? ନା, ସେଟା ଥିଲା ଆଗକୁ ଏକ ପଦକ୍ଷେପ । କାରଣ ଏହା ପରେ ସେମାନେ ଶସ୍ୟ ବୁଣାଳୀରେ ପରିଣତ ହେଲେ । ଫଳ ମୂଳ ସଂଗ୍ରହକାରୀ ଏବଂ ଚାଷୀ ମଧ୍ୟରେ ଥିବା ପାଚିରୀଟାକୁ ଏହା ଦ୍ୱାରା ସେମାନେ ପାରି ହୋଇ ଗଲେ ।

ସ୍ତ୍ରୀଲୋକମାନେ ବଣରୁ ବିଭିନ୍ନ ଫଳ ଏବଂ ବେରି କୋଳି, ବଣରେ ଜନ୍ମୁଥିବା ଯଅ ଆଉ ଗହମର ଦାନା ସଂଗ୍ରହ କରି ଆଣୁଥିଲେ । ହାଣ୍ଡି ଏବଂ ଟୋକେଇରେ ସେସବୁକୁ ସାଇତି ରଖୁଥିଲେ ଭବିଷ୍ୟତ ପାଇଁ । ସେସବୁ ଶସ୍ୟଦାନା ମଧ୍ୟରୁ କେତୋଟି କେତେବେଳେ କେମିତି ମାଟିରେ ପଡ଼ିଯାଉଥିଲା ଏବଂ ସେସବୁ ମଧ୍ୟରୁ କେତେକ ଗଜଉଥିଲା ।

ପ୍ରଥମେ କିନ୍ତୁ, ଲୋକେ କିଛି ଭାବିଛନ୍ତି ଶସ୍ୟ ମଞ୍ଜି ବୁଣି ନଥିଲେ । ଏହା ଦୈବାତ୍ ଘଟିଥିଲା । କିନ୍ତୁ ପରେ ଦେଖି ଶୁଣିକି ଶିଖିଲେ ଯେ ମାଟିରେ ମଞ୍ଜି ବୁଣିଲେ ସେଥିରୁ ଗଛ ବାହାରି ଫଳ ଫଳି ପାରେ ।

ଏବେ ବି ଅନେକ ଜାତିଙ୍କ ମଧ୍ୟରେ ବିହନକୁ କିପରି ମାଟି ତଳେ କବର

ଦିଆଗଲା ଏବଂ ପରେ ତାହା କିପରି ପୁନର୍ଜନ୍ମ ଲାଭ କରି ଉପରକୁ ବାହାରି ପଡ଼ିଲା ସେସବୁ ସଂପର୍କରେ ନାନା କାହାଣୀ ଏବଂ ଲୋକକଥା ପ୍ରଚଳିତ ଅଛି ।

ପ୍ରାଚୀନ ଯୁଗରେ ସ୍ଲାଭ୍‌ଲୋକମାନେ କୋଦାଳରେ ମାଟିକୁ ଖୋଳି ଶସ୍ୟ ମଞ୍ଜିକୁ ପୋତି ଦେଉଥିଲେ । ସେମାନଙ୍କର ବିଶ୍ୱାସ ଥିଲା, ସେମାନେ ଏପରି ଏକ ଅଦ୍ଭୁତ ଦେବତାକୁ ପୋତି ପକାଉଛନ୍ତି, ଯିଏକି ସେମାନଙ୍କ ନିକଟକୁ ପୁଣି ସୁନେଲୀ ଶସ୍ୟ କେଣ୍ଡା ହୋଇ ଫେରି ଆସିବ । ହେମନ୍ତ କାଳରେ ସେମାନେ ଯେତେବେଳେ ଶସ୍ୟ ଅମଳ କରୁଥିଲେ, ସେମାନେ ଭାବୁଥିଲେ, ସେ ଦେବତା ମାଟି ତଳୁ ଫେରି ଆସିଛି । ତେଣୁ ତାଙ୍କ ଆନନ୍ଦର ସୀମା ରହେନା ।

ଶସ୍ୟକୁ ବିଡ଼ାବାନ୍ଧି ଉପରେ ଜମା କଲା ବେଳେ ସେମାନେ ନାଚୁଥିଲେ ଏବଂ ଗୀତ ଗାଉଥିଲେ । ଏହା କେବଳ ଏକ ନୃତ୍ୟ ନୁହେଁ । ଏହା ଥିଲା ଏକ ଯାଦୁକରୀ କାଣ୍ଡ । ସେମାନେ ମୃତ ଅବସ୍ଥାରୁ ଫେରି ଆସିଥିବାରୁ ସ୍ଲାଭ୍‌ଲୋକମାନେ ଶସ୍ୟର ସୁଖ୍ୟାତି ଗାଉଥିଲେ । ମା ବସୁଧାକୁ ପ୍ରାର୍ଥନା କରୁଥିଲେ ସେମାନଙ୍କ ପ୍ରତି ସଦା ସଦୟା ହେବାକୁ ।

# ନୂଆ ଭିତରେ ପୁରୁଣା ।

ଏ ଶତାବ୍ଦୀର ପ୍ରାରମ୍ଭରେ, ମହାନ୍ ଅକ୍ଟୋବର ସମାଜବାଦୀ ବିପ୍ଳବ ପୂର୍ବରୁ ରୁଷିଆରେ ଏଭଳି କେତେକ ସ୍ଥାନ ଥିଲା, ଯେଉଁଠି ସ୍ଲାଭ୍‌ଲୋକମାନେ ଫସଲ ଅମଳ ବେଳେ, ପ୍ରତି ବର୍ଷ ହେମନ୍ତ କାଳରେ "ଫସଲ କଟା" ଉତ୍ସବ ପାଳନ କରୁଥିଲେ ।

ଶେଷ ଶସ୍ୟ କେଣ୍ଡାଟିକୁ ରୁମାଲରେ ବାନ୍ଧି ଏକ ଜାମା ପିନ୍ଧାଇ ଦେଉଥିଲେ । ତା'ପରେ ପରସ୍ପରର ହାତ ଧରି ତା'ର ଚାରି ପାଖରେ ଘେରି ଗୀତ ଗାଉଥିଲେ :

ଆଜି ଆମ କ୍ଷେତେ
ଫସଲ କଟା
ଭଗବାନଙ୍କର ବଡ଼ କରୁଣା,
ଗୋଟିଏ କ୍ଷେତରୁ ଫସଲ କାଟିଛୁ ।
ଅନ୍ୟ କ୍ଷେତ କରିଛୁ ଗ୍ରାସ
ଭଗବାନଙ୍କର ବଡ଼ କରୁଣା

ମନ୍ତ୍ର ଭଳି ଏହି ବନ୍ଦନାଟି ବାରମ୍ବାର ଆବୃତ୍ତି କଲା ସମୟରେ ସଂଧ୍ୟା ବେଳେ ଗାଁରେ ଝିଅ ପୁଅମାନେ ଯେଉଁସବୁ ଆନନ୍ଦଭରା ଗୀତ ଗାଆନ୍ତି ଖୁବ୍ ହୃଏତ ମଧୁର ଶୁଣା ଯାଏନା ।

"ଫସଲ କଟା" ହେଉଛି ଏକ ପ୍ରାଚୀନ ଉତ୍ସବ । ଏହା ସେଇ ପ୍ରଥମ ଋଷ ଯୁଗରୁ ହଜାର ହଜାର ବର୍ଷ ଧରି ଋଲି ଆସିଛି । ଖେଳ ଏବଂ ଗୀତ ଆକାରରେ ଏହି ଭଳି ଅନେକ ପ୍ରଥା ପ୍ରଚଳିତ ହୋଇ ଆସିଛି ବହୁ ଦିନରୁ ।

ପିଲମାନେ ହାତରେ ହାତ ଛନ୍ଦି ଗାଉଥିଲେ :

ହେଇରେ ଆମେ ବୁଣିଲୁ ଭୁଟା
ଭୁଟାରେ ଭୁଟା
ହେଇରେ ଆମେ ବୁଣିଲୁ ଭୁଟା
ହଁରେ ଆମେ ବୁଣିଲୁ ।

ଏହି ଖେଳ ଗୀତଟି ମଧ୍ୟ ଏକ ପୌରାଣିକ ପ୍ରଥା । ହଜାର ହଜାର ବର୍ଷ ମଧ୍ୟରେ ତା ପଛରେ ଥିବା ଜାଦୁକରୀ କଥାଟାକୁ ଭୁଲି ଗଲେଣି । କେବଳ ଆନନ୍ଦର କଥାଟା ମନେ ରହିଯାଇଛି ।

ସେ ଫାର ଗଛ ସଂପର୍କରେ ତମେ ଜାଣିଛ ! ସେଟା ମଧ୍ୟ ଦିନେ ପବିତ୍ର ଗଛ ଥିଲା । ଲୋକେ ତା'ର ଋରି ପାଖରେ ନାଚୁଥିଲେ, କାରଣ ସେମାନେ ଭାବୁଥିଲେ, ସେମାନଙ୍କର ଏହି ଜାଦୁକରୀ ଅଙ୍ଗଭଙ୍ଗୀ ଦ୍ୱାରା ସୁପ୍ତ ବଣ ଏବଂ କ୍ଷେତ ପୁଣି ଜାଗି ଉଠିବ ଏବଂ ଶୀତ ପରେ ବସନ୍ତକୁ ଫେରେଇ ଆଣିବ ।

ନବ ବର୍ଷ ବେଳେ ପିଲମାନେ ନବ ବର୍ଷ ଗଛରେ ଗହଣା ବାନ୍ଧି ସଜେଇବାକୁ ଭଲ ପାଆନ୍ତି । କିନ୍ତୁ ତୁମେ ଯଦି ସେମାନଙ୍କୁ କହିବ ଫାର ଗଛ ହେଉଛି ପବିତ୍ର ଗଛ, ସେମାନେ ହସିବେ । ସେମାନଙ୍କ ପକ୍ଷରେ ସେଟା ହେଉଛି ଶୀତ ଋତୁ ମଝିରେ ଏବଂ ମାସ ମାସ ଧରି ପାଠ ପଢ଼ା ପରେ ଏକ ଆନନ୍ଦଭରା ଉତ୍ସବର ପ୍ରତୀକ ।

ପିଲମାନଙ୍କର ଖେଳ ଏବଂ ଗୀତରେ ବହୁ ପ୍ରାଚୀନ ପ୍ରଥା ଏବଂ ଗୁଣି ଗାରୁଡ଼ିର ପ୍ରଭାବ ଏବେ ମଧ୍ୟ ରହି ଯାଇଛି ।

ବର୍ଷାରେ ବର୍ଷା ଯାଆତୁ ଛାଡ଼ି
ପୁଣି ଆ ତୁ ଆଜିକ ଛାଡ଼ି !

ପିଲମାନେ ଯେତେବେଳେ ଏହିସବୁ ଗୀତ ଗାଆନ୍ତି, ତା ଅର୍ଥ ନୁହେଁ ଯେ, ବର୍ଷା ତୁ ଛାଡ଼ି ଯାଆ ବା ମେଘସବୁ ଆକାଶରେ ମିଳେଇ ଯାଆ । ସେମାନଙ୍କ

କଥାରେ ମେଘର କିଛି ହବ ନାହିଁ ବୋଲି ସେମାନଙ୍କୁ ଭଲ କି ଜଣା । ଏଭଳି ଗୀତ ଗାଇବାଟା ସେମାନଙ୍କୁ ଆନନ୍ଦ ଲଗେ ।

ବୟସମାନେ ମଧ୍ୟ ଏଭଳି ଅନେକ ଗୀତ ଗାଆନ୍ତି ଏବଂ ଖେଳ ଖେଳନ୍ତି ଯା'ର ଏକଦା ସଂପୂର୍ଣ୍ଣ ଭିନ୍ନ ଅର୍ଥ ଥିଲ ।

ଏହି ଭାବେ ଆନନ୍ଦ ପ୍ରମୋଦ ଭରା ଖେଳଗୁଡ଼ିକ ମଧ୍ୟ ଦେଇ ପ୍ରାଚୀନ କାଳର ବିଶ୍ୱାସ ଏବଂ ଯାଦୁକରୀ ପୂଜା କର୍ମର ଚିହ୍ନ ଆମ ଯୁଗ ପର୍ଯ୍ୟନ୍ତ ଗ୍ଲଲି ଆସିଛି ।

କେବଳ ଖେଳରେ ଅବଶ୍ୟ ନୁହେଁ, ଅନ୍ୟ ଜିନିଷରେ ମଧ୍ୟ ସେସବୁର ଚିହ୍ନ ଦେଖିବାକୁ ମିଳେ ।

ଗିର୍ଜାରେ ଯେତେବେଳେ ଇଷ୍ଟର ପର୍ବ ପାଳିତ ହୁଏ, ପ୍ରାର୍ଥନାକାରୀମାନଙ୍କ କଥାରେ ପ୍ରାଚୀନ ଯାଦୁକରୀ ଗୀତର ପ୍ରଭାବ ଫୁଟି ଉଠେ ।

ପ୍ରାଗୈତିହାସିକ ଗ୍ଷୀଙ୍କ ଗୀତ ଭଳି ଏହିସବୁ ପ୍ରାର୍ଥନାରେ ମୃତ୍ୟୁ ଏବଂ ପୁନର୍ଜନ୍ମ କଥା ଥାଏ ।

ବାହାର ଦୁନିଆ ପାଇଁ ଯେଉଁସବୁ କଥା ଖେଳ ଏବଂ ନୃତ୍ୟରେ ପରିଣତ ହୋଇ ଗଲଣି, ସେସବୁ ଏବେ ବି ଗିର୍ଜା ଆଉ ମନ୍ଦିରରେ ପବିତ୍ର ମନ୍ତ୍ର ପାଠ ହୋଇ ରହିଛି ।

ପ୍ରାଚୀନ ଯୁଗରୁ ବହୁ ଅନ୍ଧ ବିଶ୍ୱାସ ଏବଂ କୁସଂସ୍କାର ଗ୍ଲଲି ଆସିଛି ଆମ ଯୁଗକୁ ।

ଆଜିକାଲି ଅନେକ ଲେକ ଅଛନ୍ତି, ଯେଉଁମାନେ ଘୋଡ଼ା ଗୋଡ଼ର ନାଲ ଦେଖିଲେ ସେମାନଙ୍କର ଶୁଭ ହେବ ବୋଲି ଏବଂ ଦ୍ୱିତୀୟାର ଜହ୍ନକୁ ବାଆଁ କାନ୍ଧ ଉପରେ ଦେଖିଲେ ଅଶୁଭ ହେବ ବୋଲି ବିଶ୍ୱାସ କରନ୍ତି ।

ଉଗ୍‌ଲିଚ୍‌ର ଏକ କୋଠଖମାରର ଜଣେ ସ୍ତ୍ରୀଲେକ ଆମକୁ କହୁଥିଲେ, ବିପ୍ଳବ ପୂର୍ବରୁ ଗାଁର ସ୍ତ୍ରୀଲେକମାନେ ସେମାନଙ୍କ କୁକୁଡ଼ା ଭାଡ଼ି ଉପରେ ଏକ "କୁକୁଡ଼ା ଦେବତା" ଟାଙ୍ଗି ଦେଉଥିଲେ ।

"କୁକୁଡ଼ା ଦେବତାଟି" ପଥରରେ ତିଆରି, ମଝିରେ ତା'ର ଗୋଟାଏ କଣାଥାଏ । କୁକୁଡ଼ା ଭାଡ଼ି ଉପରେ ତାକୁ ଟାଙ୍ଗିଲେ ମାଈ କୁକୁଡ଼ାମାନେ ବେଶି ଅଣ୍ଡା ଦେବେ ବୋଲି ସେମାନେ ବିଶ୍ୱାସ କରୁଥିଲେ ।

ଏହି ଭାବେ ଅନ୍ଧ ବିଶ୍ୱାସ ସବୁ ଶହ ଶହ ବର୍ଷ ଧରି ଗ୍ଲଲି ଆସିଥାଏ । ପଥରର "କୁକୁଡ଼ା ଦେବତାଟି" ହେଉଛି ସେଇ ପଥର ଯୁଗର ଏକ ପ୍ରଥା । ବିଂଶ ଶତାବ୍ଦୀର ପ୍ରାରମ୍ଭ ପର୍ଯ୍ୟନ୍ତ ଏହା ପ୍ରଚଳିତ ଥିଲ ।

# ଆଶ୍ଚର୍ଯ୍ୟଜନକ ଭଣ୍ଡାର ।

ସ୍ତ୍ରୀଲୋକମାନେ କୋଦାଳରେ ମାଟିକୁ ହାଣିଲା ବେଳେ ପୁରୁଷମାନେ ହାତ ଗୋଡ଼ ଜାକି ବସି ରହୁ ନଥିଲେ । ସେମାନେ ଦିନ ସାରା ଶିକାର ପଛରେ ବ୍ୟସ୍ତ ରହୁଥିଲେ ଏବଂ ସଂଜ ହେଲେ କ୍ଳାନ୍ତ ପାଦରେ ସେମାନଙ୍କ ପାରିତୋଷିକ ଧରି ଘରକୁ ଫେରୁଥିଲେ ।

ପିଲମାନେ ଯେତେବେଳେ ଦୂରରୁ ଦେଖନ୍ତି, ସେମାନଙ୍କ ବଡ଼ ଭାଇ ଏବଂ ବାପାମାନେ ଶିକାରରୁ ଫେରୁଛନ୍ତି, ସେମାନେ ଦୌଡ଼ି ଯାଉଥିଲେ ସେମାନଙ୍କ ନିକଟକୁ । ସେମାନେ ଜାଣିବାକୁ ଚାହୁଁଥିଲେ ଶିକାର ମିଳିଛି କି ନାହିଁ । ରକ୍ତାକ୍ତ ବଣ ଘୁଷୁରିର ମୁହଁରୁ ବାହାରି ଥିବା ବଙ୍କା ଦାନ୍ତ ଥିବା ମୁଣ୍ଡ କିମ୍ବା ହରିଣର କେନାବାଲ ଶିଙ୍ଗକୁ ଦେଖିବା ପାଇଁ ସେମାନେ ବଡ଼ ବ୍ୟଗ୍ର । କିନ୍ତୁ ସେମାନେ ସବୁଠୁ ବେଶି ଖୁସି ହେଉଥିଲେ ଯଦି ଶିକାରୀମାନେ ଜୀବନ୍ତ ପଶୁ ଧରି ଫେରିଥାନ୍ତି । ଜୁନି ଭୟାଳୁ ମେଣ୍ଢାଛୁଆଟିଏ ବା ଅସହାୟ ଶିଙ୍ଗହୀନ ବାଛୁରୀଟିଏ ଦେଖିଲେ ସେମାନଙ୍କୁ ବଡ଼ ମଜା ଲାଗୁଥିଲା ।

ଶିକାରୀମାନେ ସେମାନଙ୍କ ଘରିଗୋଡ଼ିଆ ଶିକାରକୁ ସବୁବେଳେ ମାରି ଦିଅନ୍ତି ନାହିଁ । ଖୁଆଡ଼ ଭିତରେ ସେମାନଙ୍କୁ ରଖି ଖାଇବା ପିଇବାକୁ ଦେଇ ସେମାନଙ୍କୁ ବଢ଼ାନ୍ତି । ଘର ପାଖରେ ବାଛୁରୀଟିଏ ବୋବାଇଲେ ବା ମେଣ୍ଢାଛୁଆଟିଏ ମେଁ ମେଁ ହେଲେ ସେମାନଙ୍କୁ ଖୁବ୍ ଭଲ ଲାଗେ । ସେମାନେ ଭାବନ୍ତି, ଆଗାମୀ ଥର ଶିକାରରୁ ଖାଲି ହାତରେ ଫେରିଲେ ସେମାନଙ୍କୁ ଉପାସ ରହିବାକୁ ପଡ଼ିବ ନାହିଁ । ଖୁଆଡ଼ ମଧ୍ୟରେ ସେମାନଙ୍କ ମହଜୁଦ୍ ଜିନିଷ ବଢ଼ୁଛି ଏବଂ ସେଟା ଏମିତି ଏକ ଜିନିଷ ଯେ, ନିଜେ ବଢ଼ିବା ସଙ୍ଗେ ସଙ୍ଗେ ନିଜର ସଂଖ୍ୟା ମଧ୍ୟ ବୃଦ୍ଧି କରିଥାଏ ।

ପ୍ରଥମେ ଲୋକେ ମାଂସ ଏବଂ ଚମଡ଼ା ପାଇବା ପାଇଁ ଗୋରୁ ମେଣ୍ଢା ପାଳିଥିଲେ । ସେମାନଙ୍କୁ ଜଣା ନଥିଲା, ଗୋରୁ ଗାଈ ପାଳିବାଟା ଏତେ ଲାଭଜନକ ବୋଲି । ଶିକାରୀମାନେ ପ୍ରଥମେ ଏହି ଖୁରାବାଲା ଜନ୍ତୁଙ୍କୁ ଶିକାର ବୋଲି ଭାବି ମାରି ଦେଉଥିଲେ । ଗାଈ ଏବଂ ମେଣ୍ଢାଙ୍କୁ ମାରି ନଦେଇ ଜୀବନ୍ତ ରଖିଲେ ଅଧିକ ଲାଭ ହୁଏ, ଏହି କଥାଟା ଜାଣିବା ସେମାନଙ୍କ ପକ୍ଷରେ ସହଜ ନଥିଲା ।

ଗୋରୁକୁ ମାରି ଦେଲେ ଥରକରେ ଖାଇ ଦେଇ ହେବ, କିନ୍ତୁ ବଞ୍ଚେଇ ରଖିଲେ ଅନେକ ବର୍ଷ ପର୍ଯ୍ୟନ୍ତ ତା'ର ଦୁଧକୁ ପିଇ ହୁଏ । ତା'ଛଡ଼ା ଗାଈ ବଞ୍ଚିଥିଲେ ପ୍ରତିବର୍ଷ ସେ ବାଛୁରୀ ଜନ୍ମ କରିବ ଏବଂ ବାଛୁରୀ ଜନ୍ମ ହେବା ମାନେ ଅଧିକ ମାଂସ ମିଳିବ ।

ମେଣ୍ଢାମାନଙ୍କ କ୍ଷେତ୍ରରେ ମଧ୍ୟ ତଦ୍ରୂପ । ମଲମେଣ୍ଢାର ଚମଡ଼ା ଉତାରିବାଟା କଷ୍ଟକର କଥା ନୁହଁ । କିନ୍ତୁ ଗୋଟାଏ ମେଣ୍ଢା ଚମଡ଼ାରେ ତ ବେଶି କାମ ହୋଇ ପାରିବ ନାହିଁ । ତେଣୁ ମେଣ୍ଢାକୁ ମାରି ତା ଦେହରୁ ତା ଚମଡ଼ାକୁ ନଛାଲିକି ଯଦି ରଖାଯାଏ ଏବଂ ସେଥିରୁ ଲୋମ କାଟି ବ୍ୟବହାର କରାଯାଏ ଆହୁରି ଅଧିକ ଲାଭ ହେବ । କାରଣ, ଥରେ ଲୋମ କାଟି ନେଲା ପରେ ପୁଣି ତାହା ବଢ଼ିବାକୁ ଲାଗେ । ଗୋଟାଏ ମେଣ୍ଢା ଚମଡ଼ାରେ ହୁଏତ ଗୋଟାଏ କୋଟ୍ ହେବ, କିନ୍ତୁ ମେଣ୍ଢା ଲୋମକୁ ଥରକ ପରେ ଥରେ କାଟିଲେ ସେଥିରୁ ତ ଅନେକ କୋଟ୍ ହୋଇ ପାରିବ ।

ତେଣୁ ଘରିଗୋଡ଼ିଆ ବନ୍ଦୀମାନଙ୍କୁ ନମାରି ଜୀବନ୍ତ ରଖା ଗଲା ଏବଂ ତା'ର ବଦଳରେ ସେମାନଙ୍କଠାରୁ ଏକ ମାସୁଲ ମିଳିଲା ।

ମଣିଷ ନିଜର ଇଚ୍ଛା ଅନୁଯାୟୀ ଗୋରୁ, ମେଣ୍ଢା ଏବଂ ଘୋଡ଼ାକୁ ଧରି ଆଣି ଘରେ ପାଳି ଥିଲା । ସେମାନଙ୍କୁ ଆଶ୍ରୟ ଦେଇ ଶୀତରୁ ରକ୍ଷା କରିବା କଥା ସେ ଭାବିଥିଲା । କିନ୍ତୁ ତା ବଦଳରେ ଗୋରୁକୁ ପୂର୍ବ ଅପେକ୍ଷା ଅଧିକ ଦୁଧ ଦେବାକୁ ପଡ଼ିଲା । କାରଣ ତାକୁ କେବଳ ତା ବାଛୁରୀକୁ ଦୁଧ ପିଆଇବାକୁ ହେବ ନାହିଁ, ତା ମୁନିବକୁ ମଧ୍ୟ ଦୁଧ ଖୁଆଇବାକୁ ହେବ । ସମୟ କ୍ରମେ ଘୋଡ଼ା ମଧ୍ୟ ଓଜନିଆ ବୋଝ ବହିବାକୁ ଶିଖି ନେଲା । ମେଣ୍ଢାର ମଧ୍ୟ ତା ନିଜ ପାଇଁ ଏବଂ ତା'ର ପ୍ରଭୁ ପାଇଁ ଅନେକ ଲୋମ ହୋଇଗଲା ।

ଯେଉଁସବୁ ଗାଈ ଅଧିକ ଦୁଧ ଦେଉଥିଲେ, ଯେଉଁସବୁ ଘୋଡ଼ା ବେଶି ବଳବାନ ଥିଲେ ଏବଂ ଯେଉଁସବୁ ମେଣ୍ଢାଙ୍କ ଲୋମ ବେଶି ଲମ୍ବା ଥିଲା, ସେଇମାନଙ୍କୁ ଲୋକେ ପାଳିଲେ । ଏହା ଦ୍ୱାରା ଗୃହପାଳିତ ପଶୁଙ୍କର ନୂଆ ବଂଶ ସୃଷ୍ଟି ହେଲା ।

ଲୋକେ ଅବଶ୍ୟ ରାତାରାତି ଏ କଥା କରି ପକାଇ ନଥିଲେ । ଶିକାରୀକୁ ପଶୁପାଳକ ହେବା ପାଇଁ ଶହ ଶହ ବର୍ଷ ଲାଗି ଯାଇଥିଲା ।

ଶେଷକୁ ତା ହେଲେ କ'ଣ ହେଲା ?

ଲୋକେ ଏକ ଆଶ୍ଚର୍ଯ୍ୟଜନକ ଭଣ୍ଡାର ଘର ଆବିଷ୍କାର କଲେ । ପୃଥିବୀ ପୃଷ୍ଠରୁ ମିଳୁଥିବା ଶସ୍ୟକୁ ସାଇତିଲେ, ନିଜେ ଶସ୍ୟ ଗଛ ଲଗେଇ ସେଥିରୁ ଅଧିକ ଶସ୍ୟ ଆମଦାନି କଲେ ।

ସେମାନେ ଯେଉଁସବୁ ଜୀବଜନ୍ତୁଙ୍କୁ ଧରୁଥିଲେ, ସେଥିରୁ ସମସ୍ତଙ୍କୁ ମାରିଲେ ନାହିଁ । ସେମାନଙ୍କୁ ରଖି ବଢ଼ାଇଲେ ଏବଂ ସେମାନଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା ।

ମଣିଷ କ୍ରମଶଃ ଅଧିକ ସ୍ୱାଧୀନ ହେଲା, ପ୍ରକୃତି ଉପରେ ବେଶି ନିର୍ଭର କଲା ନାହିଁ । ପୂର୍ବେ ସେ ଜାଣି ନଥିଲା ପଶୁ ପଛରେ ଧାଇଁ ଧାଇଁ ତାକୁ ମାରିବାକୁ



ପ୍ରାଚୀନ ପ୍ରଥା ଅନୁଯାୟୀ, ମିଶରର ବାସିନ୍ଦା ଦେବତାମାନଙ୍କ ଶରୀରକୁ ମନୁଷ୍ୟ ଓ ମୁଣ୍ଡ ପଶୁପକ୍ଷୀଙ୍କ ଆକାର ଦେଇ ଆଙ୍କୁଥିଲେ ।

ହୁଏ । ଶସ୍ୟରେ ତା'ର ଟୋକେଇକୁ ଭରିଲା ଭଳି ତାକୁ ଶସ୍ୟ ମିଳିବ କି ନାହିଁ ବୋଲି ତାକୁ ମଧ୍ୟ ଜଣାନଥିଲା । ପ୍ରକୃତିର ଅଜ୍ଞାତ ରହସ୍ୟମୟ ଶକ୍ତିମାନେ ତା ପାଇଁ ଖାଦ୍ୟ ଦେବେ କି ନାହିଁ ବୋଲି ସେ ଜାଣି ପାରୁ ନଥିଲା । ଏଥର ମଣିଷ ଶିଖିଲା ପ୍ରକୃତିକୁ କେମିତି ସାହାଯ୍ୟ କରିବାକୁ ହୁଏ – ସେ ନିଜ ଶସ୍ୟ ଫଳେଇଲା ଏବଂ ନିଜର ଗୋରୁ ମେଣ୍ଢାକୁ ପାଳିଲା । ସ୍ତ୍ରୀଲୋକମାନଙ୍କୁ ଆଉ ଜଙ୍ଗଲକୁ ଯିବାକୁ ପଡ଼ିଲା ନାହିଁ ବଣୁଆ ଶସ୍ୟ ଗଛ ସଂଗ୍ରହ କରିବାକୁ । ଶିକାରୀମାନେ ବି ଦିନ ସାରା ଜଙ୍ଗଲରେ ଶିକାର ଅନ୍ୱେଷଣରେ ଏବଂ ସେମାନଙ୍କ ପଛେ ପଛେ ଧାଇଁବାରେ ବିତେଇଲେ ନାହିଁ ।

ଏଥର ଶସ୍ୟ କେଣ୍ଡାସବୁ ଘର ନିକଟରେ ପବନରେ ଦୋହଲିବାକୁ ଲାଗିଲେ ଏବଂ ଗାଈ ମେଣ୍ଢାସବୁ ପାଖ ପଡ଼ିଆରେ ଚରିଲେ ।

ମଣିଷ ଆବିଷ୍କାର କଲା ଏକ ବିଚିତ୍ର ଭଣ୍ଡାର । ଅଥବା, ଏ କଥା କହିଲେ ଆହୁରି ଠିକ୍ ହେବ ଯେ, ହଠାତ୍ ସେଟାକୁ ସେ ପାଇ ଯାଇ ନଥିଲା, ତା'ର ଶ୍ରମ ଦେଇ ସେ ତିଆରି କରିଥିଲା ।

ତା'ର କ୍ଷେତ ଏବଂ ଚାରଣ ଭୂଇଁ ପାଇଁ ଦରକାର ପଡ଼ିଥିଲା ଜମି । ଜମିସବୁ ତ ଥିଲା ଜଙ୍ଗଲ ହାତରେ । ତେଣୁ ଜଙ୍ଗଲକୁ କାଟିବାକୁ ହେବ ଏବଂ ବିହନ ବୁଣିବା

ଆଗରୁ ଜମିକୁ ଚାଷ କରିବାକୁ ହେବ । ସେ ଯେ କେତେ କଷ୍ଟକର, ତମେ ଭାବି ପାରୁଛତ !

ମଣିଷ ମୁକ୍ତି ଆଡ଼କୁ ଆଗେଇଲା ଏବଂ ପ୍ରକୃତିଠାରୁ ନିଜକୁ ସ୍ୱାଧୀନ କଲା – ଏଟା ସ୍ଥିରିଗଲା ଭଳି ସହଜ ନଥିଲା । ହଜାର ହଜାର ବାଧା ବିପଦକୁ ଅତିକ୍ରମ କରି ତାକୁ ଏସବୁ ହାସଲ କରିବାକୁ ପଡ଼ିଛି । ତା'ର ଏହି ନୂତନ କର୍ମୋଦ୍ୟମ – ଚାଷ ମଧ୍ୟରେ ଯେପରି ଆନନ୍ଦ ଥିଲା ସେପରି ଦୁଃଖ ମଧ୍ୟ ଥିଲା । ବେଶି ଖରା ହେଲେ ତୃଣ-ଭୂମିର ସବୁଜ ଘାସ ପୋଡ଼ି ଯାଇ ପାରେ, ଅତି ବୃଷ୍ଟି ହେଲେ ବିହନ ଧୋଇ ପାରେ ।

ଆଦିମ ଶିକାରୀ ବାଇସନ୍ ବା ଭାଲୁକୁ ପ୍ରାର୍ଥନା କରୁଥିଲା, ତାକୁ ମାଂସ ଦେବା ପାଇଁ । ଆଦିମ ଚାଷୀ, ପୁଣି ପୃଥିବୀ, ସୂର୍ଯ୍ୟ ଏବଂ ବରୁଣକୁ ପ୍ରାର୍ଥନା କଲା ଭଲ ଫସଲ ହେବା ପାଇଁ ।

ଲୋକେ ମଧ୍ୟ ନୂଆ ଦେବତାସବୁ ସୃଷ୍ଟି କଲେ । ସେସବୁ ଦେବତା ଥିଲେ ସେମାନଙ୍କ ପୂର୍ବବର୍ତ୍ତୀ ଦେବତାମାନଙ୍କ ଭଳି । ପ୍ରଥା ଅନୁଯାୟୀ ସେମାନଙ୍କ ରୂପ ପଶୁ ପରି ବା ପଶୁ ମୁଣ୍ଡ ଥିବା ମଣିଷ ପରି ହେଲା । କିନ୍ତୁ ଏହିସବୁ ଜୀବମାନଙ୍କର (ଦେବତାମାନଙ୍କର) ନାମକରଣ ହୋଇଥିଲା ଏବଂ ସେମାନଙ୍କର ଉଦ୍ଦେଶ୍ୟ ଥିଲା ନୂଆ ।

ସେମାନଙ୍କ ମଧ୍ୟରୁ ଜଣକର ନାମ ଆକାଶ, ଆଉ ଜଣଙ୍କର ନାମ ସୂର୍ଯ୍ୟ, ଆଉ ଜଣେ ପୃଥିବୀ । ଏହିମାନେ ହିଁ ଆଲୋକ ଏବଂ ଅନ୍ଧକାର, ବର୍ଷା ଏବଂ ମରୁଡ଼ି ସୃଷ୍ଟି କରନ୍ତି ।

ଆମର ମହାବଳୀ ମଣିଷ ଆହୁରି ବଳଶାଳୀ ହେବାକୁ ଲାଗିଥାଏ, କିନ୍ତୁ ସେ ତା'ର ନିଜ ଶକ୍ତି ସଂପର୍କରେ ସଚେତନ ନଥିଲା । ଆଗ ଭଳି ସେବେ ବି ସେ ମନେ କରୁଥିଲା ତା'ର ଦୈନନ୍ଦିନ ଖାଦ୍ୟପେୟ ହେଉଛି ଆକାଶର ଅବଦାନ, ତା'ର ନିଜ ଶ୍ରମର ଫଳ ନୁହେଁ ।

# ନବମ ଅଧ୍ୟାୟ

## ହଜାର ହଜାର ବର୍ଷ ପରେ ।

ମନେ କର, ଆମେମାନେ ଇତିମଧ୍ୟରେ ଅନେକ ହଜାର ବର୍ଷ ପାରି ହୋଇ ଆସିଲେଣି । ତାହେଲେ ଆମେ ଯେଉଁ ଜାଗାରେ ଆସି ପହଞ୍ଚିଛେ, ତାଠାରୁ ଆଧୁନିକ ଯୁଗର ତଫାତ୍‌ଟା ହେବ ମାତ୍ର ପାଞ୍ଚ ହଜାର ବର୍ଷ ।

ପାଞ୍ଚ ହଜାର ବର୍ଷ ! ସେ କ'ଣ କମ୍ ସମୟ । କୌଣସି ଲୋକର ଜୀବନ କିମ୍ବା କୌଣସି ଜାତିର ଇତିହାସ ସହିତ ତୁଳନା କଲେ ଏହା ଅନେକ ଦୀର୍ଘ । କିନ୍ତୁ ଏଠାରେ ଆମେ କୌଣସି ଏକ ମଣିଷ ସଂପର୍କରେ କହୁନେ, ସମଗ୍ର ମଣିଷ ସମାଜ ବିଷୟରେ ଆମେ ଆଲୋଚନା କରୁଛେ ।

ମଣିଷ ସମାଜର ବୟସ ଏବେ ପ୍ରାୟ ଦଶ ଲକ୍ଷ ବର୍ଷ । ତେଣୁ ପାଞ୍ଚ ହଜାର ବର୍ଷ ଏମିତି କେତେ ବା ବେଶି ।

ଇତିମଧ୍ୟରେ ଆମେ ଅନେକ ବର୍ଷ ପାରି ହୋଇ ଆସିଛେ । ସୂର୍ଯ୍ୟ ଘରି ପାଖରେ ପୃଥିବୀ କେଇ ହଜାର ଥର ପରିକ୍ରମା କରି ପାରିଛି । ଏହି ସମୟ କାଳ ମଧ୍ୟରେ ଏ ବସୁଧାର କି ପରିବର୍ତ୍ତନ ଘଟିଛି ଦେଖିବା କଥା । ତାକୁ ଅନେଇଲେ ମନେ ହୁଏ ତା'ର ଉପରିଭାଗ ଯେମିତି ଆହୁରି ଚନ୍ଦା ହୋଇ ଯାଇଛି ।

ସମୟ ଥିଲା, ଯେତେବେଳେ ତା'ର ସଫେଦ ତୁଷାର ଟୋପିର ଘରିପାଖରେ ଘଞ୍ଚ ସବୁଜ ବନାନୀ ଭରି ରହିଥିଲା । ଏବେ ଜଙ୍ଗଲସବୁ ପତଳା ହୋଇ ଆସିଲେଣି ଏବଂ ବିସ୍ତୃତ ତୃଣଭୂମିସବୁ ସେସବୁ ମଧ୍ୟକୁ ପଶି ଗଲେଣି । ତାଛଡ଼ା ଅନେକ ସ୍ଥାନରେ ମଣିଷ ଜଙ୍ଗଲକୁ କାଟି ପଛକୁ ହଟେଇ ଦେଇଛି । ନଦୀ ଏବଂ ହ୍ରଦ ନିକଟରେ ଜଙ୍ଗଲ ମଧ୍ୟ ପଛକୁ ହଟି ଯାଇ ନଳ କାଣ୍ଡଶର ଏବଂ ଘାସ ବୁଦା ଆଦି ପାଇଁ ଜାଗା ଛାଡ଼ି ଦେଇଛି ।

କିନ୍ତୁ ନଈ ବାଙ୍କମାନଙ୍କର ପାହାଡ଼ ଦେହରେ ସେସବୁ କ'ଣ ? ଦେଖିଲେ ମନେ ହେଉଛି, ପାହାଡ଼ର ଢାଲୁ ଉପରେ କିଏ ଯେମିତି ହଳଦିଆ ଘଦରଟାଏ ବିଛେଇ ଦେଇଛି... ।

ମଣିଷ ହାତରେ ମଜାଏ ପୃଥିବୀ ସେଠି ବଦଳି ଯାଇଛି । ସୁନେଲୀ ଶସ୍ୟ

କେଣ୍ଡାଗୁଡ଼ିକ ମଝିରେ ଫୁଟି ଉଠିଛି ସ୍ତ୍ରୀଲୋକମାନଙ୍କ ବଙ୍କା ବଙ୍କା ପିଠିସବୁ । ସେମାନଙ୍କ ଦାଆଗୁଡ଼ିକ ଚର ଚର କରି ଶସ୍ୟ କାଟି ଚାଲିଛି ।

ହଜାର ହଜାର ବର୍ଷ ପୂର୍ବେ ଆମେ ପ୍ରଥମେ ହାତୁଡ଼ି ଦେଖିଥିଲେ, ଏଥରକ ପ୍ରଥମ କରି ଦେଖିଲେ ଦାଆ । ଆଜିକାଲିକା ଦାଆ ଭଳି ସେ ଦାଆ ନୁହେଁ । ସେଟା ପଥର ଆଉ କାଠରେ ତିଆରି – କାଠ ବେଣ୍ଟ ଦେହରେ ପଥରର କାତିକୁ ଲଗେଇ ଦିଆଯାଇଛି ।

ଏ ଯେଉଁ ଶସ୍ୟ କ୍ଷେତ ପାହାଡ଼ର ଢାଲୁ ଉପରେ ଦେଖିଲେ ସେ ହେଉଛି ପୃଥିବୀର ସର୍ବପ୍ରଥମ କ୍ଷେତଗୁଡ଼ିକ ମଧ୍ୟରୁ ଅନ୍ୟତମ । ପୃଥିବୀ ସେତେବେଳେ ମଧ୍ୟ ଏକ ବିଶାଳ ଜଙ୍ଗଲ ପରି ଥିଲା ଏବଂ ସେହି ବିଶାଳ ଜଙ୍ଗଲ ମଧ୍ୟରେ ମାତ୍ର କେଇ ଖଣ୍ଡ ଭୂମାଳ ଭଳି ଏହିସବୁ କ୍ଷେତ ଶୋଭା ପାଉଥିଲା ।

ବିଲରେ ଜଙ୍ଗଲିଆ ଘାସସବୁ ଏତେ ବଢ଼ୁଥିଲେ ଯେ, ଶସ୍ୟ କେଣ୍ଡା ସବୁ ନିଶ୍ୱାସ ନେଇ ପାରୁ ନଥିଲେ । ଲୋକେ ସେପର୍ଯ୍ୟନ୍ତ ଜାଣି ନଥିଲେ ସେସବୁ ସହିତ କେମିତି ଲଢ଼ିବାକୁ ହେବ । ଶେଷରେ ଶସ୍ୟ ଗଛଗୁଡ଼ିକ ଜିତିଥିଲେ । ଏଭଳି ଦିନ ଆସିଲା, ଯେତେବେଳେ ହଳଦିଆ କ୍ଷେତସବୁ ଏକ ସୁନାର ମହାସାଗର ଭଳି ପୃଥିବୀକୁ ଢାଙ୍କି ପକାଇଲା ।

ଦୂରରେ ନଦୀ କୂଳବର୍ତ୍ତୀ ଖାଗୁଆ ଘାସ ପଡ଼ିଆରେ ଛୋଟ ଛୋଟ ଧଳା, ଲାଲ ଆଉ ହଳଦିଆ ମୂର୍ତ୍ତିସବୁ ଦିଶୁଛନ୍ତି । ବେଳେ ସେମାନେ ଯୋଡ଼ି ହୋଇ ଯାଉଛନ୍ତି, ଆଉ କେତେବେଳେ ଛାଡ଼ ଛାଡ଼ ହୋଇ ଯାଉଛନ୍ତି ।

ସେସବୁ ମଧ୍ୟରୁ କେତେକ ଛୋଟ ଛୋଟ ତ ଆଉ କେତେକ ବଡ଼ ବଡ଼ ଦିଶୁଛନ୍ତି । ହଁ, ସେସବୁ ହେଉଛନ୍ତି ଗୋରୁ, ଛେଳି ଆଉ ମେଣ୍ଢାପଲ । ସେପର୍ଯ୍ୟନ୍ତ ମଣିଷ ସେମାନଙ୍କୁ ବହୁ ସଂଖ୍ୟାରେ ପାଳି ପାରି ନଥିଲା । କିନ୍ତୁ ସେମାନେ ସେମାନଙ୍କର ଅନ୍ୟାନ୍ୟ ବଣୁଆ ଆତ୍ମୀୟମାନଙ୍କଠାରୁ ଦ୍ରୁତ ଭାବେ ସଂଖ୍ୟା ବୃଦ୍ଧି କରି ପାରୁଥିଲେ । ସେସବୁ ଜାତିମାନେ ନିଜର ଦାୟିତ୍ୱ ନିଜେ ବୁଝୁଥିଲା ବେଳେ, ଏମାନଙ୍କ ଦାୟିତ୍ୱ ମଣିଷ ନେଇଥିଲା ।

ଏହାର ଦୁଇ ତିନି ହଜାର ବର୍ଷ ପରେ ପୃଥିବୀରେ ଗୋରୁ ଗାଈଙ୍କ ଅପେକ୍ଷା ବଣ ମହିଷଙ୍କର ସଂଖ୍ୟା ଅନେକ କମି ଯାଇଥିଲା ।

କ୍ଷେତ ଏବଂ ପଶୁପଲ ପାଖକୁ ଥିଲା ମଣିଷର ବାସସ୍ଥଳୀ । ନଦୀ କୂଳବର୍ତ୍ତୀ ଉଚ୍ଚା ଜାଗାମାନଙ୍କରେ ସେଇସବୁ ବାସସ୍ଥଳୀ । ବର୍ତ୍ତମାନର ବାସସ୍ଥଳୀଗୁଡ଼ିକ, କିନ୍ତୁ ଗଛରେ ଡାଳ ପତ୍ରରେ ତିଆରି ପୂର୍ବର ସେଇ ଶିକାରୀମାନଙ୍କର କୁଡ଼ିଆ ସବୁ ନୁହେଁ । ପ୍ରକୃତରେ କାଠ ଘର, ତିନି କୋଣିଆ ଛାତ ସେଥିରେ ପଡ଼ିଛି । କାନ୍ଥରେ

ମାଟି ଲିପା ହୋଇଛି ଏବଂ ଦୁଆର ଉପରକୁ ଏକ ମଥାନ ବାହାରି ଦିଶୁଛି । ଦୁଆର ମୁହଁରେ ଖୋଦେଇ ହୋଇଛି ଗୋଟିଏ ଷଣ୍ଢର ମୁଣ୍ଡ । ସେ ହେଉଛି ଏ ଘରର ରକ୍ଷାକର୍ତ୍ତା । ସମଗ୍ର ବସତିଟିକୁ ଘେରି ଛିଡ଼ା ହୋଇଛି ଉଚ୍ଚ ବାଡ଼ ଆଉ ମାଟି ପାଚିରୀ ।

ଧୂଆଁ, ଗୋବର ଆଉ କଞ୍ଚା ଦୁଧର ଗନ୍ଧ ଘୂରି ଆସୁ ଉଠୁଛି ।

ପିଲାମାନେ ଘର ପାଖରେ ଖେଳୁଛନ୍ତି ଏବଂ ଘୁଷୁରି ପଲ ନିକଟବର୍ତ୍ତୀ କାଦୁଆ ପଙ୍କରେ ଖେଳୁଛନ୍ତି । ଖୋଲା ଦୁଆର ଦେଇ ବାହାରୁ ତମେ ଚୁଲୀରେ ଜଳୁଥିବା ନିଆଁକୁ ଦେଖି ପାରିବ । ବୁଢ଼ୀ ଜଣେ ବସି ରୁଟି ସେକିବାରେ ଲାଗିଛି । ଜଳନ୍ତା ପାଉଁଶ ଉପରକୁ ରୁଟି ଫୋପାଡ଼ି ଦେଇ ତା ଉପରେ ଘୋଡ଼ି ଧରୁଛି ଏକ ମାଟି ବାସନ । ସେଟା ହେଉଛି ତା'ର ଚୁଲୀ । ତା ପାଖକୁ ଲାଗି ଏକ ବେଞ୍ଚ ଉପରେ ଥୁଆ ହୋଇଛି କାଠର ଥାଳି ଆଉ ପିଆଲାସବୁ ।

ଏଥର ଗାଁକୁ ଛାଡ଼ି ଆସ ନଈକୁ ଯିବା । ନଈ କୂଳକୁ ଲାଗି ଅଗଭୀର ପାଣିରେ ଡଙ୍ଗାଟିଏ ଥୁଆ ହୋଇଛି । ଭିତରେ ତା'ର ପାଣି ପଥର ଖଣ୍ଡସବୁ । ସେଇ ନଦୀ ବାଟେ ଗଲେ, ତା'ର ଉତ୍ପତ୍ତି ସ୍ଥାନ ହ୍ରଦରେ ଯାଇ ପହଞ୍ଚିବା । ହ୍ରଦ କୂଳରେ ଆମେ ଦେଖିବାକୁ ପାଇବା ଆଉ ଗୋଟିଏ ଗାଁ । କିନ୍ତୁ ସେ ଗାଁଟି ସଂପୂର୍ଣ୍ଣ ଭିନ୍ନ ଧରଣର, ଦେଖିବାକୁ ଏକ ଦ୍ୱୀପ ଭଳି ।

ପ୍ରଥମତଃ, ହ୍ରଦ ଭିତରେ କାଠ ଖୁଣ୍ଟି ସବୁ ପୋତା ହୋଇ ତା ଉପରେ କାଠଗଡ଼ଗୁଡ଼ିକରେ ଆଡ଼ିବାନ୍ଧି କାଠପଟା ବିଛା ଯାଇଛି । ଦୂରରୁ ସେଟା ଦେଖା ଯାଉଛି ଏକ କାଠ ତିଆରି ଦ୍ୱୀପ ଭଳି । କୂଳ ସହିତ କାଠ ମଞ୍ଚାଟି ଯୁକ୍ତ ହୋଇଛି ଏକ କାଠ ତିଆରି ଭସା ପୋଲ ଦ୍ୱାରା । କାଠ ମଞ୍ଚା ଉପରେ ଶୁଖାଯାଇଛି ମାଛ ଧରା ଜାଲ ଆଉ ବନୀଶ ସବୁ । ହ୍ରଦଟାରେ ସମ୍ଭବତଃ ଅନେକ ମାଛ ରହନ୍ତି, କିନ୍ତୁ ଏଗାଁଟିରେ କେବଳ ଧୀବରମାନେ ରହନ୍ତି ନାହିଁ । ବାସ ଗୃହଗୁଡ଼ିକ ମଧ୍ୟରେ ଏଠି ସେଠି ଦେଖିବାକୁ ମିଳେ ଗୋଲିଆ ମୁଣ୍ଡବାଲା ଓଳିଆ ସବୁ । ସେସବୁ ଘାସକୁ ବେଣି କରି ତିଆରି ହୋଇଛି । ତା'ପରେ ଦେଖିବାକୁ ପାଇବ ଗୋରୁ ଗୁହାଳ ସବୁ ।

ଏହି ପ୍ରାଚୀନ ବସତିଟି ଆମ କଳ୍ପନାରେ ଖୁବ୍ ବାସ୍ତବ ଜଣାଯାଉଥିଲେ ମଧ୍ୟ ବହୁ ଦିନରୁ ଏହା ମିଶିଯାଇଛି ଧୂଳିରେ । ସେହି ସବୁ ଘରର ମଥାନ ଉପର ପର୍ଯ୍ୟନ୍ତ ପାଣି ମାଡ଼ି ଗଲାଣି । ତେଣୁ ହ୍ରଦର ତଳ ଦେଶରୁ ଏହିସବୁ ଘରର ଅବଶେଷାଂଶ ଆମେ କେମିତି ଉଦ୍ଧାର କରିବା ? ମନେ ହୁଏ ସେଟା ଅସମ୍ଭବ ବ୍ୟାପାର । କିନ୍ତୁ କେବେ କେବେ ହ୍ରଦ ମଧ୍ୟ ଦିଫାଲ ହୋଇ ଯାଇ ଶହ ଶହ ବର୍ଷ ଧରି ଲୁଗ୍ଇ ରଖିଥିବା ଗୋପନ ପେଡ଼ିକୁ ଖୋଲି ଦିଏ ।

## ହ୍ରଦ ଉପାଖ୍ୟାନ ।

୧୮୫୩ ମସିହାରେ ସୁଇଜରଲାଣ୍ଡର ଉପତ୍ୟକାରେ ପ୍ରବାହିତ ସମସ୍ତ ନଦୀ ନାଳ ଶୁଖିଗଲା ଏବଂ ହ୍ରଦ ସବୁର ପାଣି କମି ଆସିଲା ଏବଂ ପଙ୍କ ଦେଖାଗଲା । ଜୁରିଖ୍ ନାମକ ଏକ ହ୍ରଦ କୂଳରେ ଅବସ୍ଥିତ ଓବେରମିଲେନ୍ ସହରରେ ଲୋକେ ଏହି ଅନାବୃଷ୍ଟିର ସୁଯୋଗ ନେଇ ହ୍ରଦଠାରୁ କିଛି ଜାଗା ଦଖଲ କରି ନେଲେ ।

ତା ଅର୍ଥ, ପାଣି ଉପରକୁ ବାହାରି ଆସିଥିବା ଶୁଖିଲା ଅଣଓସାରିଆ ଜାଗାଟାକୁ ହ୍ରଦଠାରୁ ଅଲଗା କରିବାକୁ ହେବ ।

କାମ ଆରମ୍ଭ ହୋଇଗଲା । ଗାଡ଼ିଆନମାନେ ଗାଡ଼ି ଗାଡ଼ି ମାଟି ବହି ଆଣିଲେ ବନ୍ଧ ବାନ୍ଧିବା ପାଇଁ । ଏକଦା ସହରର ଲୋକେ ଛୁଟି ଦିନମାନଙ୍କରେ ସବୁଜ ନୀଳ ନୌକାରେ ବସି ସେ ଜାଗାରେ ଜଳକ୍ରୀଡ଼ା କରୁଥିଲେ । ବନ୍ଧ ପାଇଁ ମାଟି ସେମାନେ ଦୂରରୁ ନ ଆଣି ହଠାତ୍ ଶୁଖି ଯାଇଥିବା ହ୍ରଦର ତଳ ଦେଶରୁ ଉଠଉଥିଲେ । ମାଟି କାଟିଲା ବେଳେ ହଠାତ୍ ଜଣକର କୋଦାଳ ବାଜିଲା ଏକ ପଗ୍ର କାଠ ଖୁଣ୍ଟି ଦେହରେ । ତା ପାଖକୁ ଲଗି ଆଉ ଦୁଇଟି ଖୁଣ୍ଟି ମଧ୍ୟ ବାହାରିଲା । ଇତିପୂର୍ବରୁ ନିଶ୍ଚୟ ଲୋକେ ସେଠାରେ କାମ କରୁଥିଲେ । କୋଦାଳରେ ଯେତେ ସେମାନେ ଖୋଳି ଖୋଳିକା ଗଲେ ସେତେ ବେଶି ପଥର କୁରାଢ଼ି, ମାଛ ଧରା ବନୀଶ ଏବଂ ମାଟି ପାତ୍ର ଆଦି ବାହାରିଲା । ଏହି ଖବର ପାଇ ପ୍ରତ୍ନତତ୍ତ୍ୱବିଦ୍‌ମାନେ ଆସି ପହଞ୍ଚିଗଲେ । ହ୍ରଦ ତଳୁ ବାହାରି ଥିବା ପ୍ରତିଟି ଖୁଣ୍ଟି, ପ୍ରତ୍ୟେକଟି ଜିନିଷକୁ ପରୀକ୍ଷା କଲେ ଏବଂ କାଗଜ ଉପରେ ଏକ ଗାଁର ଚିତ୍ରକୁ ଆଙ୍କିଲେ । ଏହି ଗାଁଟି ଏକଦା ଜୁରିଖ୍ ହ୍ରଦ କୂଳରେ ଅବସ୍ଥିତ ଥିଲା ।

କାଠ ଖୁଣ୍ଟି ଏବଂ ପଟା ଉପରେ ନିର୍ମିତ ଏହି ଭଳି ଗାଁର ଅବଶେଷାଂଶ ସୋଭିଏତ୍ ୟୁନିଅନ୍‌ର ମସ୍କୋ ନିକଟବର୍ତ୍ତୀ କ୍ଲ୍ୟାଜ୍‌ମା ନଦୀ ଏବଂ ମୁରୋମ୍ ନିକଟବର୍ତ୍ତୀ ଭେଲେତ୍‌ମା ନଦୀ କୂଳରୁ ଆବିଷ୍କୃତ ହୋଇଛି । ଆବିଷ୍କୃତ ଜିନିଷଗୁଡ଼ିକ ମଧ୍ୟରେ ଅଛି ମାଛ ଜଣ୍ଡା, ଚେଣ୍ଡା ଏବଂ ବନୀଶସବୁ ।

ପ୍ରତ୍ନତତ୍ତ୍ୱବିଦ୍‌ମାନେ ସଂପ୍ରତି ସୁଇଜରଲାଣ୍ଡର ଆଉ ଏକ ହ୍ରଦ ନିଉସ୍ଥଳରେ ଅନୁସନ୍ଧାନ କାର୍ଯ୍ୟ ଚଳେଇ ଥିଲେ । ସେମାନେ ହ୍ରଦ ତଳର ନମୁନାଗୁଡ଼ିକୁ ନେଇ ପରୀକ୍ଷା କରି ଦେଖିଲେ, ଏଥିରେ ଅନେକଗୁଡ଼ିଏ ପରସ୍ତ ରହିଛି ।

ପୋରଡିଆ ପିଠାରେ ପୋରୁଅକୁ ଯେମିତି ପେସ୍ତପାଠାରୁ ଅଲଗା କରି ହୁଏ ସେଇ ଭଳି ଏଠାରେ ଗୋଟିଏ ପରସ୍ତକୁ ଅନ୍ୟ ଏକ ପରସ୍ତଠାରୁ ଅଲଗା କରି ନେବାଟା



ପ୍ରତ୍ନତତ୍ତ୍ୱବିତ୍‌ମାନେ ଚିତ୍ରରେ ଅଙ୍କିତ ଗ୍ରାମକୁ ପୁନଃରୂପାୟିତ କରିଛନ୍ତି, ଯିଏକି କେଉଁକାଳେ ଜୁରିଖ୍ ଦ୍ୱୀପ ମଧ୍ୟରେ ଅବସ୍ଥିତ ଥିଲା ।

ସହଜ । ସବା ତଳ ପରସ୍ତଟିରେ ବାଲି, ତାପର ପରସ୍ତଟି ପଙ୍କ କାଦୁଅ । ଏଥିରେ ରହିଥାଏ ମଣିଷ ବସତି, ଆସବାବପତ୍ର ଏବଂ ଯନ୍ତ୍ରପାତିର ଅବଶେଷାଂଶ । ଏସବୁ ପରେ ଆଉ ଗୋଟିଏ ପରସ୍ତ ବାଲି । ଏହି ଭଳି ପରସ୍ତସବୁ ପୁଣିଥରେ ପୁନରାବୃତ୍ତ ହୋଇ ଥାଏ । ଗୋଟିଏ ଜାଗାରେ ଦୁଇଟି ପରସ୍ତ ମଧ୍ୟରେ ହଠାତ୍ ଦରପୋଡ଼ା କୋଇଲା ଦେଖିବାକୁ ମିଳିଲା ।

ଏହିସବୁ ପରସ୍ତଗୁଡ଼ିକ ସୃଷ୍ଟି ହେଲା କେମିତି ?

ପାଣିରେ ତ କେବଳ ବାଲି ଜମିବାର କଥା । ଏ ଦରପୋଡ଼ା କୋଇଲା ଆସିଲା କେଉଁଠୁ ?

ଏହା ତ କେବଳ ନିଆଁ ଲାଗିଲେ ସୃଷ୍ଟି ହୋଇଥାଏ ।

ଏହିସବୁ ପରସ୍ତଗୁଡ଼ିକୁ ଗଭୀର ଭାବେ ଅନୁଧ୍ୟାନ କଲା ପରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ହ୍ରଦଟିର ଇତିହାସ ଜାଣି ପାରିଥିଲେ । ବହୁ କାଳ ପୂର୍ବେ, ଏକଦା ଲୋକମାନେ ହ୍ରଦ ନିକଟରେ ପହଞ୍ଚି ତା'ର କୂଳରେ ଏକ ବସତି ସ୍ଥାପନ କରିଥିଲେ । କିଛି

ବର୍ଷା ବିତିଗଲା ପରେ ହ୍ରଦରେ ବଢ଼ି ପାଣି ମାଡ଼ି ଆସି କୂଳକୁ ଉଛୁଳାଇ ଦେଇଥିଲା ।

ଲୋକେ ବଢ଼ିରେ ବୁଡ଼ି ଯାଇଥିବା ଗାଁ ଛାଡ଼ି ପଳେଇ ଗଲେ । କାଠରେ ତିଆରି ଘର ଆଉ ମଞ୍ଚାସବୁ ପାଣିରେ ଖସି ଧସି ପଡ଼ିଲା । ଘରର ମଥାନ ତଳେ, ଯେଉଁଠି ଘର ଚଟିଆ ବସା ବାନ୍ଧୁଥିଲା, ସେଠାରେ ଛୋଟ ଛୋଟ ମାଛ ସବୁ ଭେଳା ହେଲା ଖେଳିବାକୁ ଲାଗିଲେ । ମୁନିଆଁ ଦାନ୍ତବାଲା ପାଇକ୍ ମାଛ ଏକଦା ମଣିଷ ଘରର ଦୁଆର ଥିବା ଫାଙ୍କ ବାଟେ ଧୀରେ ଧୀରେ ପହଁରିଲା । କଙ୍କଡ଼ାମାନେ ହାଣ୍ଡି ପାଖକୁ ଲାଗି ପଡ଼ିଥିବା ବେଞ୍ଚ ତଳେ ଗୋଡ଼ ମେଲେଇ ମେଲେଇ ଚାଲିଲେ । ତା'ପରେ ଏହିସବୁ ଧ୍ୱଂସାବଶେଷ ଉପରେ ପରସ୍ତେ କାଦୁଅ ମାଡ଼ିଗଲା ଏବଂ ତା ଉପରେ ପୁଣି ଢାଙ୍କି ହୋଇ ପଡ଼ିଲା ବାଲି ।

ପୁଣି ସମୟ ଆସିଲା, ହ୍ରଦଟା ବି ବଦଳି ଗଲା । କୂଳରୁ ପାଣି ଖସି ଆସିଲା ଏବଂ ହ୍ରଦର ତଳଦେଶ ଦେଖାଗଲା । ଯେଉଁ ବାଲି ବନ୍ଧଟି ଉପରେ ଗାଁଟି ଛିଡ଼ା ହୋଇଥିଲା ପୁଣି ଫୁଟି ଦିଶିଲା । କିନ୍ତୁ ଗାଁର କୌଣସି ଚିହ୍ନବର୍ଣ୍ଣ ନଥିଲା, କାରଣ ତା'ର ଧ୍ୱଂସାବଶେଷ ସବୁ ଲୁଚି ଯାଇଥିଲା ଗହୀର ବାଲି ପରସ୍ତ ତଳେ ।

ଲୋକେ ଏଥର ପୁଣି କୂଳକୁ ଛୁଟିଲେ । କୁରାଢ଼ିର ପାହାର ପୁଣି ଶୁଣିବାକୁ ମିଳିଲା । ହଳଦିଆ ବାଲି ତଳୁ ଫୁଟି ଦିଶିଲା କାଠ ଖଣ୍ଡସବୁ । ଗୋଟାକ ପରେ ଗୋଟାଏ ମଜ୍‌ବୁତ୍ ଘର ପାଣି ଧାରରେ ଗଢ଼ି ଉଠିଲା ।

ହ୍ରଦ ଏବଂ ମଣିଷ ମଧ୍ୟରେ ଏ ଲଢ଼େଇର ଅବସାନ ହେଲା ନାହିଁ—ଥରେ ଏପଟ ଜିତିଲା ତ ଆଉ ଥରେ ସେପଟ ଜିତିଲା । ଲୋକେ ସେମାନଙ୍କ ଘର ତୋଳିଲେ, ହ୍ରଦ ସେସବୁକୁ ପୁଣି ଧ୍ୱଂସ କରି ଦେଲା ।

ଶେଷକୁ ଲୋକେ ଯୁଦ୍ଧ କରି କ୍ଲାନ୍ତ ହୋଇ ପଡ଼ିଲେ । ସେମାନେ ଠିକ୍ କଲେ, ପାଣି କୂଳରେ ଘର ତିଆରି ନକରି ପାଣି ଉପରେ ତିଆରି କରିବେ । ତେଣୁ ସେମାନେ ଉଚ୍ଚା ଉଚ୍ଚା କାଠ ଖୁଣ୍ଟ ସବୁ ନେଇ ହ୍ରଦ ଭିତରେ ପୋତି ଦେଲେ । ତା'ପରେ ପଟା ବିଛେଇ ଦେଇ ତା ଉପରେ ତିଆରି କଲେ ଘରସବୁ । ପଟା ଭିତରେ ଥିବା ଫାଙ୍କ ଦେଇ ସେମାନେ ଦେଖି ପାରୁଥିଲେ ଅନେକ ତଳେ ଥିବା ପାଣିକୁ । ଏବେ ସେମାନଙ୍କର କୌଣସି ଚିନ୍ତାଦିକ ନାହିଁ । ପାଣି ଯେତେ ଉପରକୁ ଉଠିଲେ ବି ପଟାକୁ ଛୁଇଁ ପାରିଲା ନାହିଁ ।

କିନ୍ତୁ ପାଣିକି ସିନା ଲୋକେ ଜିତିଗଲେ, ସେମାନଙ୍କର ଆଉ ଏକ ଶତ୍ରୁ ରହି ଯାଇଥିଲା । ସେ ଶତ୍ରୁଟି ହେଉଛି ନିଆଁ ।

ପ୍ରାଗୈତିହାସିକ ଗୁହାବାସୀ ମଣିଷର ନିଆଁ ପ୍ରତି ଭୟ ନଥିଲା, କାରଣ ଗୁହାର କାନ୍ଥ ତ ଆଉ ନିଆଁରେ ଜଳିଲା ଭଳି ନୁହେଁ ।

କିନ୍ତୁ ପ୍ରଥମ କାଠର ଘର ବାଡ଼ି ହେଲା ପରେ ପ୍ରଥମ ନିଆଁ ଲାଗିଗଲା । ଯେଉଁ

ଲଇ ଜ୍ଵଳନ୍ତ ଜନ୍ତୁଟା ହଜାର ହଜାର ବର୍ଷ ଧରି ଅନୁଗତ ଭାବେ ମଣିଷର ସେବା କରି ଆସିଥିଲା ଏବେ ତା'ର ଲହ ଲହ ଜିଭ ବାହାର କରି ତା ଆଡ଼କୁ ଧାଇଁଲା ।

ନିଉସ୍ୱାଟଲ ହ୍ରଦର ତଳଦେଶରେ ଦରପୋଡ଼ା କାଠର ଯେଉଁ ପରସ୍ତସବୁ ବାହାରିଛି ସେସବୁ ହେଉଛି ନିଆଁରେ ପୋଡ଼ି ଯାଇଥିବା ଏକ ଆଦିମ ବସତିର ଧ୍ୱଂସାବଶେଷ ।

କି ଏକ ଭୟଙ୍କର ସେ ଦୁର୍ଯୋଗ । ନିଆଁରୁ ବର୍ତ୍ତିବା ପାଇଁ ପ୍ରାଣ ବିକଳରେ ଲୋକେ ଛୁଆ ପିଲାଙ୍କୁ ଧରି ପାଣିକୁ ଡେଇଁ ପଡ଼ିଥିଲେ । ଗୁହାରେ ବନ୍ଧା ହୋଇଥିବା ପଶୁମାନେ ହମ୍ବାରଡ଼ି ଛାଡ଼ୁ ଥାନ୍ତି, କିନ୍ତୁ ସେମାନଙ୍କୁ ଉଦ୍ଧାର କରିବା ପାଇଁ ଆଉ ସମୟ ନଥିଲା । ସାରା ଗାଁଟା ଗୋଟାଏ ଭୟଙ୍କର ବନାଗ୍ନି ଭଳି ଜଳି ଗଲା, ଘରି ଆଡ଼େ ବିଛୁଡ଼ି ହୋଇ ପଡ଼ିଲା ତା'ର ଧାସ ।

ସତରେ ନିଆଁ ଥିଲା ଏକ ବିରାଟ ବିପର୍ଯ୍ୟୟ ଭଳି ।

କିନ୍ତୁ ଯେଉଁ ନିଆଁ ଗ୍ରାମବାସୀମାନଙ୍କର ଘର ଦ୍ୱାରକୁ ଜାଳି ଛାରଖାର କରି ଦେଲା, ସେଇ ନିଆଁ ଆମ ପାଇଁ, ଆମ ମିଉଜିଅମ୍ ପାଇଁ ସାଇତି ରଖି ଦେଇଛି ଅମୂଲ୍ୟ ଜିନିଷ ସବୁ । ସେସବୁ ଅମୂଲ୍ୟ ଜିନିଷ ହେଉଛି କାଠର ବାସନ କୁସନ, ମାଛ ଧରା ଜାଲ ଏବଂ ଶସ୍ୟ ଆଉ ଉଦ୍‌ଭିଦର କାଣ୍ଡ, ଆଦି ।

କୌଣସି ଅଲୌକିକ ଶକ୍ତି କ'ଣ ଅଚି ଶୀଘ୍ର ଜଳି ଯାଉଥିବା ଏହିସବୁ ଜିନିଷକୁ ରକ୍ଷା କରିଥିଲା ?

ହଁ, ସତରେ ସେଇ ଭଳି ଏକ ଘଟଣା ଘଟିଥିଲା ।

ବିଭିନ୍ନ ଜିନିଷ ପତ୍ରରେ ନିଆଁ ଲାଗିଗଲା ପରେ ସେସବୁ ପାଣି ମଧ୍ୟରେ ଖସି ପଡ଼ିଥିଲା । ପାଣି ସେସବୁକୁ ରକ୍ଷା କରି ଦେଲା । କାରଣ ପାଣି ସହିତ ନିଆଁର ସଂପର୍କ ତମେମାନେ ଜାଣିଥିବ । ତା'ପରେ ସେସବୁ ବସ୍ତୁ ପାଣି ତଳେ ଯାଇ ସେଇ ଭଳି ରହିଗଲା । କିନ୍ତୁ ସେଠାରେ ଯେ ବିପଦ ନଥିଲା ତାହା ନୁହେଁ । ପାଣିରେ ଜମି ରହିବା ଫଳରେ ସେସବୁ ପଚି ଯିବାର କଥା । କିନ୍ତୁ ସେଠାରେ ସେସବୁ ରକ୍ଷା ପାଇଗଲେ ଗୋଟିଏ କାରଣରୁ । ସେ କାରଣଟି ହେଉଛି, ସେସବୁ ପୂରା ପୋଡ଼ି ଯାଇନଥିଲେ । ସେସବୁ ଉପରେ ଥିବା ଦରପୋଡ଼ା ଅଂଶଟା ପଚିବାରୁ ସେମାନଙ୍କୁ ରକ୍ଷା କଲା ।

ନିଆଁ ଏବଂ ପାଣି ଯଦି ଅଲଗା ଅଲଗା ସେମାନଙ୍କ କରାମତି ଦେଖାଇ ଥାନ୍ତେ, ତେବେ ସେସବୁକୁ ଧ୍ୱଂସ କରି ଦେଇଥାନ୍ତେ । କିନ୍ତୁ ଏକାଠି କରାମତି ଦେଖାଇବା ଫଳରେ ହଜାର ହଜାର ବର୍ଷ ତଳେ ବୁଣା ହୋଇଥିବା ଲାଇନେନ୍ କପଡ଼ା ଭଳି ନଷ୍ଟଯୋଗ୍ୟ ଜିନିଷ ମଧ୍ୟ ବର୍ତ୍ତି ଯାଇଥିଲା ।

## ପ୍ରଥମ ଲୁଗା ।

ପ୍ରଥମ ଲୁଗା ବୁଣା ହୋଇଥିଲା ହାତରେ ।

ଏବେବି ଏସ୍କିମୋମାନେ ଲୁଗା ବୁଣିବା ପାଇଁ ତନ୍ତ ବ୍ୟବହାର କରନ୍ତି ନାହିଁ, ହାତରେ ବୁଣନ୍ତି । ଲମ୍ବା ଫ୍ରେମ୍ ଭିତରେ ଲମ୍ବା ସୂତାଖିଅଗୁଡ଼ିକୁ ଟାଣି ଦେଇ ତା ଭିତରେ ଆଡ଼୍ଆଡ଼ି ସୂତାର ଭରଣି ଦେଇ ହାତରେ ବୁଣନ୍ତି । କଣ୍ଢାର ବ୍ୟବହାର ସେମାନେ ଜାଣନ୍ତି ନାହିଁ ।

କାଠର ଏହି ଛୋଟ ଛୋଟ ଫ୍ରେମ୍‌ଗୁଡ଼ିକୁ ଆଧୁନିକ ତନ୍ତ ସହିତ ତୁଳନା କରିବା କଷ୍ଟକର । କିନ୍ତୁ ଆଧୁନିକ ତନ୍ତଗୁଡ଼ିକର ଉତ୍ପତ୍ତି ହୋଇ ଥିଲା ଏହି ସରଳ କାଠ ଫ୍ରେମ୍‌ଗୁଡ଼ିକ ମଧ୍ୟରୁ ।

ହ୍ରଦ ତଳୁ ମିଳିଥିବା ସେଇ ଦରପୋଡ଼ା ଏବଂ କଳା ଛିଡ଼ା କନାଟି ଥିଲା ମଣିଷ ଜୀବନରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ଏକଦା ଯିଏ ପଶୁ ଚମଡ଼ା ପିନ୍ଧୁଥିଲା ସେ ସେଦିନ ଛଣପଟ ତନ୍ତୁରୁ ଏକ କପଡ଼ା ତିଆରି କରିଥିଲା, ଯେଉଁ ଛଣପଟକୁ ସେ ବିଲରେ ବୁଣିଥିଲା ଏବଂ ଅମଳ କରିଥିଲା ।

ଲୁଗା ତିଆରି ହେବା ପୂର୍ବରୁ ହଜାର ହଜାର ବର୍ଷ ଆଗେ ଆବିଷ୍କୃତ ହୋଇଥିବା ଛୁଞ୍ଚି ଶେଷକୁ ଜୀବନରେ ତା'ର ଉପଯୁକ୍ତ ଆସନ ଲାଭ କଲା : ଏବେ ସେ ଜନ୍ତୁ ଜାନୁଆରଙ୍କ ଚମଡ଼ାକୁ ସିଲାଇ ନକରି ଖଣ୍ଡ ଖଣ୍ଡ କପଡ଼ାକୁ ଏକାଠି ସିଲେଇ କରିବାରେ ଲାଗିଲା ।

ସୁନ୍ଦର ନୀଳ ଫୁଲ ଶୋଭିତ ଏକ ଛଣପଟ କ୍ଷେତ ଦେଖିଲେ କେତେ ଆନନ୍ଦ ଲାଗେ ନୁହଁ ! କିନ୍ତୁ ସ୍ତ୍ରୀଲୋକମାନଙ୍କ ପକ୍ଷରେ ଆହୁରି ଦୁଃଖ ଆଉ ଚିନ୍ତାର କାରଣ ।

ଛଣପଟ କାଟିଲା ବେଳକୁ ତ ସେମାନଙ୍କ ହାତସବୁ ବିନ୍ଧି ଉଠେ । ସେସବୁକୁ ବିଡ଼ାବାନ୍ଧି ପାଣିରେ ପଚେଇ ଏବଂ ଛାଣି ସେଥିରୁ ଝୋଟ ବାହାର କଲା ବେଳକୁ ଅବସ୍ଥା କାହିଲି । ଏତିକିରେ ମଧ୍ୟ କାମ ଶେଷ ହୁଏ ନାହିଁ । ସେସବୁକୁ ଶୁଖେଇବାକୁ ହୁଏ, ଝାଡ଼ିବାକୁ ହୁଏ ଏବଂ ପାନିଆରେ କୁଣ୍ଡାଇଲା ଭଳି ପରିଷ୍କାର କରିବାକୁ ପଡ଼େ । ସେସବୁ ଦେଖାଯାଏ ଗାଁ ପିଲାଙ୍କର ପତଳା ବାଳ କେରା ଭଳି । ତା'ପରେ କଣ୍ଢା ସାହାଯ୍ୟରେ ସେଥିରୁ ସୂତା କାଟିବାକୁ ହୁଏ, ଦୁଇଟି ଛଣପଟ ଖିଅରେ ଗୋଟିଏ ପଟ ସୂତା । ସୂତା ହେଲା ପରେ ସେଥିରୁ ଲୁଗା ବୁଣା ହୁଏ ।

ଲୁଗା ଖଣ୍ଡେ ତିଆରି କରିବା ପାଇଁ କେତେ କଷ୍ଟ ! କିନ୍ତୁ ସ୍ତ୍ରୀଲୋକମାନେ ସେତେବେଳେ ବି ସୁନ୍ଦର ରୁମାଲ, ଆପ୍ରନ୍, ସୁନ୍ଦର ଧଡ଼ି ଲଗା ସାର୍ଟ ଆଉ ଶାଢ଼ୀ

ବ୍ୟବହାର କରୁଥିଲେ । ସେଥି ପାଇଁ କେତେ କଷ୍ଟ କରିବାକୁ ପଡ଼ିଥିବ, ଟିକେ ଅନୁମାନ କରତ !

## ପ୍ରଥମ ଖଣି ଖୋଳାଳୀ ଏବଂ ପ୍ରଥମ କମାର ।

ଆଜିକାଲି ପ୍ରତି ଘରେ ଏପରି ଅନେକ ଜିନିଷପତ୍ର ଦେଖିବାକୁ ପାଇବ, ଯାହା ଏପରି ସବୁ କୃତ୍ରିମ ଉପାଦାନରେ ତିଆରି, ଯିଏକି ପ୍ରକୃତି ରାଜ୍ୟରେ ସେଇଭଳି ଅବସ୍ଥାରେ ମିଳେ ନାହିଁ ।

ଇଟା, କାଗଜ, ତଳେଇ ଲୁହା କେଉଁଟାକୁ ଆମେ ପ୍ରକୃତି ମଧ୍ୟରୁ ସେଇ ଭଳି ଅବସ୍ଥାରେ ପାଇ ଥାଉଁ ? ପ୍ରାକୃତିକ ଅବସ୍ଥାରୁ ଯେଉଁସବୁ ଜିନିଷ ମିଳେ ତାକୁ ନେଇ ମଣିଷ ତା'ର ରୂପକୁ ଏଭଳି ଭାବେ ବଦଳେଇ ଦିଏ ଯେ, ତାକୁ ଚିହ୍ନିବା କଷ୍ଟକର । ଚକ୍ ଚକ୍ କରୁଥିବା ଚୀନା ମାଟିର ବାସନ ଦେଖିଲେ କିଏ କହିବ ତାହା କଞ୍ଚା କାଦୁଅରୁ ତିଆରି ବୋଲି ।

ଏହା ଛଡ଼ା କନ୍‌କ୍ରିଟ୍, ସେଲୋଫାନ୍, ପ୍ଲାଷ୍ଟିକ୍, କୃତ୍ରିମ୍ ଟସର ଏବଂ କୃତ୍ରିମ୍ ରବର କଥା ତ କହିବାକୁ ପଡ଼ିବ ନି । ପାହାଡ଼ ଦେହରେ କେଉଁଠି କ'ଣ ଖଣ୍ଡେ

ହ୍ରଦବାସର ଖଣ୍ଡାହରରୁ ମିଳିଥିବା ଲୁଗାର ଅଂଶ ।





ପ୍ରଥମ ଏହି ତନ୍ତ ସମ୍ଭବତଃ ବ୍ରାଜିଲ୍‌ର ଲୌହିତଭାରତୀୟଙ୍କ ତନ୍ତ ଭଳି ହୋଇଥିଲା ।

କନ୍‌କ୍ରିଟ୍‌ର ମୁଣ୍ଡିଆ ପାଇବ ? ଯେଉଁ ଗୋଟିପୋକ କାଠରୁ ଟସର ତିଆରି କରେ, ସିଏ କୁଆଡ଼େ ଗଲା ?

ବସ୍ତୁ ଉପରେ ଆଧିପତ୍ୟ ଜାହିର କରି ମଣିଷ କ୍ରମଶଃ ପ୍ରକୃତିର ଗୋପନତାକୁ ବେଶି ବେଶି ଆବିଷ୍କାର କରି ଗ୍ଲଲିଛି । ପ୍ରଥମେ ସେ ଗୋଟିଏ ପଥର ଖଣ୍ଡରେ ଆଉ ଖଣ୍ଡେ ପଥର ଘଷି ତାକୁ ମୁନିଆ କଲା । ଏବେ ସେ ପରମାଣୁକୁ ବି କାମରେ ଲଗାଉଛି, ଯାହାକୁ ଖାଲି ଆଖିରେ ଦେଖି ହୁଏ ନାହିଁ ।

ଏହି ପ୍ରକ୍ରିୟାଟି ଆରମ୍ଭ ହୋଇଥିଲା ଅନେକ ଦିନ ପୂର୍ବେ, ରସାୟନ ବିଦ୍ୟା, ବସ୍ତୁ ବିଜ୍ଞାନ ଜନ୍ମ ଲଭ କରିବା ପୂର୍ବରୁ । ମଣିଷ କ'ଣ କରୁଛି, ନିଜେ ସେ କଥା ନବୁଝି ନସୁଝି, ଅନ୍ଧାରରେ ଦରାଣ୍ଡିଲା ଭଳି ବସ୍ତୁକୁ ପରିବର୍ତ୍ତନ କରିଥିଲା ।

ପ୍ରଥମ କୁମ୍ଭକାରମାନେ ଯେତେ ସେମାନଙ୍କ ମାଟି ପାତ୍ରଗୁଡ଼ିକୁ ପୋଡ଼ିଥିଲେ, ସେମାନେ ସେମାନଙ୍କ ଅଜ୍ଞାତରେ ପ୍ରକୃତିକୁ ଆୟତ୍ତ କରୁଥିଲେ । ସେତେବେଳେ ତାହା ସହଜ କାମ ନଥିଲା । ପଥରକୁ କାଟିକି, ଘଷିକି ଯେମିତି ବଦଳେଇ ପାରିବ ବା ନୂଆ ରୂପ ଦେଇ ପାରିବ, ସେମିତି ବସ୍ତୁର କ୍ଷୁଦ୍ରାତି କ୍ଷୁଦ୍ର ଅଣୁରାଶିକି ହାତରେ କରି ପାରିବ ନାହିଁ । ଏଠାରେ କେବଳ ହାତର ଶକ୍ତିଟା କାମ ଦିଏ ନାହିଁ, ଆଉ କିଛି ଶକ୍ତି ଦରକାର ପଡ଼େ, ଯିଏକି ବସ୍ତୁକୁ ପରିବର୍ତ୍ତନ କରିବାକୁ ସକ୍ଷମ ।

ମଣିଷ ସେଇ ଶକ୍ତିଟିକୁ ପାଇଥିଲା ନିଆଁକୁ ତା'ର ସହାୟକ ରୂପେ ଲଭ କରି । ନିଆଁ ମାଟିକୁ ପୋଡ଼ିଲା ଏବଂ ଅଟାକୁ ରୁଟିରେ ପରିଣତ କଲା । ନିଆଁ ହିଁ ତରଳାଇଲା ତମ୍ବାକୁ ।

ଆମେ ହୃଦର ତଳ ଦେଶରୁ ପଥରର ହତିଆର ସହିତ ତମ୍ବା ତିଆରି ହତିଆର ମଧ୍ୟ ପାଇଥିଲେ ।

ଯେଉଁ ମଣିଷ ହଜାର ହଜାର ବର୍ଷ ଧରି ପଥରରେ ତା'ର ହତିଆର ତିଆରି କରୁଥିଲା ସେ କେମିତି ହଠାତ୍ ଧାତୁରେ ସେସବୁକୁ ତିଆରି କରିବାକୁ ଶିଖିଲା ? ଏବଂ ତା'ର ସେ ଦରକାରୀ ଧାତୁକୁ ସେ ପାଇଲା କେଉଁଠୁ ?

ରାସ୍ତା ଘାଟ ପଡ଼ିଆ ଆଦି ଦରାଣ୍ଡିଲେ ବି ଆମେ ଖଣ୍ଡେ ତମ୍ବା ପାଏ ନାହିଁ । ଆଜିକାଲି ସ୍ଥାନୀୟ ତମ୍ବା ତ ଖୁବ୍ ବିରଳ । କିନ୍ତୁ ସବୁ ଦିନେ ବ୍ୟାପାରଟା ଏହି ଭଳି ନଥିଲା । ହଜାର ହଜାର ବର୍ଷ ପୂର୍ବେ ବର୍ତ୍ତମାନ ଅପେକ୍ଷା ପୃଥିବୀରେ ପର୍ଯ୍ୟାପ୍ତ ତମ୍ବା ମିଳୁଥିଲା । ଏହା ଯେଉଁଠି ପାରି ସେଠି ପଡ଼ିଥିଲା, ଲୋକେ କିନ୍ତୁ ତା ପ୍ରତି ଦୃଷ୍ଟି ଦେଉ ନଥିଲେ । ଦୃଷ୍ଟି ବା କାହିଁକି ଦେବେ ? ସେମାନଙ୍କ ହତିଆର ତିଆରି କରିବା ପାଉ ଧାତୁଆ ପଥରର କ'ଣ ଅଭାବ ଥିଲା ?

ଧାତୁଆ ପଥର ଯେତେବେଳେ ବେଶି ନ ମିଳିଲା ସେତେବେଳେ ମଣିଷ

ତମ୍ବାକୁ ଖୋଳିଲ୍ । ଧାତୁଆ ପଥରର ଅଭାବ ପାଇଁ ମଣିଷ ନିଜେ ଦାୟୀ, କାରଣ ସେମାନେ ଧାତୁଆ ପଥରକୁ ସଇସମ୍ଭାଳି ବ୍ୟବହାର କଲେ ନାହିଁ । ନୂଆ ହତିଆରଟିଏ ତିଆରି କଲାବେଳେ ସେମାନେ ବଡ଼ ଏକ ପଥର ଖଣ୍ଡକୁ ନେଇ ଏମିତି ପିଟି କି ଭାଙ୍ଗୁଥିଲେ ଯେ, ହତିଆରଟି ତିଆରି କରିବା ଛଡ଼ା ଅନ୍ୟ ସବୁ ତକ କୌଣସି କାମରେ ଲାଗୁ ନଥିଲା । ସବୁଗୁଡ଼ାକ ଚୂନା ହୋଇ ଟୁକୁରା ଟୁକୁରା ହୋଇ ଯାଉଥିଲା ଏବଂ ସେସବୁ ହତିଆର ତିଆରିରେ ଲାଗିବ ନାହିଁ ଭାବି ଘର ଚାରିପଟେ ସେମାନେ ଜମା କରି ଦେଉଥିଲେ । କୌଣସି ବଢ଼େଇଶାଳାର ଚାରିପାଖରେ ଜମା ହୋଇଥିବା କାଠ ଛେଲି ଆଉ ଟୁକୁରାକୁ ଦେଖିଲେ ତୁମେ ତାକୁ ବଢ଼େଇଶାଳା ବୋଲି ଧରିନେବ ।

ଏହି ଭାବେ ହଜାର ହଜାର ବର୍ଷ ଧରି ଧାତୁଆ ପଥର ଅପବ୍ୟବହାର ଫଳରେ ଧାତୁଆ ପଥରର ଅଭାବ ଦେଖା ଦେଲା ।

ଅନେକ ଦେଶରେ ସେସବୁ ମିଳିଲା ନାହିଁ । ସେତେବେଳେ ଏଟା ଥିଲା ଏକ ବିରାଟ ବିପର୍ଯ୍ୟୟ ଭଳି । ଆମ ସମୟରେ ଯଦି ଲୁହା ପଥର ନମିଳେ ତେବେ ଆମର କଳକାରଖାନା କ'ଣ ହେବ ଟିକେ ଚିନ୍ତା କର ତ ! ପୃଥିବୀର ଉପରି ଭାଗରେ ଥିବା ଲୁହା ପଥରସବୁ ଶେଷ ହୋଇ ଆସିଲା କ୍ଷଣି ଖଣି ଶ୍ରମିକମାନେ ଆହୁରି ତଳକୁ ଖୋଳି ଖୋଳିକା ଯିବେ ।

ଠିକ୍ ସେଇ ଭାବେ ପ୍ରାଗୈତିହାସିକ ମଣିଷ କରିଥିଲା । ସେମାନେ ଖଣି ଖୋଳି ଥିଲେ ଏବଂ ସେ ଖଣିଟି ଥିଲା ପୃଥିବୀରେ ପ୍ରଥମ ଖଣି ।

ବେଳେ ବେଳେ ଚକ୍‌ଖଡ଼ି ମିଳୁଥିବା ପ୍ରାଚୀନ ସ୍ଥାନରୁ ଚକମକି ପଥର ମିଳିଥାଏ । କାରଣ ଚକ୍‌ଖଡ଼ି ଏବଂ ପଥର ପ୍ରାୟ ପାଖାପାଖି ମିଳିଥାନ୍ତି ।

ସେ ଯୁଗରେ ପୃଥିବୀ ପୃଷ୍ଠର ତିରିଶ ଚାଳିଶ ଫୁଟ ତଳେ କାମ କରିବାଟା ବଡ଼ ଭୟଙ୍କର କାମ ଥିଲା । ଲୋକେ ଖଣି ଭିତରକୁ ଯାଉଥିଲେ ଦଉଡ଼ି କିମ୍ବା କେନାବାଲା ଖୁଣ୍ଟି ସାହାଯ୍ୟରେ । ଖଣି ଭିତରେ ଅନ୍ଧାର ଏବଂ ଧୂଆଁ । ଖଣ୍ଡେ କାଠ ଟୁକୁରାରେ ନିଆଁ ଲଗେଇ କିମ୍ବା ଟିକି ବତୀଟିଏ ଜାଳି ମଣିଷ କାମ କରୁଥିଲା ଖଣି ତଳେ । ଏବେ ଖଣିମାନଙ୍କରେ କାଠର ପଟା ବାନ୍ଧି ଖୁବ୍ ନିରାପଦ ବ୍ୟବସ୍ଥା ନିଆ ଯାଉଛି । କିନ୍ତୁ ସେତେବେଳେ ଖଣିର ମାଟି ତଳ ସୁଡ଼ଙ୍ଗର କାନ୍ଥ ଆଉ ଛାତକୁ କିପରି ଶକ୍ତ କରିବାକୁ ହୁଏ ଜଣା ନଥିଲା । ଓପରୁ କିମ୍ବା ପାଖରୁ ପୁଳାଏ ମାଟି ବା ପଥର ଧସି ପଡ଼ିଲେ ଖଣି ଭିତରେ କାମ କରୁଥିବା ଲୋକ ପୋତି ହୋଇ ମରି ଯାଉଥିଲା । ପୁରୁଣା ପଥର ଖଣିମାନଙ୍କରେ ଏହି ଭାବେ ପୋତି ହୋଇ ମରିଥିବା ଖଣି ଶ୍ରମିକମାନଙ୍କର କଙ୍କାଳସବୁ ବିରାଟ ଚକ୍‌ଖଡ଼ି ପଥର ତଳେ ଦେଖିବାକୁ

ମିଳିଛି । ଖାଲି ମଣିଷର କଙ୍କାଳ ନୁହଁ , ସେମାନଙ୍କର ଯନ୍ତ୍ରପାତି ଯଥା ଶିଙ୍ଗରେ ତିଆରି ଖଣତି ଆଦି ମଧ୍ୟ ସେଥିରୁ ବାହାରିଛି ।

ସେସବୁ ନର କଙ୍କାଳ ମଧ୍ୟରେ ଜଣେ ବୟସ୍କ ଲୋକର କଙ୍କାଳ ଏବଂ ଏକ ବାଳକର କଙ୍କାଳ ରହିଛି । ସମ୍ଭବତଃ କୌଣସି ବାପ ତା ପୁଅକୁ ନେଇ ଖଣି ମଧ୍ୟକୁ ଯାଇଥିଲା , ସେମାନେ ଆଉ ଘରକୁ ଫେରି ପାରି ନଥିଲେ ।

ପ୍ରତିଟି ଶତାବ୍ଦୀ ବିତିବା ସଙ୍ଗେ ସଙ୍ଗେ ଚକମକି ବା ଅରଣି ପଥର ମଧ୍ୟ କମି କମି ଆସିଲା ଏବଂ ଖଣିରୁ ସେସବୁକୁ ବାହାର କରିବା ମଧ୍ୟ କଠିନ ହେଲା । କିନ୍ତୁ ଆଦିମ ମଣିଷର ଅରଣି ପଥର ନହେଲେ ନଚଳେ । ସେଥିରୁ ସେ ତିଆରି କରେ କୁରାଢ଼ି , ଛୁରି ଏବଂ କୋଦାଳ , ଆଦି ।

ତେଣୁ ସେ ପ୍ରାଣମୂର୍ଚ୍ଛା ଉଦ୍ୟମ କଲା ଅରଣି ପଥର ବଦଳରେ ଆଉ କିଛି ଯୋଗାଡ଼ କରିବାକୁ ।

ସେତିକିବେଳେ ତାକୁ ରକ୍ଷା କଲା ତା ପାଖଆଖରେ ପଡ଼ିଥିବା ତମ୍ବା । ଲୋକେ ତାକୁ ଭଲକି ପରୀକ୍ଷା କରି ଦେଖିଲେ – ଶାଗୁଆ ଶାଗୁଆ ଏହି ପଥରଟା କାଳେ ସେମାନଙ୍କ କାମରେ ଆସି ପାରେ ।

ଖାଣ୍ଡି ତମ୍ବା ପଥର ଖଣ୍ଡେ ନେଇ ମଣିଷ ହାତୁଡ଼ି ପିଟି ତାକୁ ପିଟିବାରେ ଲାଗିଲା । ସେ ଭାବିଲା ତମ୍ବା ମଧ୍ୟ ପଥର ଏବଂ ଅରଣି ପଥରକୁ ପିଟିକି ସେଥିରୁ ଯେମିତି ହତିଆର ତିଆରି କରେ ଏଥିରୁ ମଧ୍ୟ ସେଇ ଭଳି କରିବ । ପଥର ହାତୁଡ଼ିରେ ସେ ଯେତେ ତାକୁ ପିଟେ ସେତେ ସେଟା ଲମ୍ବ ଏବଂ ଶକ୍ତ ହୁଏ , ତା'ର ଚେହେରା ବି ବଦଳିବାକୁ ଲାଗେ । କିନ୍ତୁ ଏହି ପିଟିବାରେ ମଧ୍ୟ ଗୋଟାଏ କାଇଦା ଦରକାର । ଖୁବ୍ ଜୋରରେ ପିଟିଲେ ତମ୍ବା ଭାଙ୍ଗି ଚେନା ଚେନା ହୋଇଯାଏ ।

ଏହି ଭାବେ ମଣିଷ ପ୍ରଥମେ ଧାତୁକୁ ତଳେଇ କରିବାକୁ ଚେଷ୍ଟା କଲା । ତା'ର ପ୍ରଥମ ତଳେଇଟା ଅବଶ୍ୟ ନିଆଁରେ ନୁହେଁ , ତାକୁ ଶୀତଳ ତଳେଇ କହିପାର । କିନ୍ତୁ ଗରମ ତଳେଇ ପାଇଁ ମଣିଷକୁ ଆଉ ବେଶି ଦିନ ଲାଗି ନଥିଲା ।

କେବେ କେମିତି ଖଣ୍ଡେ ଖାଣ୍ଡି ତମ୍ବା ବା ତମ୍ବା ପଥର ନିଆଁରେ ପଡ଼ି ଯାଇଥିଲା । ଅଥବା ମଣିଷ ମାଟି ବାସନକୁ ଯେମିତି ନିଆଁରେ ପୋଡ଼େ ସେଇଭଳି ତମ୍ବାକୁ ନିଆଁରେ ପୋଡ଼ିକି ଦେଖିଥିଲା । ନିଆଁ ଲିଭିଗଲା ପରେ ପାଉଁଶ ଆଉ ପଥର ଟୁକୁରାଗୁଡ଼ିକ ମଧ୍ୟରେ ଦେଖାଗଲା ପୁଳାଏ ତରଳ ତମ୍ବା ।

ଅବାକ୍ ହୋଇ ଲୋକେ ସେମାନଙ୍କର ଏହି ଅଲୌକିକ କାଣ୍ଡଟିକୁ ଦେଖିଲେ । କିନ୍ତୁ ସେମାନଙ୍କ ବିଶ୍ୱାସ , ନିଆଁରେ ଥିବା କୌଣସି ଶକ୍ତି ବା ଦେବତା ଶାଗୁଆ

ତମ୍ବା ପଥରକୁ ଚକ୍ ଚକ୍ ଲାଲ ତମ୍ବାରେ ପରିଣତ କରି ଦେଲା । ଏଥିରେ ମଣିଷର କୌଣସି ହାତ ନାହିଁ ।

ତା'ପରେ ସେମାନେ ତମ୍ବା ମୁଣ୍ଡାଟିକୁ ଖଣ୍ଡ ଖଣ୍ଡ କରି ଭାଙ୍ଗି ପ୍ରତିଟି ଖଣ୍ଡକୁ ପଥର ହାତୁଡ଼ିରେ ପିଟି କୁରାଢ଼ି, ଖଣିତି ଏବଂ ଛୁରି ତିଆରି କଲେ ।

ଏହି ଭାବେ ମଣିଷ ପ୍ରକୃତିର ଅଦ୍‌ଭୁତ ଭଣ୍ଡାର ଘରୁ ଲାଭ କଲେ ଏକ କଠିନ ଏବଂ ଉଜ୍ଜ୍ୱଳ ଧାତୁ । ନିଆଁ ମଧ୍ୟକୁ ସେ ଫିଙ୍ଗି ଦେଲେ ଖଣ୍ଡେ ପଥର ଏବଂ ନିଆଁ ତାକୁ ଫେରେଇ ଦେଲା ଖଣ୍ଡେ ତମ୍ବା ।

ଏହି ଅଦ୍‌ଭୁତ ଘଟଣା ଘଟିଥିଲା ମଣିଷର ଶ୍ରମ ଦ୍ୱାରା ।

## ରୁଷିଆର ପ୍ରଥମ ଚାଷୀ ।

୧୯ଶ ଶତାବ୍ଦୀର ଶେଷ ଭାଗରେ ଭି. ଖ୍‌ଭୋଇକୋ ନାମକ ଜଣେ ରୁଷୀୟ ପ୍ରତ୍ନତତ୍ତ୍ୱବିଦ୍ କିଏଭ୍ ଅଞ୍ଚଳର ତ୍ରିପୋଲେ ନାମକ ଗାଁ ପାଖରେ ଏକ ପ୍ରାଗୈତିହାସିକ କୃଷି ବସତିର ଧ୍ୱଂସାବଶେଷ ଆବିଷ୍କାର କରିଥିଲେ ।

ତା'ପରେ ଦକ୍ଷିଣ ରୁଷିଆରେ ଏହି ଭଳି ଅନେକ ବସତି ଆବିଷ୍କୃତ ହୋଇଥିଲା ।

ଅକ୍ଟୋବର ବିପ୍ଳବ ପରେ ଟି. ପାସେକ୍ ଏବଂ ବି. ବୋଗାୟେଭ୍‌ସି ସୋଭିଏତ୍ ୟୁନିଅନ୍‌ରେ ଏହି ଗବେଷଣା କାର୍ଯ୍ୟ ଚଳାଇ ଯାଇଥିଲେ । ସେମାନଙ୍କର ଏହି ଗବେଷଣା ଫଳରେ ଆମେ ଜାଣିବାକୁ ପାଇଲେ, ପାଞ୍ଚ ହଜାର ବର୍ଷ ପୂର୍ବେ କିପରି ଚାଷୀମାନେ ଜୀବନଯାପନ କରୁଥିଲେ ।

ପ୍ରାଗୈତିହାସିକ ବସତି ଚାରି ପାଖରେ ଉଚ୍ଚ ବାଡ଼ ଦିଆଯାଇଥିଲା: ଗାଁର କେନ୍ଦ୍ରସ୍ଥଳରେ ଏକ ଚୌକ ଥିଲା ଏବଂ ଚୌକଟି ଚାରି ପାଖରେ ବାଡ଼ ଘେରା ହୋଇଥିଲା । ଚୌକର ଚାରି ପାଖରେ ଛିଡ଼ା ହୋଇଥିଲା ଗୋଲିଆ ଛାତବାଲା କାଠ ଘରସବୁ ।

ବହୁ ହଜାର ବର୍ଷ ପୂର୍ବେ କୌଣସି ଏକ ଘରର ଛୋଟ ଏକ ମାଟି ପ୍ରତୀକ ମଧ୍ୟ ସେଠାରେ ଆବିଷ୍କୃତ ହୋଇଛି । ସେଟା ଦେଖିବାକୁ ଗୋଟାଏ ଖେଳନା ଭଳି, ସମ୍ଭବତଃ ଏହା ମନ୍ତ୍ର ପାଠ ବେଳେ ବ୍ୟବହୃତ ହେଉଥିଲା ।

ଲୋକେ ହୁଏତ ଭାବୁଥିଲେ ନାରୀର ପ୍ରତିଛବି ଥିବା ଏହି କ୍ଷୁଦ୍ର ଘରଟି ପ୍ରକୃତ ବଡ଼ ଘରଗୁଡ଼ିକୁ ଭୂତ ପ୍ରେତ ଏବଂ ଦୁର୍ଯୋଗ କବଳରୁ ରକ୍ଷା କରିବ ।

ଏହି କ୍ଷୁଦ୍ର ପ୍ରତୀକ ଘରଟିର ଦ୍ୱାର ଦେଶରେ, ଦକ୍ଷିଣ ଦିଗକୁ ଏକ ଚୁଲୀ ରହିଛି ଏବଂ ବାଆଁକୁ ଏକ ଉଚ୍ଚା ପିଣ୍ଡା ଉପରେ ବିଭିନ୍ନ ଜିନିଷପତ୍ର ରଖିବା ପାଇଁ

ବଡ଼ ବଡ଼ ପାତ୍ରସବୁ ଥୁଆ ହୋଇଛି । ପିଣ୍ଡାକୁ ଲଗି ଏକ ନାରୀ ମୂର୍ତ୍ତି ଏକ ପେଷା ଉପରକୁ ନଇଁ ଆସିଛି । ଦ୍ୱାରର ସାମନାରେ ଏକ ଝରକାରେ ରହିଛି ଦେବିଟିଏ । ଆଉ ଏକ ନାରୀର ମୂର୍ତ୍ତି, ଅଗ୍ନି ରକ୍ଷିକା, ଚୁଲୀ ନିକଟରେ ଠିଆ ହୋଇଛନ୍ତି ।

ଏହି ଧରଣର ଏକ ଘରକୁ ଆମେ ଘର ନକହି ଆଉ କ'ଣ କହି ପାରିବା । ଘର ଉପରର ଷ୍ଟକସ୍ଥଅ ମଥାନ ଉପରେ ରହିଛି । ଚୁଲୀଟି ମଧ୍ୟ ଦେଖାଯାଉଛି ରୁଷୀୟ ଚୁଲୀ ପରି । ଘରର ଚଟାଣଟି ପୋଡ଼ା ମାଟିରେ ତିଆରି ହୋଇଥିବାରୁ ଅପେକ୍ଷାକୃତ ଶକ୍ତ ମନେ ହେଉଛି । ମାଟିନେସା କାନ୍ଥଗୁଡ଼ିକରେ ଅଙ୍କା ଯାଇଛି ବିଭିନ୍ନ ଚିତ୍ର ।

ପ୍ରତିଟି ଘରେ ଅନେକ ଗୁଡ଼ିଏ କୋଠରୀ ଅଛି । କୋଠରୀଗୁଡ଼ିକ ମଧ୍ୟରେ ଅଛି କାନ୍ଥସବୁ ।

ଏହା ଛଡ଼ା ଗାଁରେ ମଧ୍ୟ ବଡ଼ ବଡ଼ ସୁଡ଼ଙ୍ଗ ଘରସବୁ ଅଛି ।

ସେତେବେଳେ ମଧ୍ୟ ସୁଦକ୍ଷ କୁମ୍ଭକାର, କମାର ଏବଂ ତମ୍ବା ମିସ୍ତ୍ରୀମାନେ ଥିଲେ ।

କୁମ୍ଭକାରମାନେ ତିନି ଫୁଟ ଉଚ୍ଚର ପାତ୍ର ତିଆରି କରି ସେସବୁ ଉପରେ ନାନା ରଙ୍ଗର ଚିତ୍ର ଆଙ୍କୁଥିଲେ । ଆବିଷ୍କୃତ ବିଭିନ୍ନ ଢାଉଆ ମାଟି ପାତ୍ର ଉପରେ ରେଖମୀ ଫିତା ଆଉ କୁଣ୍ଡଳୀର ଜଟିଳ ନକ୍‌ସାସବୁ ଦେଖିବାକୁ ମିଳେ । ସେସବୁ ଦେଖିବାକୁ ଅନେକ ଅଂଶରେ ବଡ଼ ବଡ଼ ଆଖି ଥିବା ମଣିଷର ମୁହଁ ପରି, ପଶୁ ବା ସୂର୍ଯ୍ୟ ଭଳି ।

ମାଟି ତଳେ ସଞ୍ଚିତ ହତିଆରଗୁଡ଼ିକୁ ପରୀକ୍ଷା କଲାବେଳେ ସେସବୁ କିପରି ଅରଣି ପଥରରୁ ତମ୍ବାକୁ ପରିବର୍ତ୍ତିତ ହୋଇଛନ୍ତି ଆମେ ଜାଣି ପାରୁ ।

ସବୁଠାରୁ ପ୍ରାଚୀନ ହତିଆର—ଛୁରି, ତେଣ୍ଡା ଏବଂ ତୀର ମୁନସବୁ ଅରଣି ପଥର ବା ହାଡ଼ରେ ତିଆରି ହୋଇଥିଲା ।

ତେଣ୍ଡାସବୁ ତିଆରି ହେଉଥିଲା ଅରଣି ପଥର ବା ହରିଣ ଶିଙ୍ଗରେ । ସେଥିରେ ଗୋଟାଏ କଣା କରି ଦେଇ ତାକୁ ଏକ କାଠ ବାଡ଼ିରେ ଯୋଡ଼ି ଦିଆଯାଉଥିଲା ।

ଗାଈର କାନ୍ଧ ହାଡ଼ କିମ୍ବା କାଠରୁ ତିଆରି ଦାଆରେ ଶସ୍ୟ କଟା ହେଉଥିଲା । କାଠ ଦାଆରେ ଗଛର କାଣ୍ଡକୁ କାଟି ହେଉ ନଥିବାରୁ ପଥରର ଦାନ୍ତ ସେଥିରେ ଲଗେଇ ଦିଆ ଯାଉଥିଲା ।

ଉକ୍ତ ଗାଁରେ ଆମେ ଦେଖିବାକୁ ପାଇଛୁ ପ୍ରଥମ ତମ୍ବା ହତିଆର—ଚଉଡ଼ା ମୁହଁବାଲା କୁରାଢ଼ି ତଳେଇ ପାଇଁ ଛାଞ୍ଚସବୁ ।

ଲୋକମାନେ ଖାଦ୍ୟ ପାଇଁ କେଉଁ କେଉଁ ଘାସ ରୋଉଥିଲେ ସେ କଥା ମଧ୍ୟ

ଜଣା ପଡ଼ିଛି । କୋଲୋମିସ୍ଟିନୋର ଘରଗୁଡ଼ିକର କାନ୍ଥରେ ନେସା ହୋଇଥିବା ମାଟିରୁ ଗହମ, ଯଅ, ବାଜରା ଆଦିର ଦାନା ମଧ୍ୟ ପ୍ରତ୍ନତତ୍ତ୍ୱବିତ୍‌ମାନେ ପାଇଛନ୍ତି ।

ଚାଷୀମାନେ ଶେଷକୁ କୃଷି ବିଜ୍ଞାନରେ ନିପୁଣତା ହାସଲ କରିବାକୁ ଲାଗିଲେ । ସେମାନଙ୍କର ମଧ୍ୟ ସେତେବେଳେ କେତେକ ଅଭିଜ୍ଞତା ଥିଲା, ସେ ଅଭିଜ୍ଞତାଟା ପାଞ୍ଚ ହଜାର ବର୍ଷର ।

## ଶ୍ରମର ଇତିହାସ ।

ସମୟକୁ ଆମେ ବିଭିନ୍ନ ଭାବେ ହିସାବ କରିଥାଏଁ : ବର୍ଷ, ଶତାବ୍ଦୀ ଏବଂ ସହସ୍ରାବ୍ଦ ହିସାବରେ । କିନ୍ତୁ ଯେଉଁମାନେ ପ୍ରାଗୈତିହାସିକ ମଣିଷର ଜୀବନକୁ ଅନୁଧ୍ୟାନ କରିବାକୁ ଚାହାନ୍ତି, ସେମାନଙ୍କୁ ଭିନ୍ନ ଏକ ଧରଣର ପଞ୍ଜିକା, ସମୟର ଭିନ୍ନ ଏକ ମାପକାଠି ବ୍ୟବହାର କରିବାକୁ ପଡ଼େ । "ଏତେ ହଜାର ବର୍ଷ ପୂର୍ବେ" କହିବା ପରିବର୍ତ୍ତେ ସେମାନେ କହିଥାନ୍ତି, "ପୁରାତନ ପ୍ରସ୍ତର ଯୁଗରେ", "ନୂଆ ପ୍ରସ୍ତର ଯୁଗରେ", "ତାମ୍ର ଯୁଗରେ", "ପିତଳ ଯୁଗରେ" । ଏସବୁ କିନ୍ତୁ ବର୍ଷ ପଞ୍ଜି ନୁହଁ, ଏସବୁ ହେଉଛି ମଣିଷ ଶ୍ରମର ଇତିହାସ । ଏଥିରୁ ଆମେ ଜାଣିଥାଏଁ, ବିକାଶର କେଉଁ ପର୍ଯ୍ୟାୟରେ, ଯାତ୍ରା ପଥର କେଉଁ ସ୍ଥାନରେ ମଣିଷ ପହଞ୍ଚିଛି ।

ପଞ୍ଜିକାର ଥାଏ ଦୀର୍ଘତର ଏବଂ କ୍ଷୁଦ୍ରତର ସମୟ-ମାପକାଠି, ଯଥା ଶତାବ୍ଦୀ, ବର୍ଷ, ମାସ, ଦିନ ଏବଂ ଘଣ୍ଟା ।

ମଣିଷର ଶ୍ରମ ପଞ୍ଜିକାର ମଧ୍ୟ ଦୀର୍ଘତର ତଥା କ୍ଷୁଦ୍ରତର ମାପକାଠି ରହିଛି । ସେସବୁକୁ ଆମେ ପ୍ରକାଶ କରିଥାଏ ବିଭିନ୍ନ ନାମରେ, ଯଥା "ପ୍ରସ୍ତର ଯୁଗ, ସ୍ଥୂଳ ହତିଆରର ଯୁଗ" ବା "ପ୍ରସ୍ତର ଯୁଗ, ମସୃଣ ହତିଆରର ଯୁଗ" ।

ଆମ କାହାଣୀଟି ଏବେ ଆମକୁ ମଣିଷ ସମାଜର ଇତିହାସର ସେଇ ସମୟକୁ ନେଇ ଯାଇଛି, ଯେତେବେଳେ ପଥର ହତିଆର ସ୍ଥାନରେ ଦେଖା ଦେଇଛି ଧାତୁ ନିର୍ମିତ ହତିଆର । ପ୍ରଥମ କରି କୃଷି ଏବଂ ପଶୁପାଳନ ସେତେବେଳେ ଆରମ୍ଭ ହୋଇଛି । ଏହା ଦ୍ୱାରା ସମାଜରେ ଶ୍ରମ ବିଭାଗ ଦେଖା ଦେଇଛି ଏବଂ ଫଳରେ ଲୋକଙ୍କ ମଧ୍ୟରେ ଜିନିଷପତ୍ର ଅଦଳବଦଳ ହୋଇଛି । କୌଣସି ସ୍ଥାନରେ ଯଦି ତମ୍ବାର କୁରାଢ଼ି ତିଆରି ହେଉଥିଲା ତେବେ ତାହା ଅନ୍ୟ ଉପଜାତିମାନଙ୍କ ପାଖରେ ଯାଇ ପହଞ୍ଚି ଯାଉଥିଲା ।

ଲୋକେ ସେମାନଙ୍କ ନୌକାରେ ବସି ନଦୀରେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ

ଯାଇ ପାରିଲେ । ଶସ୍ୟ ବଦଳରେ ଚମଡ଼ା ବଦଳ କଲେ ବା ଲୁଗାପଟା ଦେଇ ମାଟି ପାତ୍ର ଆଣିଲେ । ଗୋଟିଏ ଉପଜାତିର ଅନେକ ତନ୍ତୀ ଥିଲା ବେଳେ, ଅନ୍ୟ ଏକ ଉପଜାତିରେ ଥିଲେ ସୁଦକ୍ଷ କୁମ୍ଭାର । ହ୍ରଦ ମଧ୍ୟରେ କାଠ ଖୁଣ୍ଟ ଉପରେ ନିର୍ମିତ ଗାଁର ଲୋକଙ୍କ ପାଖକୁ ସେମାନଙ୍କ ପ୍ରତିବେଶୀ ଗାଁର ଲୋକେ ମଧ୍ୟ ଜିନିଷପତ୍ର ଧରି ବଦଳ କରିବାକୁ ଆସୁଥିଲେ । ଜିନିଷପତ୍ରର ବିନିମୟ ଫଳରେ ଲୋକଙ୍କ ଅଭିଜ୍ଞତା ତଥା କାମ କରିବାର ନୂତନ ପଦ୍ଧତି ବିନିମୟ ହେଲା ।

ପ୍ରତ୍ୟେକଟି ଉପଜାତିର ଥିଲା ନିଜସ୍ୱ କଥିତ ଭାଷା, ତେଣୁ ଗୋଟିଏ ଉପଜାତି ସହିତ ଆଉ ଗୋଟିଏ ଉପଜାତି କଥା କହିଲା ବେଳେ ଠାର-ଭାଷାରେ କଥାବାର୍ତ୍ତା ହେଉଥିଲେ । ତା ସତ୍ତ୍ୱେ, ଯେଉଁମାନେ ଜିନିଷ ବିନିମୟ କରିବାକୁ ଆସୁଥିଲେ ସେମାନେ ଫେରିଗଲା ବେଳେ ସେଠାକାର ଲୋକଙ୍କ ଦ୍ୱାରା ପ୍ରସ୍ତୁତ ଜିନିଷପତ୍ର କେବଳ ନୁହେଁ, ଅଜଣା ନୂଆ ଶବ୍ଦସବୁ ମଧ୍ୟ ନେଇ ଯାଉଥିଲେ । ଏହି ଭାବେ ଉପଜାତୀୟ କଥିତ ଭାଷା ଅନ୍ୟଠିକୁ ଯାଉଥିଲା ଏବଂ ମିଶି ଯାଉଥିଲା । ଏଥି ସଙ୍ଗେ ସଙ୍ଗେ ପ୍ରତ୍ୟେକଟି ଶବ୍ଦ ପଛରେ ଥିବା ଅର୍ଥକୁ ନୂଆ ଶବ୍ଦ ସହିତ ମଧ୍ୟ ଗ୍ରହଣ କରି ନିଆଯାଉଥିଲା । ପ୍ରତିବେଶୀ ଉପଜାତିର ଦେବତାମାନେ ଏହି ଭାବେ ନିଜ ଜାତିର ଦେବତାଙ୍କ ସହିତ ଆସନ ଲାଭ କରୁଥିଲେ । ବିଭିନ୍ନ ଉପଜାତିମାନଙ୍କ ଦ୍ୱାରା ସୃଷ୍ଟ ବିଶ୍ୱାସରାଜି ମଧ୍ୟରୁ ଭବିଷ୍ୟତରେ ସମସ୍ତ ଜାତିଙ୍କର ସାଧାରଣ ବିଶ୍ୱାସରେ ପରିଣତ ହେଉଥିଲା ।

ମଣିଷ ଅପେକ୍ଷା ଦେବତାମାନେ ଶୀଘ୍ର ଗତି କରୁଥିଲେ । ନୂଆ ଜାଗାରେ ସେମାନଙ୍କର ନୂଆ ନାମକରଣ ହେଉଥିଲା । ତା ସତ୍ତ୍ୱେ ସେମାନଙ୍କୁ ଚିହ୍ନିବାରେ ଅସୁବିଧା ହେଉ ନଥିଲା ।

ପ୍ରାଚୀନ ଯୁଗର ଲୋକଙ୍କ ଧର୍ମ ସଂପର୍କରେ ଅଧ୍ୟୟନ କଲାବେଳେ ଆମେ ବେବିଲନିଆର ତାମୁଜ୍, ମିଶରର ଓସିରିସ୍ ଏବଂ ଗ୍ରୀକ୍ ଆଦୋନିସ୍‌ରେ ଏକ ଏବଂ ଅଭିନ୍ନ ଦେବତାକୁ ଦେଖିବାକୁ ପାଇଥାଏଁ । ସେଇ ଏକା ପ୍ରାଚୀନ କୃଷି ଦେବତା ହେମନ୍ତ କାଳରେ ମୃତ୍ୟୁବରଣ କରି ପୁଣି ପ୍ରତିବର୍ଷ ବସନ୍ତ କାଳରେ ମାଟି ତଳୁ ଉଠି ଆସନ୍ତି ।

ଆମେ ଚେଷ୍ଟା କଲେ ମାନଚିତ୍ରରୁ ବାହାର କରି ପାରିବା କିପରି ଦେବଦେବୀମାନେ ଗୋଟିଏ ଦେଶରୁ ଅନ୍ୟ ଦେଶକୁ ଆସିଛନ୍ତି ।

ଦୃଷ୍ଟାନ୍ତ ସ୍ୱରୂପ ଗ୍ରୀସ୍‌ର ଆଦୋନିସ୍ ଦେବତା ସିରିଆରୁ ଆସି ଗ୍ରୀସ୍‌ରେ ଅବତରଣ କରିଥିଲେ । ସିରିଆରେ ବାସ କରୁଥିଲେ ଇହୁଦୀ ଜାତିର ଲୋକେ । ଏହି ଦେବତାଙ୍କ ନାମରୁ ମଧ୍ୟ ଏହି କଥାର ସତ୍ୟତା ପ୍ରମାଣିତ ହୋଇଥାଏ । ଇହୁଦୀ ଭାଷାରେ

ଆଡୋନିସ୍ ଅର୍ଥ ହେଉଛି 'ପ୍ରଭୁ' । ଗ୍ରୀକ୍‌ମାନେ ଏହି ଶବ୍ଦର ଅର୍ଥ ଜାଣି ନଥିଲେ, ସେମାନେ ଏହାକୁ ଏକ ବିଶେଷ ଦେବତାର ନାମ ହିସାବରେ ଗ୍ରହଣ କରି ନେଲେ ।

ଏହି ଭାବେ ପଣ୍ୟ, ଶବ୍ଦ ଆଉ ଦେବତାମାନେ ଆଦାନ ପ୍ରଦାନ ହୋଇଥିଲେ ।

ଏହି ବଦଳ କାର୍ଯ୍ୟଟା ଯେ ଶାନ୍ତିପୂର୍ଣ୍ଣ ଭାବେ ସୁରୁଖୁରୁରେ ସର୍ବଦା ହେଉଥିଲା, ତା ନୁହେଁ । ଆଗନ୍ତୁକମାନେ ଯଦି ଅନ୍ୟମାନେ ଉତ୍ପାଦନ କରିଥିବା ତମ୍ବା, ଲୁଗାପଟା ଏବଂ ଶସ୍ୟକୁ ବଳପୂର୍ବକ ପାଇ ଗଲେ ସେ କାମ କରିବାକୁ ଦ୍ୱିଧାବୋଧ କରୁନଥିଲେ । ଏହି ଭାବେ ବହୁ ସମୟରେ ଅସାଧୁ ବିନିମୟ ଖୋଲା ଲୁଟ ତରାଜ ବା ଡକାୟତିରେ ପରିଣତ ହେଲା । ଆଗନ୍ତୁକ ଏବଂ ସେମାନଙ୍କ ସତ୍କାରକମାନେ ପରସ୍ପର ଉପରେ ଆକ୍ରମଣ କରୁଥିଲେ ଏବଂ ଯେଉଁମାନେ ଶକ୍ତିଶାଳୀ ଥିଲେ ସେମାନେ ଜିତୁଥିଲେ । ଅପରିଚିତ ଲୋକକୁ ମାରି ଦେବା ବା ତା'ର ସଂପତ୍ତି ଲୁଟି ନେବାକୁ ମନ୍ଦ କାମ ବୋଲି ବିଚାର କରାଯାଉ ନଥିଲା ।

ତେଣୁ କରି ସେତେବେଳର ପ୍ରତିଟି ଗ୍ରାମ ଗୋଟିଏ ଗୋଟିଏ ଦୁର୍ଗ ଭଳି ଦିଶୁଥିଲେ । ଚାରି ପାଖରେ ମାଟିର ପାଚିରୀ ତୋଳି ଦିଆଯାଉଥିଲା, ଯା ଫଳରେ ଅନାବଶ୍ୟକ ଆଗନ୍ତୁକମାନେ ଅତର୍କିତ ଭାବେ ଗ୍ରାମ ଭିତରକୁ ଆସି ପାରିବେ ନାହିଁ ।

ଗୋଟିଏ ଉପଜାତି ବା କୁଳର ଲୋକକୁ ଅନ୍ୟ ଉପଜାତି ବା କୁଳର ଲୋକେ



ପ୍ରାଚୀନ ମିଶରର ଗ୍ରାମରେ ବିଭିନ୍ନ ବସ୍ତୁର ବିନିମୟ ।

ମୋଟେ ବିଶ୍ୱାସ କରୁ ନଥିଲେ । ପ୍ରତିଟି ଉପଜାତି ତା ନିଜ କୁଳର ଲୋକକୁ "ଲୋକ" ବା ମଣିଷ ବୋଲି ମଣୁଥିଲା, ଅନ୍ୟମାନଙ୍କୁ ସେମାନେ ମଣିଷ ବୋଲି ମଣୁ ନଥିଲେ । ନିଜକୁ "ସୂର୍ଯ୍ୟ ବଂଶ" ବା "ଆକାଶର ମଣିଷ" ବୋଲି କହିଲା ବେଳେ ଅନ୍ୟମାନଙ୍କୁ କୁତ୍ସିତ ନାମସବୁ ଦେଉଥିଲେ । ଅନେକ ସମୟରେ ସେଇସବୁ କୁତ୍ସିତ ନାମ ରହିଯାଉଥିଲା, ଯେପର୍ଯ୍ୟନ୍ତ ସେମାନଙ୍କର ଅସଲ ନାମଟା ଜଣାଯାଉ ନଥିଲା ।

ଅନ୍ୟ ଜାତି ପ୍ରତି ଏହି ଘୃଣା ବିଷୟରେ ଆମେ ଯେତେବେଳେ ଐତିହାସିକ ଏବଂ ଆବିଷ୍କାରକଙ୍କ ଦ୍ୱାରା ଲିଖିତ ପୁସ୍ତକସବୁ ପଢ଼େଁ ଆମ ଯୁଗରେ ବର୍ଣ୍ଣ ବିଦ୍ୱେଷୀମାନଙ୍କ ଦ୍ୱାରା ସଚେତନ ଭାବେ ଅନ୍ୟ ଲୋକମାନଙ୍କ ପ୍ରତି ସୃଷ୍ଟି କରୁଥିବା ଘୃଣା କଥା ମନେ ପଡ଼ିଯାଏ । ସେମାନେ ନିଜକୁ ହିଁ କେବଳ "ମଣିଷ" ବୋଲି ବିଚାର କରନ୍ତି । ସେମାନଙ୍କ ମତରେ ଅନ୍ୟମାନେ ମଣିଷ ନୁହନ୍ତି, ମ୍ଲେଛ ବା ନୀଚ ଜାତିର ଲୋକ ।

ଇତିହାସ ଆମକୁ ଶିକ୍ଷା ଦିଏ, ଏ ପୃଥିବୀରେ ବଡ଼ ଜାତି ବୋଲି କିଛି ନାହିଁ । ଅସଲ କଥାଟା ହେଉଛି, କିଏ ସଂସ୍କୃତି ଦିଗରୁ ବେଶି ଆଗେଇ ଯାଇଛି, ଆଉ କିଏ ପଛରେ ପଡ଼ି ଯାଇଛି । ମଣିଷଜାତିର କ୍ରମର ପଞ୍ଜିକା ଅନୁଯାୟୀ ସମକାଳୀନ ସମସ୍ତ ଜାତି ସମାନ ଐତିହାସିକ ଯୁଗର ନୁହନ୍ତି ।

ଅକ୍ଟୋବର ସମାଜବାଦୀ ମହାବିପ୍ଳବ ପୂର୍ବରୁ ରୁଷିଆର ସମସ୍ତ ଜାତି ବିକାଶ ସମାନ ପର୍ଯ୍ୟାୟରେ ପହଞ୍ଚି ନଥିଲେ । ସେମାନଙ୍କ ମଧ୍ୟରୁ କେତେକ ଯନ୍ତ୍ର ଯୁଗରେ ବାସ କଲାବେଳେ, ଆଉ କେତେକ ପ୍ରାଗୈତିହାସିକ କାଠ ଲଙ୍ଗଳରେ ଚାଷ କରୁଥିଲେ ଏବଂ ଆଦିମ ଯୁଗର ତନ୍ତରେ ଲୁଗା ବୁଣୁଥିଲେ । ରୁଷିଆରେ ଏପରି ଲୋକ ବି ଥିଲେ, ଯେଉଁମାନେ ହାଡ଼ରେ ହତିଆର ତିଆରି କରୁଥିଲେ ଏବଂ ଲୁହା ବୋଲି ଗୋଟାଏ ଧାତୁ ଅଛି ବୋଲି ଜାଣି ନଥିଲେ ।

ଏବେ ସୋଭିଏତ୍ ୟୁନିଅନ୍‌ର ଅଧିକ ଉନ୍ନତ ଜାତିମାନେ ଅତି ପଛରେ ପଡ଼ିଥିବା ଜାତିମାନଙ୍କୁ ସାହାଯ୍ୟ କରୁଛନ୍ତି । ମାତ୍ର ତିରିଶ ବର୍ଷ ମଧ୍ୟରେ ମଧ୍ୟ ଏସିଆ, ସାଇବେରିଆ ଏବଂ ସୁଦୂର ଉତ୍ତରାଞ୍ଚଳର ଜାତିମାନେ ବହୁ ଶତାବ୍ଦୀ ଆଗେଇ ଆସିଛନ୍ତି ।

ମଣିଷର କ୍ରମ ପଞ୍ଜି ଅନୁଯାୟୀ ଆମ ଦେଶର ସକଳ ଜାତି ଏବେ ସମାଜବାଦୀ ଯୁଗର ଲୋକ । ଏବଂ ଆମ ଦେଶର ସମସ୍ତ ଜାତି ହେଉଛନ୍ତି ସମାନ ।

# ଦଶମ ଅଧ୍ୟାୟ

## ଦୁଇଟି ନିୟମ ।

ଜାହାଜରେ ଯାଇଁ ଯାଇଁ ମଣିଷ ଯେ କେବଳ ନୂତନ ଦେଶ ଆବିଷ୍କାର କରିଛି ତାହା ନୁହେଁ, ତତ୍ ସଙ୍ଗେ ସଙ୍ଗେ ଇତିହାସର ବହୁ ବିସ୍ମୃତ ଯୁଗକୁ ମଧ୍ୟ ଆବିଷ୍କାର କରିଛି ।

ଅଷ୍ଟ୍ରେଲିଆ ଆବିଷ୍କାର କରିବାଟା ୟୁରୋପୀୟମାନଙ୍କ ପକ୍ଷରେ ଏକ ବିରାଟ ବିଜୟ ଥିଲା, କାରଣ ସେମାନେ ନୂଆ ଏକ ମହାଦେଶ ଆବିଷ୍କାର କରି ଦଖଲ କରି ନେଇଥିଲେ ।

କିନ୍ତୁ ୟୁରୋପୀୟମାନଙ୍କର ଏହି ବିରାଟ ବିଜୟଟା ଅଷ୍ଟ୍ରେଲିଆର ଅଧିବାସୀମାନଙ୍କ ପକ୍ଷରେ ବିରାଟ ବିପର୍ଯ୍ୟୟର କାରଣ ହୋଇଥିଲା । ମଣିଷର କ୍ରମ ପଞ୍ଜି ଅନୁସାରେ ଅଷ୍ଟ୍ରେଲିଆର ଲୋକେ ଏବେବି ଏକ ଅତୀତ ଯୁଗରେ ବାସ କରୁଛନ୍ତି । ସେମାନେ ୟୁରୋପୀୟମାନଙ୍କ ଗ୍ରୀତି ଚଳନ ବିଷୟରେ ଜାଣି ନଥିଲେ ଏବଂ ସେସବୁକୁ ମାନି ନେବାକୁ ପ୍ରସ୍ତୁତ ନଥିଲେ । ସେମାନଙ୍କର ଏହି "ଅପରାଧ" ପାଇଁ ୟୁରୋପୀୟମାନେ ସେମାନଙ୍କୁ ବଣ ଜନ୍ତୁ ପରି ଗୋଡ଼ାଇ ଗୋଡ଼ାଇ ମାରିଛନ୍ତି । ଅଷ୍ଟ୍ରେଲିଆରେ ଲୋକେ ତମ୍ବୁ ପକେଇ ରହିଲା ବେଳେ ୟୁରୋପର ସହରମାନଙ୍କରେ ବିଶାଳ ପ୍ରାସାଦମାନ ମୁଣ୍ଡ ଟେକି ଉଠୁଥିଲା । ଅଷ୍ଟ୍ରେଲିଆ ଲୋକମାନେ ବ୍ୟକ୍ତିଗତ ସଂପତ୍ତି କ'ଣ ଜାଣି ନଥିଲେ । କିନ୍ତୁ ୟୁରୋପରେ ସେତେବେଳେ କୌଣସି ଜମିଦାରର ଜଙ୍ଗଲରୁ ହରିଣଟିଏ କେହି ମାରି ଦେଲେ ସେ ଶିକାରୀକୁ ଜେଲଦଣ୍ଡ ଭୋଗିବାକୁ ପଡ଼ୁଥିଲା ।

ଅଷ୍ଟ୍ରେଲୀୟମାନଙ୍କ ଆଖିରେ ଯେଉଁଟା ବିଧି, ୟୁରୋପୀୟମାନଙ୍କ ଆଖିରେ ତାହା ଥିଲା ଅପରାଧ ।

ଅଷ୍ଟ୍ରେଲିଆର ଶିକାରୀମାନେ ମେଣ୍ଢା ପଲଟାଏ ଦେଖିଲା କ୍ଷଣି ଉଲ୍ଲାସରେ ମାତି ଉଠି ସେସବୁର ଗ୍ରୀ ପାଖରେ ଘେରି ଯାଉଥିଲେ । ମେଣ୍ଢାମାନଙ୍କ ଉପରକୁ ବର୍ଛା ଏବଂ ବୁମରଙ୍ଗ ନିକ୍ଷେପ କରୁଥିଲେ । କିନ୍ତୁ ଅନ୍ୟ ଦିଗରେ ୟୁରୋପର ଗ୍ରୀଷୀମାନଙ୍କ ବନ୍ଧୁକ ଏ କାମରେ ବାଧା ଦେଉଥିଲା ।

ୟୁରୋପର ଗ୍ରୀଷୀ ଭାବୁଥିଲା ମେଣ୍ଢା ହେଉଛି ତା'ର ବ୍ୟକ୍ତିଗତ ସଂପତ୍ତି । କିନ୍ତୁ, ଆଦିମ ଅଷ୍ଟ୍ରେଲୀୟ ଶିକାରୀ ପାଇଁ ମେଣ୍ଢା ଥିଲା ଏକ ଚମତ୍କାର ଶିକାର ।

ୟୁରୋପର ଆଇନ ଅନୁଯାୟୀ "ଯିଏ ମେଣ୍ଢା କିଣିଛି ବା ପାଳିଛି ସେ ହେଉଛି ତା'ର ମାଲିକ", କିନ୍ତୁ ଅଷ୍ଟ୍ରେଲିଆର ନିୟମ ଥିଲା, "ଯିଏ ମେଣ୍ଢା ବା ଅନ୍ୟ ପଶୁକୁ ଶିକାର କରେ, ସେ ହେଉଛି ତା'ର ।"

ଅଷ୍ଟ୍ରେଲୀୟମାନେ ଯେହେତୁ ସେମାନଙ୍କ ଯୁଗର ନିୟମକୁ ମାନୁଥିଲେ, ୟୁରୋପୀୟମାନେ ସେଇ ହେତୁ ସେମାନଙ୍କୁ ମେଣ୍ଢା ଖୁଆଡ଼ରେ ପଶିଥିବା ହେଟା ବାଘ ଭଳି ହତ୍ୟା କରୁଥିଲେ । ସେମାନଙ୍କ ଆଖିରେ ଅଷ୍ଟ୍ରେଲୀୟମାନେ ମଣିଷ ନଥିଲେ ।

ଏ ଦୁଇଟି ନିୟମ ପୁଣି ପରସ୍ପରର ବିରୋଧିତା କରୁଥିଲା ଯେତେବେଳେ ଅଷ୍ଟ୍ରେଲୀୟ ସ୍ତ୍ରୀଲୋକମାନେ ଆଳୁ କିଆରୀ ଦେଖୁଥିଲେ । କିଛି ନଭାବି ନଚିନ୍ତି ସେମାନେ ସେମାନଙ୍କର ଏହି ସୁସ୍ୱାଦୁ ଖାଦ୍ୟକୁ ଖୋଳିବାରେ ଲାଗି ପଡୁଥିଲେ । ଏଥିରେ ଆଶ୍ଚର୍ଯ୍ୟ ହେବାରେ କିଛି ନାହିଁ । କାରଣ ଅଷ୍ଟ୍ରେଲିଆରେ ତ ଅନେକ ଖାଦ୍ୟଯୋଗ୍ୟ ମୂଳ ମିଳେ ଏବଂ ଏତେ ଗୁଡ଼ାଏ ମୂଳକୁ ଗୋଟାଏ ଜାଗାରେ ପାଇ ଯାଇଥିବାରୁ ସେମାନେ ଖୁସି ହେବାର କଥା । ଘଣ୍ଟାକ ମଧ୍ୟରେ ସେମାନେ ଯେତେ ସଂଗ୍ରହ କରି ପାରିବେ, ମାସକରେ ବି କରି ପାରି ନଥାନ୍ତେ ।

କିନ୍ତୁ ସେମାନଙ୍କର ଏହି ଅପ୍ରତ୍ୟାଶିତ ସୌଭାଗ୍ୟଟା ସେମାନଙ୍କର କାଳ ହୁଏ । ବନ୍ଧୁକ ଆବାଜ ଛୁଟି ଆସେ ଏବଂ ସେ ସ୍ତ୍ରୀଲୋକମାନେ ଜଣକ ପରେ ଜଣେ ମାଟିରେ ଗଡ଼ି ପଡ଼ନ୍ତି ସେମାନଙ୍କ ମୁଣ୍ଡର ବୋଝ ସମେତ । କିଏ ସେମାନଙ୍କୁ ମାରିଲା ଏବଂ କାହିଁକି ମାରିଲା, ସେ କଥା ସେମାନେ ଆଉ କେବେ ବୁଝିବେ ନାହିଁ ।

ଆମେରିକା ଆବିଷ୍କାର ମଧ୍ୟ ଏହି ଦୁଇଟି ବିପରୀତ ଦୁନିଆ ମଧ୍ୟରେ ଯୁଦ୍ଧକୁ ପୁନରାବୃତ୍ତ କରିଥିଲା ।

## ପୁରୁଣା "ନୂତନ ଜଗତ" ।

ଆମେରିକା ଆବିଷ୍କାର କରିଥିବା ୟୁରୋପୀୟମାନେ ଭାବିଥିଲେ ସେମାନେ ନୂଆ ଏକ ଜଗତ ଆବିଷ୍କାର କରିଛନ୍ତି ।

ଏହି ଘଟଣାଟିକୁ ସ୍ମରଣ କରି କଲମ୍ବସ୍‌ଙ୍କୁ ମହାସାମରିକ ସମ୍ମାନରେ ସମ୍ମାନିତ କରାଯାଇ ଥିଲା ।

କିନ୍ତୁ ବାସ୍ତବରେ ଏହି "ନୂଆ ଜଗତଟି" ଥିଲା ଏକ ପୁରାତନ ଜଗତ । ୟୁରୋପୀୟମାନେ ଅଜ୍ଞାତସାରରେ ସେମାନଙ୍କ ନିଜ ଅତୀତକୁ ଆବିଷ୍କାର କରିଥିଲେ, ଯାହାକୁ ସେମାନେ ବହୁଦିନରୁ ଭୁଲି ଯାଇଥିଲେ ।

ସେମାନେ ଭାବିଥିଲେ ଆମେରିକାର ଲୋହିତ ଭାରତୀୟମାନେ ଅସଭ୍ୟ ଏବଂ ଅବୋଧ୍ୟ । ସେମାନଙ୍କର ଘର ଦ୍ୱାର, ପୋଷାକ ପରିଚ୍ଛଦ ସହିତ ୟୁରୋପୀୟମାନଙ୍କ ଘର ଦ୍ୱାର ବା ପୋଷାକ ପରିଚ୍ଛଦର ଟିକିଏ ହେଲେ ସାମଞ୍ଜସ୍ୟ ନଥିଲା ।

ଉତ୍ତର ଆମେରିକାର ବାସିନ୍ଦାମାନେ ସେ ପର୍ଯ୍ୟନ୍ତ ପଥର ଆଉ ହାଡ଼ରେ ବର୍ଚ୍ଛା ଏବଂ ତୀର ତିଆରି କରୁଥିଲେ । ଲୁହା କ'ଣ ସେମାନେ ସେତେବେଳେ ଜାଣି ନଥିଲେ । କୃଷି କାର୍ଯ୍ୟ ଅବଶ୍ୟ ସେମାନଙ୍କୁ କିଛି ଜଣା ଥିଲା : ସେମାନେ ମକ୍କା, ଲାଉ, ଶିମ ଏବଂ ଧୂଆଁପତ୍ର ଚାଷ କରୁଥିଲେ । କିନ୍ତୁ ସେମାନଙ୍କର ପ୍ରଧାନ ଜୀବିକା ଥିଲା ଶିକାର । କାଠ ଘରେ ସେମାନେ ରହୁଥିଲେ ଏବଂ ଗାଁ ଚାରି ପାଖକୁ ଉଚ୍ଚ ବେଢ଼ା ଦେଇ ଘେରେଇକି ରଖୁଥିଲେ ।

ଆଉ ଦକ୍ଷିଣକୁ, ଅର୍ଥାତ୍ ମେକ୍ସିକୋର ଲୋହିତ ଭାରତୀୟମାନେ ତମ୍ବା ହତିଆର ବ୍ୟବହାର କରୁଥିଲେ ଏବଂ ସୁନା ଗହଣା ପିନ୍ଧୁଥିଲେ । ଖରାରେ ଶୁଖା



ଲୋହିତଭାରତୀୟମାନେ କାଠଘରମାନଙ୍କରେ ବାସ କରୁଥିଲେ ଏବଂ ନିଜର ଗ୍ରାମଗୁଡ଼ିକୁ ଉଚ୍ଚ କାଠ ପାଚିରୀ ଦେଇ ଘେରାଇ ଦେଉଥିଲେ ।
(ଷୋଳହ ଶତାବ୍ଦୀର ଖୋଦିତ ଚିତ୍ର)

ହୋଇଥିବା ଇଟା ତିଆରି ବଡ଼ ବଡ଼ ଘରେ ବାସ କରୁଥିଲେ । ସେସବୁ ଘରେ ପଇସ୍ତରା ଦିଆଯାଇଥିଲା ।

ଆମେରିକାର ପ୍ରଥମ ଔପନିବେଶିକ ଏବଂ ବିଜେତାମାନେ ସେମାନଙ୍କ ଡାଇରିରେ ଏସବୁକୁ ବିଶଦ ଭାବେ ବର୍ଣ୍ଣନା କରିଛନ୍ତି ।

ଜିନିଷପତ୍ରର ବର୍ଣ୍ଣନା କରିବାଟା ଯେତେ ସହଜ କୌଣସି ଜୀବନ ଯାପନର ଧାରା ସଂପର୍କରେ ବର୍ଣ୍ଣନା କରିବା ସେତେ ସହଜ ନୁହେଁ ।

ଆମେରିକାରେ ଜୀବନ ଯାପନର ଧାରା ସେତେବେଳେ ୟୁରୋପୀୟମାନଙ୍କ ପକ୍ଷରେ ଅଜ୍ଞାତ ଥିଲା, ସେସବୁକୁ ସେମାନେ ବୁଝିପାରୁ ନଥିଲେ । ତେଣୁ ସେମାନେ ଯେଉଁସବୁ ବର୍ଣ୍ଣନା କରିଛନ୍ତି ସେସବୁ ଅସ୍ପଷ୍ଟ ଏବଂ ଭ୍ରାନ୍ତିପୂର୍ଣ୍ଣ ।

ଏହି "ନୂତନ ଜଗତରେ" ମୁଦ୍ରା ନଥିଲା, ବ୍ୟବସାୟୀ ନଥିଲେ, ଧନୀ ଦରିଦ୍ରର ଭେଦାଭେଦ ବି ନଥିଲା । କେତେକ ଲୋହିତ ଭାରତୀୟ ଉପଜାତି ସୁନାରେ ଜିନିଷ ତିଆରି କରି ଜାଣିଥିଲେ, କିନ୍ତୁ ତା'ର ମୂଲ୍ୟ ଜାଣି ନଥିଲେ ।

କଲମ୍ବସ୍‌ଙ୍କ ଜାହାଜ ଚାଳକମାନେ ସର୍ବପ୍ରଥମେ ଯେଉଁସବୁ ଲୋହିତ ଭାରତୀୟଙ୍କୁ ଦେଖିଥିଲେ ସେମାନେ ନାକରେ ସୁନା କାଠି ଏବଂ ଗଳାରେ ସୁନା ହାର ପିନ୍ଧିଥିଲେ । କିନ୍ତୁ ସେମାନେ ନିର୍ବିକାରରେ କାଚ ବଳା ଏବଂ ଶସ୍ତା ମନୋହାରୀ ଜିନିଷ ବଦଳରେ ସେଇସବୁ ସୁନାକୁ ଦେଇ ଦେଉଥିଲେ ।

ମହାସାଗର ପାର ହୋଇ ଆସିଥିବା ୟୁରୋପୀୟମାନେ ଜାଣିଥିଲେ, ପୃଥିବୀର ସମସ୍ତ ମଣିଷ ଦାସ ଏବଂ ପ୍ରଭୁ, ଜମିଦାର ଏବଂ ଚାଷୀ ହିସାବରେ ବିଭକ୍ତ । କିନ୍ତୁ ଆମେରିକାର ଲୋକମାନେ ଥିଲେ ସମାନ । ସେଠି କୌଣସି ଉପଜାତି କୌଣସି ଏକ ଶତ୍ରୁକୁ ବନ୍ଦୀ କଲେ ତାକୁ ଦାସ କିମ୍ବା ଚାକର କରୁ ନଥିଲେ । ତାକୁ ସଙ୍ଗେ ସଙ୍ଗେ ମାରି ଦେଉଥିଲେ କିମ୍ବା ନିଜ ଦଳରେ ମିଶେଇ ନେଉଥିଲେ ।

ସେଠାରେ କାହାରି ପ୍ରାସାଦ, ଅଟ୍ଟାଳିକା, ବା ମହଲ ନଥିଲା । ଲୋକେ କୋଠ ଘରେ ରହୁଥିଲେ, ତାକୁ ସେମାନେ କହୁଥିଲେ "ଲମ୍ବା ଘର" । କୁଳର ସମସ୍ତ ଲୋକେ ଏକାଠି ରହୁଥିଲେ ଏବଂ ଏହି ବଡ଼ ପରିବାରଟିର ଭରଣ ପୋଷଣର ଦାୟିତ୍ୱ ସମସ୍ତଙ୍କ ଉପରେ ସମାନ ଥିଲା । ଜମିଜମା କାହାର ଏକୁଟିଆ ସଂପତ୍ତି ହୋଇ ନଥିଲା, ସମସ୍ତ ଗୋଷ୍ଠୀର ମାଲିକାନା ଥିଲା ତା ଉପରେ । ମାଲିକର ଜମିରେ କାମ କରୁଥିବା ଭୂମିଦାସ ନଥିଲେ । ସମସ୍ତେ ଥିଲେ ସ୍ୱାଧୀନ ।

ୟୁରୋପୀୟମାନେ ଏସବୁକୁ ଦେଖି ବୁଝିପାରୁ ନଥିଲେ । କାରଣ ସେମାନେ ସେତେବେଳେ ବାସ କରୁଥିଲେ ସାମନ୍ତିଆ ଯୁଗରେ, ଭୂମିଦାସ ପ୍ରଥା ଥିଲା ସେମାନଙ୍କ ଦେଶର ନିୟମ ।

ୟୁରୋପରେ କେହି ଅନ୍ୟର ସଂପତ୍ତି ନେଇ ଗଲେ ପୁଲିସ୍ ତା'ର ଗଳାକୁ ଧରି ସଙ୍ଗେ ସଙ୍ଗେ ଜେଲ୍‌ରେ ନେଇ ଠୁଙ୍କି ଦେବ । କିନ୍ତୁ ଏଠି ପୁଲିସ୍ ନଥିଲେ କି ବ୍ୟକ୍ତିଗତ ସଂପତ୍ତି ବା ଜେଲ୍ ନଥିଲା । କିନ୍ତୁ ସବୁଠି ସବୁକିଛିରେ ଥିଲା ଶୃଙ୍ଖଳା । ଲୋକେ ଶୃଙ୍ଖଳା ମାନି ଚଳୁଥିଲେ, ଯଦିଓ ସେ ଶୃଙ୍ଖଳା ଥିଲା ୟୁରୋପୀୟ ଶୃଙ୍ଖଳାଠାରୁ ଭିନ୍ନ ।

ୟୁରୋପରେ ଆଇନସବୁ ଏଭଳି ଭାବେ ତିଆରି ହୋଇଥିଲା ଯଦ୍ୱାରା ଗରିବ ଲୋକେ ଧନୀମାନଙ୍କର ଜିନିଷକୁ କୌଣସିମତେ ନେଇ ପାରିବେ ନାହିଁ । ଚାକରମାନେ ସେମାନଙ୍କ ପ୍ରଭୁଙ୍କୁ ହାତ ଯୋଡ଼ିକି ଚଳିବେ, ଭୂମିଦାସମାନେ ଜୀବନ ସାରା ସେମାନଙ୍କ ଜମିଦାରଙ୍କ ଜମିରେ ଖଟୁଥିବେ ।

କିନ୍ତୁ ଆମେରିକାରେ ଗୋଷ୍ଠୀ ବା କୁଳର ସମସ୍ତେ ସମସ୍ତଙ୍କୁ ରକ୍ଷା କରନ୍ତି । କୁଳର କୌଣସି ଲୋକକୁ ଅନ୍ୟ କେହି ଖୁଣ୍ କରି ଦେଲେ କୁଳର ସମସ୍ତେ ତା'ର ପ୍ରତିଶୋଧ ନିଅନ୍ତି । ଖୁଣ୍ କରିଥିବା ଲୋକର ଆତ୍ମୀୟମାନେ ଯଦି ଖୁଣ୍ ହୋଇଥିବା ଲୋକର ଆତ୍ମୀୟମାନଙ୍କୁ ଆସି କ୍ଷମା ଭିକ୍ଷା କରନ୍ତି ଏବଂ ଉପହାର ପ୍ରଦାନ କରନ୍ତି, ତେବେ ସବୁ ଶାନ୍ତିପୂର୍ଣ୍ଣ ଭାବେ ମେଣ୍ଟିଯାଏ ।

ୟୁରୋପରେ ଥିଲେ ସମ୍ରାଟ୍, ରାଜା ଏବଂ ସାମନ୍ତମାନେ । ଏଠି କିନ୍ତୁ ରାଜା ନଥିଲେ କି ସିଂହାସନ ବି ନଥିଲା । କୁଳର ନେତାମାନଙ୍କୁ ନେଇ ଗଠିତ ଏକ ପରିଷଦ କୁଳର ସମସ୍ତଙ୍କ ସାମନାରେ ଶାସନ ବ୍ୟବସ୍ଥା ପରିଚାଳନା କରୁଥିଲେ । ଗୁଣ ଅନୁସାରେ ନେତାମାନେ ନିର୍ବାଚିତ ହେଉଥିଲେ ଏବଂ ଭଲ କାମ ନକରି ପାରିଲେ ତଡ଼ା ଖାଉଥିଲେ । ନେତାମାନେ କୁଳର ଏକଛତ୍ର ଅଧିପତି ନଥିଲେ । ସେଥି ପାଇଁ ଆମେରିକାର ଅନେକ ଲୋହିତ ଭାରତୀୟଙ୍କ ଭାଷାରେ "ନେତା" ମାନେ "ବକ୍ତା" ।

ପୁରୁଣା ଜଗତରେ ରାଜା ଯେମିତି ଥିଲେ ଜାତିର ସର୍ବୋଚ୍ଚ କର୍ତ୍ତା ସେଇପରି ପରିବାର ମଧ୍ୟରେ ବାପା ହେଉଥିଲେ କର୍ତ୍ତା । ରାଷ୍ଟ୍ର ହେଲା ସବୁଠାରୁ ବଡ଼ ସଂଗଠନ ଏବଂ ପରିବାର ସବୁଠାରୁ ଛୋଟ ସଂଗଠନ । ରାଜା ହିଁ ପ୍ରଜାବୃନ୍ଦଙ୍କର ବିଚାର କରି ଶାସ୍ତି ବିଧାନ କରୁଥିଲେ । ପରିବାରରେ ବାପା ପିଲାମାନଙ୍କର ବିଚାର କରି ଦଣ୍ଡ ଦେଉଥିଲେ । ରାଜା ମରିଗଲେ ବଡ଼ ରାଜପୁତ୍ର ସିଂହାସନରେ ବସୁଥିଲା ଏବଂ ବାପା ମରିଗଲେ ବଡ଼ ପୁଅ ସବୁ ସଂପତ୍ତି ପାଉଥିଲା ।

କିନ୍ତୁ ଏହି "ନୂତନ ଜଗତରେ" କୁଳର ପିଲାପିଲିଙ୍କ ଉପରେ ବାପାଙ୍କର କୌଣସି କର୍ତ୍ତୃତ୍ୱ ନଥିଲା । ପିଲାପିଲି ଥିଲେ ମା'ର ସଂପତ୍ତି । "ଲମ୍ବ ଘରେ" ସମସ୍ତ କର୍ତ୍ତୃତ୍ୱ ଥିଲା ସ୍ତ୍ରୀଲୋକଙ୍କ ହାତରେ । ୟୁରୋପୀୟ ପରିବାରମାନଙ୍କରେ ପୁଅ ଘରେ ରହେ ଏବଂ

ଝିଅମାନେ ବାହାଚୂରା ହୋଇ ସ୍ୱାମୀ ପରିବାରକୁ ଗ୍ଲଲିଯାଆନ୍ତି ଏଠି କିନ୍ତୁ ସବୁ କଥା ଓଲଟା । ସ୍ତ୍ରୀଲୋକମାନେ ଏଠାରେ ବି ବିବାହ କରି ସ୍ୱାମୀକୁ ଘରକୁ ଆଣୁଥିଲେ । ଏବଂ ସ୍ତ୍ରୀ ଥିଲେ ପରିବାରର କର୍ତ୍ତା ।

ଏ ସଂପର୍କରେ ଜଣେ ଭ୍ରମଣକାରୀ କ'ଣ ଲେଖିଛନ୍ତି ଶୁଣ :

"ମାଇପୀମାନେ ସାଧାରଣତଃ ପରିବାର ପରିଗ୍ଲଳନା କରନ୍ତି ଏବଂ ଫଳରେ ପରସ୍ପର ସହିତ ସେମାନେ ମିଳିକି ଚଳନ୍ତି । ସବୁ କିଛି ଚିଜ ଦରବ ଗୋଟିଏ କୋଠ ଭଣ୍ଡାରରେ ରହେ । କିନ୍ତୁ ଯେଉଁ ସ୍ୱାମୀ ବେଶି ପରିମାଣରେ ଖାଦ୍ୟପେୟ ଯୋଗାଡ଼ କରି ପାରେନା ତା ଦଶା ବଡ଼ ଖରାପ । ତା'ର ଯେତେ ପିଲପିଲି ଥାଆନ୍ତୁ ନା କାହିଁକି ଯେକୌଣସି ମୁହୂର୍ତ୍ତରେ ଆଦେଶ ଅନୁଯାୟୀ ତାକୁ ଲେଟା କମ୍ବଳ ଧରି ପଳାଇ ଯିବାକୁ ପଡ଼େ । ପ୍ରତିବାଦ କଲେ ଅବସ୍ଥା ଆହୁରି ଖରାପ, କପାଳରେ ଆହୁରି ଦୁଃଖ । ମାଇପୀ ଲୋକଙ୍କର ଅସୀମ କ୍ଷମତା । କେହି ଖୁଡ଼ୀ କିମ୍ବା ଗୋଷମା ଯଦି ତା ପାଇଁ ସୁପାରିସ୍ ନକରନ୍ତି ତେବେ ତାକୁ ନିଜ କୁଳକୁ ଫେରି ଯିବାକୁ ହୁଏ ବା ଅନ୍ୟ କୁଳର କାହାକୁ ବାହା ହୋଇଯାଏ । ସ୍ତ୍ରୀଲୋକମାନଙ୍କର ଅମାପ କ୍ଷମତା, ଦରକାର ପଡ଼ିଲେ କୁଳପତିର ଶିଙ୍ଗକୁ ସେମାନେ ଝିଙ୍କି ଦିଅନ୍ତି । ତା'ପରେ ସେ ଆଉ କୁଳପତି ହୋଇ ରହେ ନାହିଁ । କୁଳର ଅନ୍ୟ ପାଞ୍ଚ ଜଣଙ୍କ ପରି ସେ ଜଣେ ସାହସୀ ଲୋକ ଭଳି ଚଳେ । ସ୍ତ୍ରୀଲୋକମାନେ ହିଁ କୁଳର ନେତା ନିର୍ବାଚନ କରିଥାନ୍ତି ।"

ୟୁରୋପ ଭଳି ପୁରୁଣା ଜଗତରେ ସ୍ତ୍ରୀ ହେଉଛି ପୁରୁଷର ଦାସୀ । କିନ୍ତୁ ଲୋହିତ ଭାରତୀୟ ପରିବାରରେ ସ୍ତ୍ରୀ ହେଉଛି ଘରର କର୍ତ୍ତୀ । ବେଳେ ବେଳେ ସେ ମଧ୍ୟ କୁଳର ନେତ୍ରୀ ବନିଯାଇଥାଏ । ରୁଷିଆର କବି ପୁସିନ୍‌ଙ୍କର ଗୋଟିଏ ଗଳ୍ପ ଅଛି । ଜନ୍ ଟ୍ୟାନର ନାମକ ଜଣେ ଆମେରିକାନ୍‌କୁ କିପରି ଲୋହିତ ଭାରତୀୟମାନେ ଧରି ନେଇଥିଲେ ଏବଂ ନେତ୍—ନ—କ୍ୱା ନାମ୍ନୀ ଜଣେ ସ୍ତ୍ରୀଲୋକ ତାକୁ ଆଶ୍ରୟ ଦେଇଥିଲେ । କାହାଣୀଟି ସତ ଘଟଣାକୁ ନେଇ ରଚିତ । ନେତ୍—ନ—କ୍ୱା ଥିଲେ ଅଟେୱା ଉପଜାତୀର ନେତ୍ରୀ । ଏହି ସ୍ତ୍ରୀଲୋକଟିର ନୌକାରେ ସବୁବେଳେ ନିଶାଣଟିଏ ଉଡ଼ୁଥିଲା ଏବଂ ଇଂରେଜମାନଙ୍କ ଦୁର୍ଗକୁ ଆସିଲେ ସେମାନେ ତାଙ୍କୁ ତୋପ ଫୁଟାଇ ଅଭ୍ୟର୍ଥନା ଜଣାଉଥିଲେ । ତା ଅର୍ଥ କେବଳ ଲୋହିତ ଭାରତୀୟମାନେ ନୁହଁ, ୟୁରୋପୀୟମାନେ ମଧ୍ୟ ତାଙ୍କୁ ସମ୍ମାନ ପ୍ରଦର୍ଶନ କରୁଥିଲେ ।

ଏହିସବୁ ଲୋହିତ ଭାରତୀୟ ପରିବାରରେ ବାପା ଆଡ଼ ନହୋଇ ମା ଆଡ଼ୁ ବଂଶର ପରିଚୟ ଦେବାକୁ ପଡ଼ୁଥିଲା । ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ୟୁରୋପରେ ପିଲମାନେ ବାପାଙ୍କର ବଂଶ ନାମ ଗ୍ରହଣ କରିଥାନ୍ତି, କିନ୍ତୁ ଆମେରିକାରେ

ସେମାନେ ମାଉ ବଂଶ ନାମ ଗ୍ରହଣ କରୁଥିଲେ । ବାପ ଯଦି "ହରିଣ କୁଳର" ଏବଂ ମା ଯଦି "ଭାଲୁ କୁଳର" ହୋଇଥାଏ, ତେବେ ପିଲାମାନେ "ଭାଲୁ କୁଳର" ହୁଅନ୍ତି । ପ୍ରତ୍ୟେକ କୁଳ ସ୍ତ୍ରୀଲୋକମାନଙ୍କୁ ଏବଂ ସେମାନଙ୍କ ଝିଅ, ନାତୁଣୀ ପଣନାତୁଣୀ ଆଦିଙ୍କୁ ନେଇ ଗଠିତ । ଅର୍ଥାତ୍ ପ୍ରତ୍ୟେକ କୁଳରେ ଝିଅ ହିଁ ବଂଶଧର ହୁଏ – ଝିଅ ପରେ ଝିଅର ଝିଅ, ଏବଂ ତା'ପରେ ତା'ର ଝିଅ, ଆଦି ।

ଏସବୁକୁ ୟୁରୋପୀୟମାନେ ବୁଝି ପାରି ନଥିଲେ । ତେଣୁ ସେମାନେ ଲୋହିତ ଭାରତୀୟମାନଙ୍କୁ ବର୍ଣ୍ୟ ଏବଂ ଅସଭ୍ୟ ବୋଲି କହିଥିଲେ ।

କିନ୍ତୁ, ସେମାନେ ସଂପୂର୍ଣ୍ଣ ଭୁଲି ଯାଇଥିଲେ ଯେ, ସେମାନଙ୍କ ନିଜ ପୂର୍ବପୁରୁଷମାନଙ୍କ ମଧ୍ୟରେ ଧନୁ ଶର ଆଉ ପ୍ରଥମ ଡଙ୍ଗା, କାଠୁଆ ଯୁଗରେ ମଧ୍ୟ ଏହିସବୁ ଆଚାର ବ୍ୟବହାର ପ୍ରଚଳିତ ଥିଲା ।

ପ୍ରଥମ ଔପନିବେଶିକ ଏବଂ ବିଜେତାମାନେ ଲୋହିତ ଭାରତୀୟ ଉପଜାତିମାନଙ୍କର କୁଳପତିମାନଙ୍କୁ ମୁଖିଆ ଏବଂ ଜମିଦାର ବୋଲି କହୁଥିଲେ । ସେମାନେ ଭାବିଥିଲେ "କୁଳପତି" ପଦବୀଟା ରାଜ ପଦବୀ ଏବଂ କୁଳ ଚିହ୍ନ ହେଉଛି ମର୍ଯ୍ୟାଦାସୂଚକ ଚିହ୍ନ । କୁଳପତିମାନଙ୍କ ପରିଷଦକୁ ସେମାନେ ସଭାସଦ୍ ମଣ୍ଡଳୀ ଏବଂ ସେନାପତିକୁ ରାଜା ବୋଲି ବିଚାରୁଥିଲେ । ଆମେମାନେ ଏ କ୍ଷଣି ସେନାପତିକୁ ରାଜା ବୋଲି କହିଲେ ଯେମିତି ଭୁଲ କରନ୍ତେ, ସେମାନେ ସେତେବେଳେ ସେଇମିତି କରିଥିଲେ ।

ଇତି ମଧ୍ୟରେ ଶହ ଶହ ବର୍ଷ ବିତିଗଲା, କିନ୍ତୁ ଆମେରିକାରେ ବାସ କରୁଥିବା ୟୁରୋପୀୟମାନେ ସେଠାକାର ମୂଳ ବାସିନ୍ଦାମାନଙ୍କର ଆଚାର ବ୍ୟବହାରକୁ ବୁଝି ପାରିଲେ ନାହିଁ । ଏହି ଭୁଲ ଧାରଣାଟା ବଦଳି ଥିଲା ଯେତେବେଳେ ଲୁଇସ୍ ମର୍ଗାନ୍ ନାମକ ଜଣେ ଆମେରିକାନ୍ ତାଙ୍କର "ପ୍ରାଚୀନ ସମାଜ" ଶୀର୍ଷକ ପୁସ୍ତକରେ ଦ୍ୱିତୀୟ ଥର ପାଇଁ ଆମେରିକା ଆବିଷ୍କାର କଲେ । ସେ ତାଙ୍କର ଏହି ପୁସ୍ତକରେ ପ୍ରମାଣ କଲେ ଯେ, ଆମେରିକାର ଇରୋକୁଇସ୍ ଏବଂ ଆଜଟେକ୍ ଆଦିବାସୀମାନେ ଏବେ ଯେଉଁ ବିକାଶର ସ୍ତରରେ ଅଛନ୍ତି ୟୁରୋପୀୟମାନେ ବହୁ ଶତାବ୍ଦୀ ପୂର୍ବେ ଠିକ୍ ସେଇ ସ୍ତରରେ ଥିଲେ । ସେ କଥା ସେମାନେ ଅନେକ ଦିନରୁ ପାସୋରି ପକାଇଛନ୍ତି ।

ମର୍ଗାନ୍ଙ୍କର ଉପରୋକ୍ତ ପୁସ୍ତକଟି ପ୍ରକାଶ ପାଇଥିଲା ୧୮୭୭ ମସିହାରେ, ଆମେ ଏବେ ଆମେରିକାର ପ୍ରଥମ ବିଜେତାମାନଙ୍କ ବିଷୟରେ କହୁଅଛୁ ।

ୟୁରୋପୀୟମାନେ ଲୋହିତ ଭାରତୀୟମାନଙ୍କୁ ବୁଝି ପାରି ନଥିଲେ କି ଲୋହିତ

ଭାରତୀୟମାନେ ସେମାନଙ୍କୁ ମଧ୍ୟ ବୁଝି ପାରି ନଥିଲେ । ସୁନା ଖଣ୍ଡକ ପାଇଁ ଜଣେ ୟୁରୋପୀୟ ଆଉ ଜଣେ ୟୁରୋପୀୟର ଗଳାକୁ କାହିଁକି ଚିପି ମାରି ଦେବା ପର୍ଯ୍ୟନ୍ତ ଯାଉଛି, ସେମାନେ ବୁଝି ପାରୁ ନଥିଲେ । ସେମାନେ ବୁଝି ପାରୁ ନଥିଲେ, ୟୁରୋପୀୟମାନେ ଆମେରିକାକୁ କାହିଁକି ଆସିଲେ ଏବଂ "ଅନ୍ୟର ରାଜ୍ୟକୁ ଜୟ କରିବାର" ଅର୍ଥ କ'ଣ ।

ପ୍ରାଗୈତିହାସିକ ମଣିଷର ଧାରଣା ଥିଲା, ଜମି କ୍ଷେତ ହେଉଛି କୁଳର ସଂପତ୍ତି ଏବଂ ସେସବୁକୁ କୁଳ ଦେବତା ରକ୍ଷା କରନ୍ତି । କେହି ଜୋର କରି ଅନ୍ୟ କୁଳର ଜମିକୁ ଦଖଲ କଲେ, ସେ କୁଳର ଦେବତା ତା ଉପରେ କୋପମାନ ହୁଅନ୍ତି ।

ଆମେରିକାର ଆଦିବାସୀମାନେ ମଧ୍ୟ ନିଜ ନିଜ ମଧ୍ୟରେ ଲଢ଼େଇ କରୁଥିଲେ । କିନ୍ତୁ ଯୁଦ୍ଧରେ ହାରି ଯାଉଥିବା କୁଳର ଲୋକଙ୍କୁ ସେମାନେ ଦାସରେ ପରିଣତ କରୁ ନଥିଲେ କି ସେମାନଙ୍କୁ ନିଜର ଆଇନ ଆଚରଣ ମାନିବାକୁ ବାଧ୍ୟ କରାଉ ନଥିଲେ । ଏପରି କି ପରାଜିତ କୁଳର ନେତା ମଧ୍ୟ ପଦଚ୍ୟୁତ ହେଉ ନଥିଲେ । ପରାଜିତ କେବଳ ଏକ ମାସୁଲ ତାଙ୍କୁ ଦେଉଥିଲା । କେବଳ କୁଳର ଲୋକେ ସେମାନଙ୍କ ନେତାଙ୍କୁ ବଦଳେଇ ନୂଆ ନେତା ନିର୍ବାଚନ କରୁଥିଲେ ।

ଏଇ ଭାବେ ଦୁଇଟା ଅଲଗା ଜଗତ, ଅଲଗା ବ୍ୟବସ୍ଥା ମଧ୍ୟରେ ଗ୍ଲଲିଥିଲା ସଂଘର୍ଷ । ଆମେରିକା ବିଜୟର ଇତିହାସ ହିଁ ହେଉଛି ସେଇ ଦୁଇ ଦୁନିଆ ମଧ୍ୟରେ ସଂଘର୍ଷର ଇତିହାସ ।

ସ୍ପେନ୍‌ବାସୀଙ୍କ ଦ୍ୱାରା ମେକ୍‌ସିକୋ ଦଖଲ ହେଉଛି ଆଉ ଏକ ଉଦାହରଣ ।

## ଭୁଲ ପରେ ଭୁଲ ।

୧୫୧୯ ଖ୍ରୀଷ୍ଟାବ୍ଦରେ ତିନି ମାସ୍ତୁଲବାଲା ଏଗାରଟି ଜାହାଜ ମେକ୍‌ସିକୋ ଉପକୂଳରେ ଦେଖା ଦେଇଥିଲା । ଜାହାଜଗୁଡ଼ିକର ପେଟି ଥିଲା ମୋଟା ଏବଂ ଆଗ ଆଉ ପଛ ଦୁଇ ଆଡ଼ ପାଣିର ଅନେକ ଉପରେ ଭାସୁଥିଲା । ଡେକ୍ ଉପରେ କମାଣ, ବର୍ଚ୍ଛା ଏବଂ ବନ୍ଧୁକଧାରୀ ଫଉଜ ଥିଲା । ପ୍ରଧାନ ଜାହାଜଟିର ସାମନାରେ ଦାଢ଼ିବାଲା ଚଉଡ଼ା କାନ୍ଧବାଲା ଜଣେ ଲୋକ । ଲୋକଟିର ଆଖି ପର୍ଯ୍ୟନ୍ତ ମାଡ଼ି ଆସିଥିଲା ମୁଣ୍ଡର ଟୋପିଟି । ଅପଲକ ଆଖିରେ ସେ ଗ୍ଲହିଁ ରହିଥିଲେ କୂଳରେ ସମାବେତ ଅର୍ଦ୍ଧଲଗ୍ନ ଲୋହିତ ଭାରତୀୟମାନଙ୍କୁ ।

ସେ ଲୋକଙ୍କର ନାମ ହେଉଛି କର୍ଟେଜ୍ । ମେକ୍‌ସିକୋ ଦଖଲ କରିବା ପାଇଁ

ସେନ୍ ତରଫରୁ ପ୍ରେରିତ ଅଭିଯାନର ନାୟକ । ତାଙ୍କୁ ଅବଶ୍ୟ ସ୍ପେନ୍ ସରକାର ଚାକିରିରୁ ବରଖାସ୍ତ କରିଥିଲେ । ସେଇ ବରଖାସ୍ତ ଚିଠିଟି ମଧ୍ୟ ତାଙ୍କ ସାଙ୍ଗରେ ଥିଲା । କିନ୍ତୁ କର୍ଟେଜ୍‌ଙ୍କ ଭଳି ଜଣେ ଦୁଃସାହସିକ ଲୋକର ସେଥିରେ କ'ଣ ଯାଏ ଆସେ । ସ୍ପେନ୍ ଏବଂ ତାଙ୍କ ମଧ୍ୟରେ ଗୋଟିଏ ମହାସାଗରର ଦୂରତ୍ୱ । ଏଠି ନିଜ ଜାହାଜରେ ତାଙ୍କର ସମ୍ରାଟ୍ ଭଳି କ୍ଷମତା ।

ଜାହାଜଗୁଡ଼ିକ ଲଙ୍ଗର ପକାଇଲେ । ସମୁଦ୍ର ଉପରେ ଆସିଲା ବେଳେ ବିଭିନ୍ନ ଦ୍ୱୀପରୁ ସେ ଅନେକ ଆଦିବାସୀଙ୍କୁ ଦାସ କରି ଆଣିଥିଲେ । ସେମାନଙ୍କ ଦ୍ୱାରା ଜାହାଜରୁ ଜିନିଷପତ୍ର, କମାଣ, ବନ୍ଧୁକ ଆଦି ଛୋଟ ଛୋଟ ନୌକାରେ ଭରାଗଲା । ତା'ପରେ ଡେକ୍ ଉପରକୁ ଅଣାଗଲା ଜାହାଜ ମଧ୍ୟରେ ଥିବା ଦଳେ ଘୋଡ଼ାଙ୍କୁ । ସେମାନେ ଏତେ ଡରି ଯାଇଥିଲେ ଯେ, ସେମାନଙ୍କୁ ନୌକା ମଧ୍ୟକୁ ନେବା ଏବଂ ଆହୁରି ମାରି କୂଳରେ ପହଞ୍ଚାଇବା କାଠିକରପାଠ ଥିଲା ।

କୂଳରେ ଥିବା ଲୋହିତ ଭାରତୀୟମାନେ ଆଶ୍ଚର୍ଯ୍ୟ ହୋଇ ଏହିସବୁ ଭାସାଣିଆ ଘର, ପୋଷାକପିନ୍ଧା ଧଳା ଚମଡ଼ାବାଲା ଲୋକ ଏବଂ ସେମାନଙ୍କ ଅସ୍ତ୍ରଶସ୍ତ୍ରକୁ ଦେଖୁଥିଲେ । କିନ୍ତୁ ସବୁଠାରୁ ବେଶି ଆଶ୍ଚର୍ଯ୍ୟ ଲାଗୁଥିଲା ହେଁସାରବ କରୁଥିବା ଲମ୍ବା କେଶର ଏବଂ ଲାଞ୍ଜବାଲା ପଶୁଗୁଡ଼ାଙ୍କୁ ଦେଖି । ଇତିପୂର୍ବରୁ ଏଭଳି ବିଚିତ୍ର ଜୀବଙ୍କୁ ସେମାନେ ଦେଖି ନଥିଲେ ।

ଗୋରା ଲୋକମାନଙ୍କର ଆଗମନ କାହାଣୀ ଦେଖୁ ଦେଖୁ କୂଳବର୍ତ୍ତୀ ଅଞ୍ଚଳ ଏବଂ ଦେଶ ଭିତରେ ରାଷ୍ଟ୍ର ହୋଇଗଲା । ପାହାଡ଼ଘେରା ଏକ ଉପତ୍ୟକାରେ ଆଜଟେକ୍ ଆଦିବାସୀମାନଙ୍କର ଗାଁଗୁଡ଼ିକ ଅବସ୍ଥିତ ଥିଲା । ସେଇସବୁ ଗାଁ ମଧ୍ୟରେ ଟେନୋଚ୍‌ଟିଟ୍‌ଲାନ୍ ଗାଁଟି ଥିଲା ସବୁଠୁ ବଡ଼ । ଗାଁଟି ଏକ ହ୍ରଦ ମଧ୍ୟରେ ଅବସ୍ଥିତ । କୂଳ ସହିତ ଗାଁଟି ଏକ ପୋଲ ଦ୍ୱାରା ସଂଯୁକ୍ତ ହୋଇଥିଲା । ଗାଁଟିର ଚକ୍ ଚକ୍ ସଫେଦ ଘର ଏବଂ ସୁନା ଚୂଡ଼ା ଶୋଭିତ ମନ୍ଦିରସବୁ ଅନେକ ଦୂରରୁ ନଜରରେ ପଡ଼ୁଥିଲା । ଆଜଟେକ୍‌ମାନଙ୍କର ଉଡ଼ୁଆ ଦଳପତି ମଣ୍ଟେଜୁମା ତାଙ୍କର ଯୋଦ୍ଧାମାନଙ୍କୁ ନେଇ ସବୁଠାରୁ ବଡ଼ ଘରଟିରେ ବାସ କରୁଥିଲେ ।

ଗୋରା ଲୋକମାନଙ୍କ ଆସିବା ଖବର ମଣ୍ଟେଜୁମାଙ୍କ ନିକଟରେ ପହଞ୍ଚିଲା କ୍ଷଣି ସେ ସାମରିକ ପରିଷଦର ବୈଠକ ଡକେଇଲେ । ସେମାନେ ଗଭୀର ଚିନ୍ତା ଏବଂ ଆଲୋଚନା କରି ଚେଷ୍ଟା କଲେ କ'ଣ କରିବାକୁ ହେବ । ସେମାନଙ୍କ ଆଗରେ ସବୁଠାରୁ ବଡ଼ ପ୍ରଶ୍ନଟି ଥିଲା, ଏହି ଗୋରା ଲୋକମାନେ କାହିଁକି ସେମାନଙ୍କ ଦେଶକୁ ଆସିଛନ୍ତି ଏବଂ ସେମାନେ କ'ଣ ଚାହାନ୍ତି ?

ସେମାନେ ଶୁଣିଥିଲେ, ଧଳା ଲୋକମାନେ କାଳେ ସୁନାକୁ ଖୁବ୍ ଭଲ

ପାଆନ୍ତି । ତେଣୁ ପରିଷଦ ଠିକ୍ କଲା, ସେମାନଙ୍କ ନିକଟକୁ ସୁନାର ଉପଢ଼ୌକନ ପଠାଇ ଦେବେ ଏବଂ କହିବେ ନିଜ ଦେଶକୁ ଫେରି ଯିବା ପାଇଁ ।

ଏହି ନିଷ୍ପତ୍ତିଟା ଥିଲା ସେମାନଙ୍କ ପକ୍ଷରେ ଏକ ମାରାତ୍ମକ ଭୁଲ । କାରଣ ସୁନା ପାଇଲେ ଗୋରା ଲୋକମାନେ ଲୋଭରେ ପାଗଳ ପାଲଟି ଯିବେ । କିନ୍ତୁ ଆଜଟେକ୍ ଉପଜାତିମାନେ ବା କେମିତି ଏ କଥା ଜାଣିବେ । ସେହିତ ଭାରତୀୟ ଏବଂ ସ୍ପେନ୍‌ର ଧଳା ଲୋକମାନେ ତ ଦୁଇ ପୃଥକ୍ ଯୁଗର ଲୋକ ।

ଗାଡ଼ିର ଚକ ପରି ସୁନାର ଚାକ, ସୁନା ଗହଣା ଆଉ ମୂର୍ତ୍ତି ଦେଇ ମନ୍ତେଜୁମା ତାଙ୍କ ଦୂତମାନଙ୍କୁ କର୍ଟେଜ୍‌ଙ୍କ ନିକଟକୁ ପଠାଇଲେ ।

ଏସବୁ ସଂପଦକୁ କର୍ଟେଜ୍‌ଙ୍କୁ ନଦେଇ ମାଟି ତଳେ ଯଦି ପୋତି ଦେଇଥାନ୍ତେ ଦୂତମାନେ ଖୁବ୍ ବୁଦ୍ଧିମାନ କାମ କରିଥାନ୍ତେ ।

କର୍ଟେଜ୍ ଏବଂ ତାଙ୍କ ଲୋକେ ସେସବୁ ସୁନାକୁ ଦେଖିଲା କ୍ଷଣି ଆଜଟେକ୍‌ମାନଙ୍କ ଭବିଷ୍ୟତ ଅନ୍ଧକାର ମଧ୍ୟରେ ବୁଡ଼ିଗଲା ।

ସେମାନେ ଶ୍ୱେତାଙ୍ଗମାନଙ୍କୁ ଯେତେ ସମୁଦ୍ର ସେପାରିକୁ ଫେରିଯିବାକୁ ଅନୁନୟ ବିନୟ କଲେ ବା ତାଙ୍କ ଦେଶରେ ଯେତେ ଅସୁବିଧା ଏବଂ ବିପଦ ଅଛି ବୋଲି କହିଲେ, ସବୁ ବୃଥା ହେଲା ।

ଏତେ ଦିନ ଯାଏ ସ୍ପେନ୍‌ବାସୀ ଖାଲି କାହାଣୀରେ ଶୁଣିଥିଲେ ମେକ୍ସିକୋର ସୁନା କଥା । ଏଥର ସେମାନେ ସ୍ୱଚକ୍ଷୁରେ ସେସବୁ ଦେଖିବାକୁ ପାଇଲେ । ସେମାନଙ୍କ ଆଖିରେ ଲୋଭର ନିଆଁ ଜଳି ଉଠିଲା । ସେ ଯାହାସବୁ ଶୁଣିଥିଲେ, ଗଳ୍ପ ନୁହେଁ, ସତ୍ୟ ।

ଦୂତମାନଙ୍କର କଥାସବୁ ସେମାନଙ୍କୁ ହାସ୍ୟକର ବୋଧ ହେଲା । ଫେରି ଯିବା କ'ଣ ସମ୍ଭବ! ଲକ୍ଷ୍ୟ ସ୍ଥଳରେ ତ ସେମାନେ ପହଞ୍ଚି ଯାଇଛନ୍ତି । ପାଗଳ ଛଡ଼ା ଏସବୁକୁ ଛାଡ଼ିକି କେହି ଫେରିଯାଏ ନାହିଁ ।

କେତେ ଦୁଃଖ କଷ୍ଟ ସହି ସେମାନେ ସାଗର ପାରି ହୋଇ ଆସିଛନ୍ତି । କେତେ କଦର୍ଯ୍ୟ ଖାଦ୍ୟ ଖାଇ ଦିନ ପରେ ଦିନ କାଟିଛନ୍ତି । ଜାହାଜରେ କି ପ୍ରାଣାନ୍ତକ ପରିଶ୍ରମ । ମଝିରେ ମଝିରେ ପୁଣି ସମୁଦ୍ରର ଝଡ଼ ଝଞ୍ଜା । ଏସବୁ କଷ୍ଟ ସହିଥିଲେ ଯେଉଁଥି ପାଇଁ ସେସବୁ ତ ଆଜି ଆଖି ଆଗରେ ନାଚି ଉଠୁଛି ।

କର୍ଟେଜ୍ ତା'ପରେ ହୁକୁମ ଦେଲେ ତମ୍ବୁ ଉଠେଇ ଅଭିଯାନ ଆରମ୍ଭ କରିବାକୁ । ଗୋଳାବାରୁଦ ଅସ୍ତ୍ରଶସ୍ତ୍ର ଖାଦ୍ୟପେୟ ପୁଣି ଥରେ କ୍ରୀତଦାସମାନଙ୍କ ପିଠିରେ ଲଦନ କରି ସେମାନେ ଚାଲିଲେ । ଭାରବାହୀ ପଶୁ ପରି ସେଇସବୁ କ୍ରୀତଦାସମାନେ ବୋଝ ଭାରରେ ଗଁ ଗଁ ଗର୍ଜନ କରି ଚାଲିଥାନ୍ତି । ନ ଯିବାର ବା ଉପାୟ କାହିଁ ?

କେହି ପଛରେ ପଡ଼ିଗଲେ ତରବାରି ଡିହରେ ଶ୍ୱେତାଙ୍ଗମାନେ ତାକୁ ଆଗକୁ ଠେଲି ଦେଉଥିଲେ । ଯେଉଁମାନେ ପ୍ରତିବାଦ କରୁଥିଲେ ସେମାନଙ୍କ ଗଣ୍ଡିରୁ ମୁଣ୍ଡକୁ ଅଲଗା କରି ଦିଆଯାଉଥିଲା ସଙ୍ଗେ ସଙ୍ଗେ ।

ଏହି ପ୍ରଥମ ଅଭିଯାନର ଚିତ୍ରଟିଏ ଜଣେ ଶିଳ୍ପୀ ଆଙ୍କି ଥିଲେ । ଛବିଟିକୁ ଆବିଷ୍କାର କରାଯାଇଛି । ସେଥିରେ ଦେଖିବାକୁ ମିଳେ, ଦଳେ ଦଳେ ଲୋକ ପିଠିରେ ବୋଝ ଲଦିକି ତିନିଟା ରାସ୍ତାରେ ଗ୍ଲାଲିଛନ୍ତି । କାହା ପିଠିରେ କମାଣର ଚକ ତ ଆଉ କାହା ପିଠିରେ କେତେଗୁଡ଼ାଏ ବନ୍ଧୁକ, ଆଉ କିଏ ଆହାରର ବୋଝ ବହି ବହି ଗ୍ଲାଲିଛି । ଜଣେ ସ୍ପେନ୍‌ଦେଶୀୟ ଅଫିସର ତା ଠେଙ୍ଗାଟାକୁ ଏକ ଲୋହିତ ଭାରତୀୟର ମୁଣ୍ଡ ଉପରେ ଉଠେଇଛି । ଆଉ ଏକ ହାତରେ ତା ଚୁଟିକି ଧରି ଗୋଇଠା ମାରୁଛି । ସମ୍ମୁଖସ୍ଥ ପାହାଡ଼ ଦେହରେ ଅଙ୍କା ହୋଇଛି ଏକ କ୍ରୁଶ୍ ଚିହ୍ନ ।

ବିଜେତାମାନେ ନିଜକୁ ସବୁଠୁଁ "ସଚ୍ଚା କ୍ୟାଥଲିକ୍" ଖ୍ରିସ୍ତାନ ବୋଲି ମନେ କରି ବିଜିତ ଦେଶକୁ କ୍ରୁଶ୍ ଚିହ୍ନ ନେବାକୁ ଭୁଲୁ ନଥିଲେ ।

ଛବିଟିରେ ଲୋହିତ ଭାରତୀୟମାନଙ୍କର କଟା ମୁଣ୍ଡ ହାତ ପାଦ ସବୁ ଏଣେ ତେଣେ ବିଞ୍ଚି ହୋଇ ପଡ଼ିଛି ।

ଏହି ଭାବେ ସ୍ୱାଧୀନ ଲୋହିତ ଭାରତୀୟମାନେ ଆବିଷ୍କାର କରିଥିଲେ ମଣିଷ ଦ୍ୱାରା ମଣିଷକୁ ଦାସ କରିବାକୁ ହୁଏ କେମିତି ।

ଧୀରେ ଧୀରେ ଏବଂ ସୁନିଶ୍ଚିତ ରୂପେ ସ୍ପେନ୍‌ବାସୀମାନେ ଆଗକୁ ଆଗେଇ ଥିଲେ । କିଛି ବାଟ ଗଲା ପରେ ଏକ ଉଚ୍ଚ ଗିରିପଥ ମଧ୍ୟ ଦେଇ ଦେଖିବାକୁ ପାଇଥିଲେ ସେଇ ହ୍ରଦ ଆଉ ହ୍ରଦ ମଧ୍ୟରେ ଥିବା ଏକ ସୁରମ୍ୟ ସହର ।

ଆଜଟେକ୍‌ମାନେ ସେମାନଙ୍କୁ ବାଧା ଦେଲେ ନାହିଁ । "ଅତିଥିମାନେ" ସ୍ୱଚ୍ଛନ୍ଦରେ ସହର ମଧ୍ୟକୁ ପ୍ରବେଶ କଲେ । ସେମାନଙ୍କର ପ୍ରଥମ କାମ ହୋଇଥିଲା ସେମାନଙ୍କ ସତ୍‌କାରକ, ଆଜଟେକ୍‌ମାନଙ୍କ ନେତା ମନ୍ତେଜୁମାକୁ ବନ୍ଦୀ କରିବା ।

କର୍ତେଜ୍‌ଙ୍କ ନିର୍ଦ୍ଦେଶ କ୍ରମେ ମନ୍ତେଜୁମାଙ୍କୁ ଶିକୁଳିରେ ବାନ୍ଧି ଦିଆଗଲା ଏବଂ ତାଙ୍କଠାରୁ ଦାବୀ କରାଗଲା ସ୍ପେନ୍‌ର ରାଜାଙ୍କ ପ୍ରତି ବଶ୍ୟତା । ବନ୍ଦୀ ମଧ୍ୟ, ବିନୟର ସହିତ ତାଙ୍କୁ ଯାହାସବୁ କହିବାକୁ କୁହାଗଲା, ଗୋଟି ଗୋଟି କରି ପୁନରାବୃତ୍ତି କଲେ । ରାଜା ବୋଇଲେ କ'ଣ ବା ଶପଥ କାହାକୁ କହନ୍ତି ସେ କଥା ଅବଶ୍ୟ ଜାଣି ନଥିଲେ ।

କର୍ତେଜ୍ ଏଥର ଭାବି ନେଲେ ସେ ଜୟଲାଭ କରିଛନ୍ତି । ମେକ୍‌ସିକୋର ରାଜା ଆଜି ତାଙ୍କ ହାତରେ ବନ୍ଦୀ, ଏ ବନ୍ଦୀ ରାଜା ସମସ୍ତ କ୍ଷମତା ସ୍ପେନ୍‌ର ରାଜାଙ୍କୁ

ଅର୍ପଣ କରି ଦେଉଛନ୍ତି । କିନ୍ତୁ କର୍ଟେଜ୍‌ଙ୍କର ଏ ଧାରଣାଟା ଥିଲା ଏକେବାରେ ଭୁଲ । ସେ ଯେମିତି ମେକ୍‌ସିକୋ ସଂପର୍କରେ କିଛି ଜାଣି ନଥିଲେ, ମନ୍ତେଜୁମା ମଧ୍ୟ ସେଇଭଳି ସ୍ପେନ୍ ସଂପର୍କରେ ଅଜ୍ଞ ଥିଲେ । କର୍ଟେଜ୍ ଭାବିଥିଲେ ମନ୍ତେଜୁମା ହେଉଛନ୍ତି ମେକ୍‌ସିକୋର ରାଜା, କିନ୍ତୁ ପ୍ରକୃତରେ ସେ ଥିଲେ ଜଣେ ସେନାପତି । ଦେଶକୁ ଶାସନ କରିବାର ତାଙ୍କର ମୋଟେ ଅଧିକାର ନଥିଲା ।

କର୍ଟେଜ୍ ଅବିଳମ୍ବେ ତାଙ୍କ ବିଜୟ ଉତ୍ସବ ପାଳନ କଲେ ।

ତେଣେ ଆଜଟେକ୍‌ମାନେ ଏଭଳି ଏକ କାମ କଲେ, ଯେଉଁ କଥା କର୍ଟେଜ୍ ମୋଟେ ଆଶା କରି ନଥିଲେ । ସେମାନେ ମନ୍ତେଜୁମାଙ୍କ ସ୍ଥାନରେ ତାଙ୍କ ଭାଇଙ୍କୁ ନୂଆ ସେନାପତି ରୂପେ ନିର୍ବାଚିତ କରି ଦେଲେ ।

ନୂଆ ସେନାପତି ତାଙ୍କ ଯୋଦ୍ଧାମାନଙ୍କୁ ଧରି ସ୍ପେନୀୟମାନେ ରହୁଥିବା ସେଇ "ଲମ୍ବ ଘର" ଉପରେ ଚଢ଼ଉ ଆରମ୍ଭ କରି ଦେଲେ ।

ସ୍ପେନୀୟମାନେ ବନ୍ଧୁକ ଏବଂ କମାଣ ଧରି ଲଢ଼େଇ ଆରମ୍ଭ କରି ଦେଲେ ।

ଆଜଟେକ୍‌ମାନଙ୍କ ହାତରେ ପଥର, ଧନୁ ଆଉ ତୀର । କମାଣର ଗୋଳା ଆଉ ବନ୍ଧୁକ ଆଗରେ ପଥର ଆଉ ତୀର ବା କ'ଣ କରି ପାରେ । କିନ୍ତୁ ଆଜଟେକ୍‌ମାନେ ଆପଣାର ମାତୃଭୂମି ଆଉ ସ୍ୱାଧୀନତା ପାଇଁ ଲଢ଼ୁଥିଲେ । ତେଣୁ ସେମାନଙ୍କୁ କିଏ ରୋକି ପାରିବ ? ଦଶ ଜଣ ମରି ପଡ଼ିଲେ ଆଉ ଦଶ ଜଣ ଆସି ସେମାନଙ୍କ ସ୍ଥାନ ପୂରଣ କରୁଥିଲେ, ଶହେ ଜଣ ମଲେ ଆଉ ଶହେ ଜଣ ଆସି ସେମାନଙ୍କ ଜାଗାରେ ଛିଡ଼ା ହେଉଥିଲେ । ନିଜ ଭାଇର ମୃତ୍ୟୁର ପ୍ରତିଶୋଧ ନେବା ପାଇଁ ଭାଇ, ପୁତୁରାର ମୃତ୍ୟୁର ପ୍ରତିଶୋଧ ପାଇଁ ଖୁଡ଼ୁତା ଆଗେଇ ଆସୁଥିଲା । କାହାରି ଚିତ୍ତରେ ମୃତ୍ୟୁ ପ୍ରତି ଭୟ ନଥାଏ । ନିଜର କୁଳ ଏବଂ ଗୋଷ୍ଠୀ ବିପନ୍ନ ହେଲେ ଆଜଟେକ୍‌ମାନେ ପ୍ରାଣ ପ୍ରତି ମାୟା ମମତା ରଖନ୍ତି ନାହିଁ ।

କର୍ଟେଜ୍ ବୁଝିଲେ ଅବସ୍ଥାଟା ସୁବିଧାଜନକ ନୁହଁ । ଆଜଟେକ୍‌ମାନଙ୍କ ସହିତ ଗୋଟିଏ ମିଳାମିଶା କରିବାକୁ ସେ ସ୍ଥିର କଲେ । ମନ୍ତେଜୁମାଙ୍କୁ ଏ କାମରେ ମଧ୍ୟସ୍ଥ କରିବାକୁ ସେ ସବୁଠୁଁ ଉପଯୁକ୍ତ ମନେ କରିଥିଲେ । କାରଣ, ତାଙ୍କ ମତରେ ମନ୍ତେଜୁମା ହେଉଛନ୍ତି ସ୍ପେନର ରାଜା । ସେ ମନ୍ତେଜୁମାଙ୍କୁ କହିଲେ, ତାଙ୍କ ଲୋକେ ଯୁଦ୍ଧ ବନ୍ଦ କରିବାକୁ ସେ ନିର୍ଦ୍ଦେଶ ଦିଅନ୍ତୁ ।

ସ୍ପେନୀୟମାନେ ତାଙ୍କୁ ଶିକୁଳିରୁ ମୁକ୍ତ କରି ଘରର ଛାତ ଉପରେ ଛାଡ଼ି ଦେଲେ । କିନ୍ତୁ ମନ୍ତେଜୁମାଙ୍କୁ ଦେଖିଲା କ୍ଷଣି ଆଜଟେକ୍‌ମାନେ ତାଙ୍କୁ କାପୁରୁଷ ଏବଂ ବିଶ୍ୱାସଘାତକ କରି ଉପହାସ କଲେ । ଚାରି ଆଡ଼ୁ ତାଙ୍କ ଉପରେ ବର୍ଷିବାକୁ ଲାଗିଲା ପଥର ଆଉ ତୀରସବୁ । ଚାରି ଆଡ଼ୁ ଆବାଜ ଉଠିଲା :

"ଭୀରୁ ଅପଦାର୍ଥ ! ତୁ ଯୋଦ୍ଧା ନୋହୁ ! ତୁ ଗୋଟେ ମାଇକିନା , ତୋ କାମ ହେବା ଉଚିତ ସୂତା କାଟିବା ଏବଂ ଲୁଗା ବୁଣିବା ! ଏହି କୁକୁରମାନେ ତୋତେ ବନ୍ଦୀ କରିଛନ୍ତି ! ତୋତେ ଲଜ୍ଜା ନାହିଁ , କାପୁରୁଷ !"

ମନ୍ତେଜୁମା ଭୟଙ୍କର ଭାବେ ଆହତ ହୋଇ ପଡ଼ିଗଲେ ।

କର୍ଟେଜ୍‌ଙ୍କ ଅବସ୍ଥା ମଧ୍ୟ ସାଙ୍ଘାତିକ । ବହୁ କଷ୍ଟରେ ସେ ଆକ୍ରମଣକାରୀଙ୍କ ହାତରୁ ଖସି ପଳେଇଲେ । ତାଙ୍କ ଲୋକମାନଙ୍କ ମଧ୍ୟରୁ ଅର୍ଦ୍ଧେକ ସେତେବେଳକୁ ମରି ଯାଇଥିଲେ । ତାଙ୍କ ସୌଭାଗ୍ୟକୁ ଆଜ୍‌ଟେକ୍‌ମାନେ ମଧ୍ୟ ତାଙ୍କର ପଶ୍ଚାଦ୍ ଧାବନ କରି ନଥିଲେ । ନୋହିଲେ କର୍ଟେଜ୍‌ଙ୍କର ପୈତୃକ ପ୍ରାଣଟି ଯାଇଥାନ୍ତା ।

କିନ୍ତୁ କର୍ଟେଜ୍‌ଙ୍କୁ ଛାଡ଼ି ଦେଇ ଆଜ୍‌ଟେକ୍‌ମାନେ ଆଉ ଏକ ଭୁଲ କରି ବସିଲେ । କାରଣ , କର୍ଟେଜ୍ ଆଉ ଦଳେ ସୈନ୍ୟ ସଂଗ୍ରହ କରି ପୁଣି ଥରେ ଟେନୋଚ୍‌ଟିଟ୍‌ଲନ୍ ଗାଁ ଅବରୋଧ କଲେ ।

ଅନେକ ମାସ ଧରି ଯୁଦ୍ଧ ଚାଲିଲା । ଆଜ୍‌ଟେକ୍‌ମାନେ ବୀରତ୍ୱର ସହିତ ନିଜ ସହରକୁ ରକ୍ଷା କରିଥିଲେ । କିନ୍ତୁ ଗୋଳା ବନ୍ଧୁକ ବିରୁଦ୍ଧରେ ତୀର ଧନୁର ଲଢ଼େଇ କେତେ ଦିନ ଚାଲି ପାରେ ? ସ୍ପେନୀୟମାନେ ଶେଷକୁ ଟେନୋଚ୍‌ଟିଟ୍‌ଲନ୍ ଦଖଲ କରି ସହରଟିକୁ ଧୂଳିସାତ୍ କରି ଦେଲେ ।

ଲୌହ ଯୁଗର ଲୋକେ ପିତଳ ଯୁଗର ଲୋକଙ୍କୁ ପରାସ୍ତ କରି ଦେଲେ । ବିକାଶଶୀଳ ଏକ ନୂଆ ବ୍ୟବସ୍ଥା ଆଗରେ ପୁରୁଣା ଗୋଷ୍ଠୀ ପ୍ରଥାକୁ ମୁଣ୍ଡ ନୂଆଁଇବାକୁ ପଡ଼ିଲା ।

# ଏକାଦଶ ଅଧ୍ୟାୟ

## ସାତପାଦିଆ ଜୋତା ।

୧୯ଶ ଶତାବ୍ଦୀରେ ଜଣେ ଲେଖକ ଜଣେ ଯୁବକକୁ ନେଇ ଗୋଟିଏ ଗଳ୍ପ ଲେଖିଥିଲେ । ଯୁବକଟି ବଜାରକୁ ଯାଇ ହଳେ ମାମୁଲି ଜୋତା କିଣିବା ପରିବର୍ତ୍ତେ ହଳେ ଜାଦୁକରୀ "ସାତପାଦିଆ ଜୋତା" କିଣି ପକାଇଥିଲା । ଯୁବକଟି ଥିଲା ବଡ଼ ଅନ୍ୟ ମନସ୍କ, ତେଣୁ ସେ ଏହି ଭୁଲଟାକୁ ବୁଝି ପାରି ନଥିଲା । ବଜାରରୁ ଘରକୁ ଫେରିଲା ବେଳେ ହଠାତ୍ ତାକୁ ଭୀଷଣ ଶୀତ ଲାଗିଲା । ଘୂରି ଆଡ଼କୁ ଚାହିଁ ସେ ଦେଖିଲା ଖାଲି ବରଫ ଆଉ ବରଫ । ଦୂର ଦିଗ୍‌ବଳୟ ତଳେ ନିସ୍ତେଜ ଲାଲ ସୂର୍ଯ୍ୟ ବୁଡ଼ି ଯାଉଥାଏ । ସେ ଏବେ କେଉଁଠି ? ତା'ର ସେ ସାତପାଦିଆ ଜୋତା ତାକୁ ନେଇ ଯାଇଥିଲା ମେରୁ ଅଞ୍ଚଳକୁ ।

ଅନ୍ୟ କୌଣସି ଲୋକ ହୋଇଥିଲେ ସେ ଏହି ଅଦ୍ଭୁତ ସୁଯୋଗର ଉପଯୋଗ କରିବାକୁ କାର୍ପଣ୍ୟ ବୋଧ କରି ନଥାନ୍ତା । କିନ୍ତୁ ଏହି ଯୁବକଟିର ପଇସା ପ୍ରତି ମୋଟେ ନିଶା ନଥିଲା । ତା'ର ଏକମାତ୍ର ଝିଆଲ ଥିଲା ଜ୍ଞାନଚର୍ଚ୍ଚା । ତେଣୁ ସେ ତା'ର ଏହି ଅପୂର୍ବ ସୌଭାଗ୍ୟକୁ ଗୋଟାଯାକ ପୃଥିବୀ ଘୂରି ଜ୍ଞାନ ଆହରଣ କରିବାକୁ ସ୍ଥିର କଲା । ତା'ର ସେ ସାତପାଦିଆ ଜୋତାକୁ ପିନ୍ଧି ପୃଥିବୀ ସାରା ବୁଲିବାକୁ ଲାଗିଲା – ଉତ୍ତର ମେରୁରୁ ଦକ୍ଷିଣ ମେରୁକୁ ଏବଂ ଦକ୍ଷିଣ ମେରୁରୁ ଉତ୍ତର ମେରୁକୁ । ଶୀତ କାଳରେ ସାଇବେରିଆର ତାଇଗା ଅଞ୍ଚଳରୁ ଆଫ୍ରିକାର ଉତପ୍ତ ମରୁଭୂମିକୁ ଏବଂ ରାତିରେ ପୂର୍ବ ଗୋଲାର୍ଦ୍ଧରୁ ପଶ୍ଚିମ ଗୋଲାର୍ଦ୍ଧକୁ ଯାଉଥିଲା ।

ପୁରୁଣାକାଳିଆ କୋଟ୍ ଖଣ୍ଡେ ପିନ୍ଧି, କାନ୍ଧରେ ବାକସ୍‌ଟିଏ ଝୁଲାଇ ଏଦ୍ୱୀପରୁ ସେ ଦ୍ୱୀପକୁ, ସେ ଦ୍ୱୀପରୁ ଆଉ ଏକ ଦ୍ୱୀପକୁ ସେ ବୁଲିବାକୁ ଲାଗିଲା । ଆଷ୍ଟ୍ରେଲିଆରୁ ଏସିଆକୁ ଏବଂ ଏସିଆରୁ ଆମେରିକାକୁ ଗଲା । ଦ୍ୱୀପସବୁ ତାକୁ ଲାଗିଲା ପଥର ଖଣ୍ଡସବୁ ଭଳି । କାନ୍ଧରେ ଝୁଲୁଥିବା ବାକସ୍‌ରେ ସେ ଭରୁଥିଲା ବିଭିନ୍ନ ସଂଗ୍ରହଯୋଗ୍ୟ ଜିନିଷ ।

ପର୍ବତ, ଜ୍ୱଳନ୍ତ ଆଗ୍ନେୟ ଗିରି, ବରଫାବୃତ ଗିରିଚୂଡ଼ା ଉପରେ ଅନାୟାସରେ ବୁଲି ବୁଲି ସେ ସଂଗ୍ରହ କଲା ଖଣିଜ ଧାତୁ, ନାନା ରକମର ଘାସ । ପ୍ରାଚୀନ

ମନ୍ଦିର ଆଉ ଗୁହାସବୁକୁ ପରୀକ୍ଷା କରି ସେ ଦେଖିଲା ଏବଂ ପୃଥିବୀ ଆଉ ସମସ୍ତ ଜୀବନ୍ତ ପ୍ରାଣୀମାନଙ୍କ ସଂପର୍କରେ ଅଧ୍ୟୟନ କଲା ।

ଯେଉଁ ଐତିହାସିକମାନେ ମଣିଷର ଜୀବନକୁ ନେଇ ଅଧ୍ୟୟନ କରୁଛନ୍ତି ସେମାନଙ୍କ ପକ୍ଷରେ ଏହି ଭଳି ଯୋଡ଼ାଏ ସାତପାହିଆ ଜୋତା ଦରକାର । ଏହି ବହିର ବିଭିନ୍ନ ପୃଷ୍ଠାରେ ଆମକୁ ସେଇଭଳି ଗୋଟିଏ ମହାଦେଶରୁ ଆଉ ଏକ ମହାଦେଶକୁ ଏବଂ ଗୋଟିକ ପରେ ଆଉ ଗୋଟିଏ ଯୁଗକୁ ଯିବାକୁ ହୋଇଛି ।

କେତେବେଳେ ହୁଏତ କାଳର ବିରାଟତ୍ୱ ଏବଂ ଦ୍ରୁତ ଗତି ଦେଖି ଆମ ମୁଣ୍ଡ ଘୂରି ଯାଇଛି, କିନ୍ତୁ ତଥାପି ଆମେ ଥକି ଯାଇ ନାହୁଁ । ଆମକୁ ଅଟକି ଗଲେ ଚଳିବ ନାହିଁ, ସେ ଅଦ୍‌ଭୁତ ଜୋତା ନମିଳିଲେ ମଧ୍ୟ ସାଧାରଣ ଜୋତା ପିନ୍ଧି ଲୋକେ ଯେମିତି ଯାଇଥାନ୍ତି ଆମକୁ ସେଇଭଳି ଜ୍ଞାନ ଆହରଣ ଉଦ୍ଦେଶ୍ୟରେ ସମସ୍ତ କିଛି ଜାଣିବାକୁ ହେବ ।

ଆମେ ଯେପରି ଭାବେ ଗୋଟିଏ ଶତାବ୍ଦୀରୁ ଆଉ ଏକ ଶତାବ୍ଦୀକୁ ଡେଇଁ ଡେଇଁ ଆସିଲେ, ତା ଦ୍ୱାରା ଅନେକ ଜିନିଷ ହୁଏତ ଆମର ଦୃଷ୍ଟିଗୋଚର ନହୋଇ ପାରିଥାଏ । କିନ୍ତୁ ଆମର ଏ ସାତପାହିଆ ଜୋତା ନପିନ୍ଧି ବୁଲିଲେ ମଧ୍ୟ ଆମେ ସବୁକିଛିକୁ ଟିକିନିଖି କରି ଦେଖି ପାରି ନଥାନ୍ତେ । ବଣର ପ୍ରତ୍ୟେକଟି ବୃକ୍ଷକୁ ନିରିଖେଇ କି ଦେଖିଲେ ମଧ୍ୟ ବଣର ସବୁ କିଛିକୁ ଆମେ ଦେଖି ଦେଲେ ବୋଲି କହି ପାରିବା ନାହିଁ ।

ତେବେ ଆମର ଯାତ୍ରା ପଥରେ ଆମେ ଯେ କେବଳ ଯୁଗ ପରେ ଯୁଗ ବୁଲିଛେ ତା ନୁହେଁ, ଆମେ ଗୋଟିଏ ବିଜ୍ଞାନରୁ ଆଉ ଏକ ବିଜ୍ଞାନକୁ ମଧ୍ୟ ଯାଇଛେ ।

ଉଦ୍‌ଭିଦ ଆଉ ପ୍ରାଣୀ ବିଜ୍ଞାନରୁ ଭାଷା ବିଜ୍ଞାନକୁ, ଭାଷା ବିଜ୍ଞାନରୁ ଯନ୍ତ୍ରପାତିର ଇତିହାସକୁ, ଯନ୍ତ୍ରପାତିର ଇତିହାସରୁ ଧର୍ମବିଶ୍ୱାସର ଇତିହାସକୁ, ଧର୍ମବିଶ୍ୱାସର ଇତିହାସରୁ ପୃଥିବୀର ଇତିହାସକୁ ଆମେ ଯାଇଛେ ଏବଂ ଆଲୋଚନା କରିଛେ ।

ଏପରି କରିବା ଅବଶ୍ୟ ସହଜ କଥା ନୁହେଁ – କିନ୍ତୁ ଅନ୍ୟ ଉପାୟ ନାହିଁ । ମଣିଷ ବିଜ୍ଞାନକୁ ସୃଷ୍ଟି କରିଛି ତା ସେବାରେ ଲଗାଇବା ପାଇଁ । ପୃଥିବୀ ପୃଷ୍ଠରେ ମଣିଷର ଜୀବନ, ବିଶ୍ୱଜଗତରେ ତା'ର ସ୍ଥାନ କଥା ଆଲୋଚନା କଲାବେଳେ ସମସ୍ତ ବିଜ୍ଞାନର ଆବଶ୍ୟକତା ରହିଛି ।

ଆମେ ଆମେରିକାରେ ଆସି ପହଞ୍ଚିଥିଲେ, ଯେତେବେଳେ ଆମେରିକା ସ୍ପେନ୍ ଦ୍ୱାରା ଅଧିକୃତ ହେଉଥିଲା ।

ଏଥର ଫେରିଯିବା ଖ୍ରୀ : ପୂ : ତୃତୀୟ ବା ଚତୁର୍ଥ ସହସ୍ରାବ୍ଦର ୟୁରୋପକୁ । ସେଠି ଆମେ ଠିକ୍ ଆମେରିକାର ଇରୋକୁଇସ୍ ଏବଂ ଆଜଟେକ୍‌ମାନଙ୍କ ପରି

ଲୌକିକ ପ୍ରଥାର ପ୍ରଚଳନ ଦେଖିବାକୁ ପାଇବା । ସେଠି ମଧ୍ୟ ଦେଖିବାକୁ ମିଳିବ "ଲମ୍ବା ଘର" । ସ୍ତ୍ରୀଲୋକମାନେ ସେଥିରେ ସର୍ବେସର୍ବା ।

ସ୍ତ୍ରୀଲୋକମାନଙ୍କୁ ସେଠି ସମ୍ମାନ କରାଯାଏ, ସେମାନେ ଗୃହ ନିର୍ମାଣ କରନ୍ତି ଏବଂ ସେମାନେ କୁଳର ଜନ୍ମଦାତ୍ରୀ । ଶୀତ ଋତୁ ପାଇଁ ସେମାନେ ଖାଦ୍ୟ ସାଇତି ରଖନ୍ତି ଏବଂ ମାଟିରେ ଚାଷ କରି ଶସ୍ୟ ଅମଳ କରନ୍ତି ।

ପୁରୁଷମାନଙ୍କଠାରୁ ନାରୀମାନେ ସେଠାରେ ବେଶି କାମ କରୁଥିଲେ ବୋଲି ସେମାନଙ୍କ କର୍ତ୍ତୃତ୍ୱ ଥିଲା ବେଶି । ସେମାନଙ୍କୁ ଅଧିକ ସମ୍ମାନ କରାଯାଉଥିଲା । ତେଣୁ କରି ପ୍ରତ୍ୟେକ ଗ୍ରାମରେ ଏବଂ ପ୍ରତ୍ୟେକ ଘରେ ଅଗ୍ନି ଉପରେ ଖୋଦାଇ କରା କିମ୍ବା ପ୍ରସ୍ତର ନିର୍ମିତ ଗୋଟିଏ ଲେଖାଁ ନାରୀ ମୂର୍ତ୍ତି ରହିଥିଲା । ଏହି ମୂର୍ତ୍ତି ଥିଲା କୁଳଧାତ୍ରୀର ପ୍ରତୀକ । ତା'ର ଆତ୍ମା ଗୃହର ଲୋକଙ୍କୁ ରକ୍ଷା କରୁଥିଲା । କୁଳର ଲୋକେ ତାକୁ ପ୍ରାର୍ଥନା କରୁଥିଲେ, ଭଲ ଫସଲ ଆଉ ଶତ୍ରୁମାନଙ୍କ କବଳରୁ ସୁରକ୍ଷା ପାଇଁ ଭିକ୍ଷା କରୁଥିଲେ ।

ଶହ ଶହ ବର୍ଷ ପରେ ଏହି ଗୃହର ମାତୃ ରୂପିଣୀ ରକ୍ଷାକର୍ତ୍ତ୍ରୀ ଗ୍ରୀକ୍ ନଗରୀ ଏଥେନ୍ସର ଏଥେନା ଦେବୀରେ ପରିଣତ ହୋଇଥିଲେ । ହାତରେ ତାଙ୍କର ବର୍ଚ୍ଛା ଶୋଭା ପାଉଥିଲା, ସେ ଥିଲେ ନଗରର ଇଷ୍ଟ ଦେବୀ, ରକ୍ଷାକର୍ତ୍ତ୍ରୀ । ସେ ସେତେବେଳେ କ୍ଷୁଦ୍ର ଏକ ନାରୀ ମୂର୍ତ୍ତି ହୋଇ ରହିଲେ ନାହିଁ । ତାଙ୍କର ବିରାଟ ଏକ ମୂର୍ତ୍ତି ନିର୍ମିତ ହେଲା, ତାଙ୍କ ନାମାନୁସାରେ ନାମିତ ଗ୍ରୀସ୍‌ର ରାଜଧାନୀ ଏଥେନ୍ସର ରକ୍ଷାକର୍ତ୍ତ୍ରୀ ରୂପେ ତାଙ୍କୁ ଛିଡ଼ା କରିଦିଆ ଗଲା ।

## ପୁରୁଣା କୋଠାରେ ପ୍ରଥମ ଫାଟ ।

ଆମମାନଙ୍କ ନଜରରେ ନପଡ଼ିଲେବି, ଏକଥା ଠିକ୍ ଯେ, ଆମମାନଙ୍କ ଭାଷାରେ ପୂର୍ବତନ ଗୋଷ୍ଠୀ ପ୍ରଥାର ବହୁ ଅବଶେଷାଂଶ ଏବେ ମଧ୍ୟ ରହିଛି ।

ପିଲମାନେ ଅଚିହ୍ନା ଲୋକଙ୍କୁ ଖୁଡ଼ୀ, ମାଉସୀ ବା ମଉସା ବୋଲି ଡାକନ୍ତି, ଅଚିହ୍ନା ବୟସ୍କ ଲୋକଙ୍କୁ ଜେଜେ ବା ଆଈ ବୋଲି କହନ୍ତି । ଏହି ସଂପର୍କଟା ପ୍ରଚଳିତ ଥିଲା ଏଭଳି ଏକ କୁଳରେ, ଯେଉଁଠି ସମସ୍ତେ ପରସ୍ପର ସହିତ ସଂପୃକ୍ତ ଥିଲେ । ଏବେ ସେ ପ୍ରଥାର ଅବଶେଷାଂଶ ପ୍ରଚଳିତ ହେଉଛି ।

ଅନେକ ସମୟରେ ଦଳେ ଲୋକଙ୍କୁ ସମ୍ବୋଧନ କଲାବେଳେ ଆମେ 'ଭାଇମାନେ' ବୋଲି କହିଥାଏ ଏବଂ ପିଲମାନଙ୍କୁ 'ପୁଅମାନେ' ବୋଲି ଡାକିଥାଏଁ, ଯଦିଓ ସେମାନେ ଆମର ପୁଅ ନୁହନ୍ତି ।

ଅନ୍ୟାନ୍ୟ ଭାଷାରେ ମଧ୍ୟ ଅତୀତର ଏହି ଭଳି ଶେଷାବଶେଷ ରହିଛି । ବର୍ତ୍ତମାନ ଜର୍ମାନ୍ ଭାଷାରେ "ଭଣଜା ଏବଂ ଭାଣିଜୀ" ନକହି "ଭଉଣୀର ପୁଅ ବା ଝିଅ" ବୋଲି କୁହାଯାଏ । କାରଣ ସୁଦୂର ଅତୀତରେ ଭଉଣୀର ପିଲମାନେ କୁଳ ମଧ୍ୟରେ ରହୁଥିଲେ ଏବଂ ଭାଇର ପିଲମାନେ ରହୁଥିଲେ ସ୍ତ୍ରୀର କୁଳରେ । ଭଉଣୀର ପିଲମାନେ ଥିଲେ ଜ୍ଞାତି ପରିଜନ, 'ଭଣଜା ଏବଂ ଭାଣିଜୀ' । କିନ୍ତୁ ଭାଇର ପିଲମାନେ ସେପରି ନଥିଲେ, କାରଣ ସେମାନେ ଥିଲେ ଅନ୍ୟ କୁଳର ଅନ୍ତର୍ଗତ ।

ପ୍ରାଚୀନ ସାକ୍‌ସେ ରାଷ୍ଟ୍ରର ରାଜାଙ୍କର ଉତ୍ତରାଧିକାରୀ ତାଙ୍କ ନିଜ ପୁଅ ହେଉ ନଥିଲେ, ଭଉଣୀର ପୁଅ ଉତ୍ତରାଧିକାରୀ ହେଉଥିଲ ।

ଗତ ଶତାବ୍ଦୀ ଭଳି ସଂପ୍ରତି ଆଶାନ୍ତି ନାମକ ଆଫ୍ରିକାର ଏକ ଜାତିର ରାଜାଙ୍କ ଉତ୍ତରାଧିକାରୀକୁ 'ନାନେ' ବା ମାମାନଙ୍କର ମା ବୋଲି କୁହାଯାଉଥିଲ ।

ମଧ୍ୟ ଏସିଆ ଅନ୍ତର୍ଗତ ସମରକନ୍ଦର ରାଜାଙ୍କୁ ଆପ୍‌ସିନ୍ ବୋଲି କୁହାଯାଉଥିଲ । ପ୍ରାଚୀନ କାଳରେ ଏହି ଶବ୍ଦଟିର ଅର୍ଥ ବୁଝାଉଥିଲ "ଗୃହକର୍ତ୍ତୀଙ୍କୁ" ।

ମାତୃପ୍ରଧାନ ସମାଜର ସ୍ମୃତି ଲୋକଙ୍କ ମଧ୍ୟରେ କିପରି ଏବେ ଜାଗ୍ରତ ରହିଛି ଆମେ ତା'ର ବହୁ ଉଦାହରଣ ପାଇ ପାରିବା । ମା ଥିଲ ସେ ସମାଜର ଗୃହକର୍ତ୍ତୀ ଏବଂ ପରିଚାଳିକା ।

ଲୋକେ ଯଦି ଏବେ ସେଇ ପ୍ରାଚୀନ ସମାଜର ଗ୍ଲାଲି ଚଳନକୁ ମାନି ଚଳୁଛନ୍ତି, ତେବେ ମନେ କର ଆଗେ ସେସବୁ ପ୍ରଥାର ପ୍ରଭାବ କେତେ ବେଶି ଥିଲ ? ସେହି ପ୍ରଭାବ ତେବେ ନଷ୍ଟ ହେଲ କେମିତି ?

ଆମେ ଆଗରୁ ଦେଖିଛେ, ଆମେରିକାରେ ଏହି ଜୀବନ ଧାରା ଧ୍ୱଂସ ପାଇଥିଲ ୟୁରୋପୀୟମାନଙ୍କର ଆକ୍ରମଣ ଫଳରେ । କିନ୍ତୁ ଆମେରିକା ଆବିଷ୍କାରର ହଜାର ହଜାର ବର୍ଷ ପୂର୍ବେ ଆପଣାଛାଏଁ ଏହି ପ୍ରଥା ଭାଙ୍ଗି ପଡ଼ିଥିଲ – ଠିକ୍ ଯେମିତି ଘୁଣଖିଆ ଜିନିଷ ଆପେ ଆପେ ଧସି ପଡ଼େ ।

ପୁରୁଷ ଯେତେ ଯେତେ କୁଳର ଦାୟିତ୍ୱ ବେଶି କରି ଗ୍ରହଣ କଲ, ସେତିକି ସେତିକି ମାତୃପ୍ରଧାନ ପ୍ରଥା ଭାଙ୍ଗି ପଡ଼ିବାକୁ ଲଗିଲ ।

ସମାଜର ପ୍ରଥମ ଯୁଗରେ ସ୍ତ୍ରୀଲୋକମାନେ ଚାଷ ବାସ କରୁଥିଲେ, ପୁରୁଷମାନେ ଗୋରୁ ମେଣ୍ଢା ଚରାଉଥିଲେ । ଯେତେ ଦିନ ଯାଏ ଗୋରୁ ମେଣ୍ଢାଙ୍କ ସଂଖ୍ୟା ଅଧିକ ନଥିଲ, ସେତେ ଦିନ ଯାଏ ଚାଷ ବାସ କରୁଥିବା ସ୍ତ୍ରୀଲୋକମାନଙ୍କ କାର୍ଯ୍ୟ ଥିଲ ଖୁବ୍ ଗୁରୁତ୍ୱପୂର୍ଣ୍ଣ । ଖାଇବା ପାଇଁ ବେଶି ମାଂସ ନଥିଲ କି ପିଇବା ପାଇଁ ବେଶି ଦୁଧ ମିଳୁ ନଥିଲ । ସ୍ତ୍ରୀଲୋକମାନଙ୍କ ଦ୍ୱାରା ଅମଳ ହେଉଥିବା ଶସ୍ୟ ତକ ନଥିଲେ

ଖାଇବାକୁ ଅନ୍ୟ କିଛି ମିଳୁ ନଥାନ୍ତା । ବେଳେ ବେଳେ ପୋଷେ ପୋଷେ ଭଜା ଶସ୍ୟଦାନା ବା ଯଅ ଚିଆରି ପିଠା ଖଣ୍ଡେ ଖଣ୍ଡେ ଖାଇ ଲୋକେ ଦିନ କାଟୁଥିଲେ । ଏଥି ସହିତ ଯୁକ୍ତ ହେଲା ମହୁ ଏବଂ ବେରି କୋଳି । ଏସବୁ ସ୍ତ୍ରୀଲୋକମାନେ ସଂଗ୍ରହ କରି ଆଣୁଥିଲେ । ଏହି ଭାବେ ସ୍ତ୍ରୀଲୋକମାନେ ଘର ଚଳାଇବା ସଙ୍ଗେ ସଙ୍ଗେ ଘରର କର୍ତ୍ତ୍ରୀ ମଧ୍ୟ ଥିଲେ ।

କିନ୍ତୁ ସବୁ ଦିନ ଘଟଣା ଏହି ପରି ନଥିଲା । ଷ୍ଟେପ୍ ଅଞ୍ଚଳରେ ଧାନ ଗହମ ଆଦି ଚାଷ କରିବା ଥିଲା ଅତ୍ୟନ୍ତ କଷ୍ଟକର । ସମତଳ ଭୂଇଁର ଘଞ୍ଚ ବଣୁଆ ଘାସ ଶସ୍ୟ ଗଛଗୁଡ଼ିକୁ ବଢ଼ିବାକୁ ଦେଲା ନାହିଁ । ସେସବୁ ବଣୁଆ ଘାସର ଚେର ମାଟିର ଅନେକ ଗହୀରକୁ ଆଣ୍ଟି ଯାଉଥିଲା । କୋଦାଳରେ ମାଟିକୁ ହାଣିଲା ବେଳେ କୋଦାଳ ଭିତରକୁ ଯାଉ ନଥିଲା । ମାଟି ଉପରେ ଥିବା ଶକ୍ତ ଘାସ ମୂଳ ଆଉ କଠିନ ମାଟିକୁ କୋଦାଳ ଭେଦି ପାରୁ ନଥିଲା ।

ତେଣୁ କରି ଦୁଇ ତିନି ଜଣ ସ୍ତ୍ରୀଲୋକ ମିଶି ଏକାଠି ମାଟି କାଟୁଥିଲେ । କିନ୍ତୁ ସେଥିରେ କିଛି ହେଲା ନାହିଁ, କେବଳ ମାଟିକୁ ଆଞ୍ଚୁଡ଼ିଲା ଭଳି ହେଲା ।

ଅଗଭୀର ଚୂନା ମାଟି ଉପରେ ବୁଣୁଥିବା ବିହନସବୁ ଖରାରେ ଶୁଖି ଯାଉଥିଲା ଏବଂ ସେସବୁକୁ ଚଢ଼େଇମାନେ ଖୁଣ୍ଟି ଖାଇ ଯାଉଥିଲେ । ଏଠି ସେଠି, ଦୂରେଇ ଦୂରେଇ ଗୋଟେ ଗୋଟେ ସବୁଜ ଗଛ। ଉଠୁଥିଲା । ତା ପରେ ମରୁଡ଼ି ଦେଖା ଦେଉଥିଲା । ଛୋଟ ଛୋଟ କଅଁଳିଆ ଶସ୍ୟ ଗଛକୁ ପୋଡ଼ି ଦେଇ ଶକ୍ତ ଘାସ ଆଉ ବାଲୁଙ୍ଗାକୁ ଛାଡ଼ି ଯାଉଥିଲା ।

ଶସ୍ୟ ଅମଳ ସମୟ ଆସିଲେ ସ୍ତ୍ରୀଲୋକମାନେ ହତାଶ ହୋଇ କୌଣସି ଶସ୍ୟ ଦେଖିବାକୁ ପାଉ ନଥିଲେ । ବଡ଼ ବଡ଼ ଘାସ ଗଛ ମଧ୍ୟରେ ଶସ୍ୟ କେଣ୍ଡାଟିଏ ଆଖିରେ ତାଙ୍କର ପଡ଼ୁ ନଥିଲା । ଷ୍ଟେପ୍ ଭୂଇଁର ଲମ୍ବ ଲମ୍ବ ଘାସସବୁ ପବନରେ ଦୋହଲୁ ଥାଏ, ସତେ ଯେମିତି ପରାଜିତ ଏକ ଶତ୍ରୁବାହିନୀ ପୁଣି ବିଜୟ ପାଇଁ ପତାକା ଉଡ଼େଇ ଉଡ଼େଇ ଫେରି ଆସିଛି ।

ଶସ୍ୟ ବଦଳରେ ଘାସ ଆଉ ବାଲୁଙ୍ଗାଗୁଡ଼ାକ । ଏଇଥି ପାଇଁ କ'ଣ ଏତେ କଷ୍ଟ ଆଉ ହାଡ଼ଭଙ୍ଗା ଖଟଣି !

କିନ୍ତୁ ବାଲୁଙ୍ଗା ଘାସ ସିନା ମଣିଷର କାମରେ ଲାଗେ ନାହିଁ, ଗୋରୁ ମେଣ୍ଢାଙ୍କର ତ ଖାଦ୍ୟ ହୁଏ । ସେମାନେ ସମତଳ ଭୂଇଁରେ ଆନନ୍ଦରେ ଜୀବନଯାପନ କରନ୍ତି । ପ୍ରତ୍ୟେକ ଷ୍ଟେପ୍ ଭୂଇଁ ସେମାନଙ୍କୁ ଯୋଗାଇ ଦିଏ ଗୋଟାଏ ଲେଖାଏଁ ବଡ଼ ଭୋଜି ।

ବର୍ଷକୁ ବର୍ଷ ଗୋରୁ ମେଣ୍ଢାଙ୍କ ସଂଖ୍ୟା ବଢ଼ିବାକୁ ଲାଗେ । କୂଳର ଲୋକେ



କାନାଡ଼ାର ଲୌହିତଭାରତୀୟଙ୍କ ପାହିଆଛଡ଼ା ଗାଡ଼ି ।

କମରରେ ଛୁରି ବାନ୍ଧି ସେସବୁର ପଛେ ପଛେ ଅନ୍ୱେଷଣ କଲେ । ପଶୁପାଳକର ସବୁଠାରୁ ବଡ଼ ବନ୍ଧୁ କୁକୁର ସେମାନଙ୍କୁ ସାହାଯ୍ୟ କରୁଥିଲା ପଶୁ ପଲଗୁଡ଼ିକୁ ଜଗିବାରେ, ଏଣେ ତେଣେ ପଳେଇ ନଯିବାରେ । ପଶୁପଲଗୁଡ଼ିକ ଶୀଘ୍ର ବର୍ଦ୍ଧି ଚାଲୁଥିଲେ ଏବଂ ଲୋକେ ପାଉଥିଲେ ପ୍ରତିବର୍ଷ ଅଧିକରୁ ଅଧିକ ଦୁଧ, ମାଂସ ଏବଂ ପଶମ ।

ଫଳରେ ଘରେ ଶସ୍ୟ ଗଚ୍ଛିତ ନଥିଲେ, କିଛି ଭାବିବାକୁ ପଡ଼ିଲା ନାହିଁ । ଖାଇବା ପାଇଁ ଘରେ ଥିଲା ପ୍ରଚୁର ଦୁଧ ଆଉ ଛେନା । ରୋଷେଇ ଘରେ ହାଣ୍ଡିରେ ଗବଗବ ହୋଇ ଫୁଟୁଥିଲା ମେଣ୍ଢା ମାଂସର ଝୋଳ ।

ତୃଣଭୂଇଁରେ ପୁରୁଷମାନେ ପଶୁପାଳନ କାର୍ଯ୍ୟ କରୁଥିଲେ । ସେମାନଙ୍କର ଏହି କାମଟା ଏହି ଅଞ୍ଚଳରେ ଗୁରୁତ୍ୱପୂର୍ଣ୍ଣ ହୋଇ ଉଠିଲା ।

ଅବିଳମ୍ବେ ଉତ୍ତରାଞ୍ଚଳର ଜଙ୍ଗଲମାନଙ୍କରେ ପୁରୁଷ ମଧ୍ୟ କୁଳର ମୁଖ୍ୟ ହେବାକୁ ଲାଗିଲା ।

ସୁଇଡ଼ରଲାଣ୍ଡର ଏକ ଚୀଖ ପାହାଡ଼ ଦିହରେ ଅଙ୍କା ଜଣେ ଚାଷୀର ଗୋଟିଏ ପ୍ରାଚୀନ ଚିତ୍ର ଦେଖିବାକୁ ମିଳିଛି । ଚିତ୍ରଟି ଅତି ସ୍ଥୂଳ ଧରଣର । ଚାଷୀଟି ଦିଶୁଛି ପିଲାମାନେ ଆଙ୍କି ଥିବା ଏକ କୌତୁକିଆ ଛବି ପରି । ତେବେ ଭଲ ଅଙ୍କା ହୋଇଛି କି ଖରାପ କରି ଅଙ୍କା ହୋଇଛି – ସେ କଥା ଦେଖିବା ଆମର କାମ ନୁହେଁ । କାରଣ ଆମେ ତାକୁ ଏକ ଚିତ୍ର ରୂପେ ନଦେଖି, ଦେଖୁଛେ ଏକ ସାକ୍ଷୀ ହିସାବରେ । ଏହି ସାକ୍ଷୀଟି ଆମକୁ ଦେଖାଇ ଦେଉଛି, ଚାଷୀଟିଏ ଲଙ୍ଗଳର କଣ୍ଢିକୁ ଧରିଛି ଏବଂ ଯୋଡ଼ିଏ ଷଣ୍ଢ ସେ ଲଙ୍ଗଳକୁ ଟାଣୁଛନ୍ତି ।

ସମ୍ଭବତଃ ଏହା ହେଉଛି ମଣିଷ ସମାଜର ଇତିହାସରେ ପ୍ରଥମ ଲଙ୍ଗଳ । ଲଙ୍ଗଳଟି ଦେଖିବାକୁ ଅନେକ ପରିମାଣରେ ଏକ କୋଦାଳ ଭଳି । ଏକମାତ୍ର ତଫାତ୍ ହେଉଛି, ଏଥିରେ ଏକ ଲମ୍ବ ବାଡ଼ି ଲାଗିଛି ଏବଂ ଲୋକେ ନଟାଣି ଯୋଡ଼େ ଷଣ୍ଢ ଟାଣୁଛନ୍ତି ।

ଏହି ଭାବେ ମଣିଷ ଆବିଷ୍କାର କରିଥିଲା ପ୍ରଥମ 'ମୋଟର' ବା ଗତି ସଞ୍ଚାଳକ ଯନ୍ତ୍ରଟିକୁ ! ଲଙ୍ଗଳ ଦିହରେ ଯୋଟାଯାଇଥିବା ଏକ ଷଣ୍ଢ ନିଶ୍ଚିତ ଭାବେ ଏକ ଜୀବନ୍ତ ମୋଟର, ବର୍ତ୍ତମାନର ଟ୍ରାକ୍ଟରର ଜୀବନ୍ତ ପୂର୍ବପୁରୁଷ । ମଣିଷ ଯେତେବେଳେ ଷଣ୍ଢ କାନ୍ଧରେ ଜୁଆଳି ପିନ୍ଧାଇଲା, ସେତେବେଳେ ସେ ତା'ର ବୋଝଟାକୁ ସେ ପଶୁ ଉପରେ ଲଦି ଦେଲା । ଏହି ଭାବେ ଯେଉଁ ପଶୁ ତାକୁ ମାଂସ, ଦୁଧ ଏବଂ ଚମଡ଼ା ଯୋଗାଉଥିଲା ସେ ଏବେ ତାକୁ ଶକ୍ତି ଯୋଗାଇଲା ।

ଧୀର ଅଥଚ ଶକ୍ତିଶାଳୀ ଷଣ୍ଢମାନେ କାନ୍ଧରେ ଜୁଆଳି ପିନ୍ଧି ପ୍ରଥମ କାଠ ଲଙ୍ଗଳକୁ ଟାଣିଥିଲେ । ଏହି ଲଙ୍ଗଳସବୁ କୋଦାଳ ଅପେକ୍ଷା ଆହୁରି ଗଭୀରରୁ ମାଟିକୁ ତାଡ଼ି ପାରୁଥିଲା । କିଆରୀ ଦୁଇ ପାଖରେ କଳା ମାଟି ଓଲଟି ପଡ଼ି କଳା ଫିତା ପରି ଦେଖାଗଲା ।

ପ୍ରଥମ ଚାଷୀଟି ତା'ର ସମସ୍ତ ଶକ୍ତି ଦେଇ ଲଙ୍ଗଳର ଜଣ୍ଡିକୁ ମାଡ଼ି ଧରୁଥିଲା ।

ଏବେ ଷଣ୍ଢମାନେ ତା'ର ବୋଝକୁ ବହନ କଲେ । ସେମାନେ ଚାଷ କଲେ, ବେଙ୍ଗଳା ପକାଇଲେ ଏବଂ ଶସ୍ୟକୁ ବହି ନେଇଗଲେ । ହେମନ୍ତ କାଳରେ ଷଣ୍ଢମାନଙ୍କୁ ନେଇ ବେଙ୍ଗଳାରେ ଯୋଚି ଦିଆ ଯାଉଥିଲା । ସେମାନେ ଖୁରାରେ ଶସ୍ୟ କେଣ୍ଡା ଦଳି ଦେଉଥିଲେ । ତା'ପରେ ସେମାନଙ୍କୁ ଯୋଚି ଦିଆଗଲା ଏକ ଠେଲା ଗାଡ଼ିରେ । କ୍ଷେତ୍ରରୁ ସେମାନେ ବସ୍ତାରେ ଭରା ଶସ୍ୟକୁ ଘରକୁ ବହି ଆଣିଲେ ।

କୃଷି କାର୍ଯ୍ୟ ସହିତ ଏହି ଭାବେ ସହଯୋଗ କଲା ପଶୁପାଳନ । ପଶୁପାଳକ ମଧ୍ୟ ଚାଷୀରେ ପରିଣତ ହେଲା । ଏଥି ସଙ୍ଗେ ସଙ୍ଗେ ଘରେ ତା'ର କର୍ତ୍ତୃତ୍ୱ ବୃଦ୍ଧି ପାଇଲା ।

ସେତେବେଳେ ଅବଶ୍ୟ ସ୍ତ୍ରୀଲୋକମାନେ ସେମାନଙ୍କ କାମ ପୂରା ମାତ୍ରାରେ କରୁଥିଲେ । ସେମାନେ ସୂତା କାଟୁଥିଲେ ଏବଂ ଲୁଗା ବୁଣୁଥିଲେ, ଫସଲ କାଟୁଥିଲେ ଏବଂ ପିଲାମାନଙ୍କୁ ପାଳୁ ଥିଲେ ।

କିନ୍ତୁ ଆଗ ପରି ସେମାନଙ୍କର ଖ୍ୟାତିର ନଥିଲା । ପୁରୁଷ ସେତେବେଳକୁ ଚାଷ ଏବଂ ପଶୁ ଚାରଣ କ୍ଷେତ୍ରରେ ପ୍ରଭୁ ପାଲଟି ଯାଇଥିଲା ।

ଘରର କୌଣସି କାମ ଅପସନ୍ଦ ହେଲେ ସ୍ତ୍ରୀଲୋକମାନେ ପୁରୁଷଙ୍କୁ ଆଉ ଧମକେଇ ପାରିଲେ ନାହିଁ, ବରଂ ପୁରୁଷମାନେ ସ୍ତ୍ରୀଲୋକମାନଙ୍କୁ ଧମକେଇଲେ । ଆଗେ ବୁଢ଼ୀମା, ଶାଶୁ, ଖୁଡ଼ୀ, ପିଉସୀମାନେ ପ୍ରୟୋଜନ ହେଲେ ପୁରୁଷମାନଙ୍କୁ



ବଳଦଙ୍କୁ ହଳରେ ଯୋଚି ଦିଆଯାଉଥିଲା । (ମିଶରର ଚିତ୍ର)

ଘରୁ ବାହାର କରି ଦେଉଥିଲେ । ବର୍ତ୍ତମାନ ସେ କଥା ଆଉ ଚଳିଲା ନାହିଁ । ସେମାନେ ତା'ର ଯତ୍ନ ନେଲେ । କାରଣ ଅନ୍ୟ ଏକ କୁଳରୁ ତାଙ୍କ କୁଳକୁ ଆସି ଏହି ପୁରୁଷଟି ସେମାନଙ୍କ ପାଇଁ କାମ କରୁଥିଲା । ସେମାନଙ୍କ କୁଳକୁ ପୋଷୁ ଥିଲା । ତା'ପରେ ସେମାନଙ୍କ କୁଳର ପୁରୁଷମାନଙ୍କୁ ଅନ୍ୟ କୁଳକୁ ଦେବାକୁ ଆଗ୍ରହୀ ହେଲେ ନାହିଁ ।

ବିଭିନ୍ନ କୁଳ ଉପରେ ଆଧିପତ୍ୟ ହାସଲ ପାଇଁ ପୁରୁଷମାନେ ସେମାନଙ୍କ ମଧ୍ୟରେ ଏକ ବୁଝାମଣା କରି ନେଲେ ।

ଆଗେ ପୁରୁଷ ମରିଗଲା ପରେ ତା ଭଣଜା ଭାଣିଜୀମାନେ ତା ସଂପତ୍ତିର ଉତ୍ତରାଧିକାରୀ ହେଉଥିଲେ । ଏବେ ପୁରୁଷ ଚେଷ୍ଟା କଲା ସେ ଉପଜାତୀୟ ନିୟମକୁ ବଦଳାଇ ଦେବାକୁ ।

ଆଫ୍ରିକାର ତୁଆରେଗ୍ ନାମକ ଏକ ଉପଜାତି ଅଛନ୍ତି । ସେମାନେ ଯାଯାବର । ସେମାନଙ୍କ ମଧ୍ୟରେ କେହି ମରିଗଲେ ସଂପତ୍ତିକୁ ଦୁଇ ଭାଗରେ ଭାଗ କରି ଦିଆଯାଉଥିଲା । ଗୋଟିଏ ହେଲା "ସଠିକ୍" ଅଂଶ, ଅନ୍ୟଟି ହେଲା "ଅଠିକ୍" ଅଂଶ । ଉତ୍ତରାଧିକାରର "ସଠିକ୍" ଅଂଶଟି ଯାଉଥିଲା ଭଣଜା ଭାଣିଜୀଙ୍କ ଆଡ଼କୁ । ସେସବୁ ମଧ୍ୟରେ ଥିଲା ମୃତ ବ୍ୟକ୍ତି ତାଙ୍କ ଜୀବନ କାଳ ମଧ୍ୟରେ ତାଙ୍କ ମାଙ୍କଠାରୁ ଯାହାସବୁ ପାଇଥିଲେ ଏବଂ ନିଜେ ଗୋଷ୍ଠୀ ପରିବାର ମଧ୍ୟରେ କାମ କରି ଯାହା ସଞ୍ଚୟ କରୁଥିଲେ । "ଅଠିକ୍" ଅଂଶଟି ଥିଲା ଯୁଦ୍ଧରେ ମିଳିଥିବା ପୁରସ୍କାର ଏବଂ ବାଣିଜ୍ୟ ବ୍ୟବସାୟ ଦ୍ୱାରା ଯାହା କିଛି ସଞ୍ଚୟ କରାଯାଇଛି । ସେସବୁକୁ ମୃତ ବ୍ୟକ୍ତିଙ୍କର ନିଜ ସନ୍ତାନମାନେ ପାଇଥାନ୍ତି ।

ମାତୃସମାଜ ବ୍ୟବସ୍ଥା ହଜାର ହଜାର ବର୍ଷ ଧରି ତିଷ୍ଠି ରହିଥିଲା । ପୁରୁଣା ଓକ୍ କାଠରେ ଫାଟ ଦେଖାଗଲା ଭଳି ଏହି ପୁରୁଣା ସାମାଜିକ ଜୀବନ ଧାରାରେ ଫାଟ ଦେଖାଗଲା ।

କୁଳର ଲୋକେ ଅଧିକରୁ ଅଧିକ ପୁରୁଣା ପ୍ରଥାକୁ ଭାଙ୍ଗିବାକୁ ଲାଗିଲେ । ଆଗେ ସ୍ତ୍ରୀ ସ୍ୱାମୀକୁ ସଂସାର କ୍ଷେତ୍ରକୁ ଆଣୁଥିଲା । ଏବେ କିନ୍ତୁ ସ୍ତ୍ରୀକୁ ପୁରୁଷ ତା ସଂସାର ମଧ୍ୟକୁ ଆଣିଲା ।

ସେତେବେଳକାର ସମାଜ ବ୍ୟବସ୍ଥାରେ ଏଭଳି କାର୍ଯ୍ୟ ଲୋକଙ୍କ ଆଖିରେ ଗଲା ନାହିଁ । ସେମାନେ ତାକୁ ଅପରାଧୀ ବୋଲି ବିଚାର କରୁଥିଲେ ।

ପ୍ରଥମେ ପ୍ରଥମେ କେହି ପ୍ରକାଶ୍ୟରେ କନ୍ୟାକୁ ନେଇପାରୁ ନଥିଲା । ଅନ୍ଧାର ରାତ୍ରିରେ ବରର ପୁରୁଷ-ଆତ୍ମୀୟ ସ୍ୱଜନ ଛୁରି ବର୍ଚ୍ଛା ଆଦି ଧରି ଚୁପ୍‌ଚାପ୍ କନ୍ୟା ଘର ଉପରେ ଚଢ଼ାଉ କରୁଥିଲେ । କୁଳର ଲୋକେ ସେ କନ୍ୟାକୁ ବିବାହ ଦେବା ପାଇଁ ନିର୍ବାଚନ କରୁଥିଲେ । କୁକୁର ଭୁକିଲା କ୍ଷଣି ସମସ୍ତଙ୍କର ନିଦ ଭାଙ୍ଗି ଯାଉଥିଲା । କନ୍ୟାର ପାକଲଦାଢ଼ିଆ ଗୋଷବାପା ଏବଂ ଦାଢ଼ି ଉଠିନଥିବା ସାନ ଭାଇମାନେ ଅସ୍ତଶସ୍ତ୍ର ପାଇଁ ଧାଇଁ ଯାଉଥିଲେ । ଯୁଦ୍ଧରତ ଲୋକଙ୍କର ପ୍ରବଳ ଗୋଳ ଚହଳରେ ସ୍ତ୍ରୀଲୋକମାନଙ୍କର କାନ୍ଦଣାର ଧ୍ୱନି ବୁଡ଼ି ଯାଉଥିଲା । ଶେଷକୁ ବର ତା'ର କୁଳ ଲୋକଙ୍କ ଗହଣରେ ତା'ର ପୁରସ୍କାର – କନ୍ୟାକୁ ଧରି ଘରକୁ ଫେରୁ ଥିଲା ।

ବର୍ଷ ପରେ ବର୍ଷ ଏହି ଭଳି ବିତି ଯାଇଛି । ଏକଦା ଯେଉଁ ଚଳଣିର ଉଲ୍ଲଙ୍ଘନ ଉପଜାତି ମଧ୍ୟରେ ଅପରାଧ ବୋଲି ବିବେଚିତ ହେଉଥିଲା, ତାହା କ୍ରମେ ଆଇନରେ ପରିଣତ ହୋଇଛି । ବର ଏବଂ କନ୍ୟା ପକ୍ଷର ଲଢ଼ାଇ ରୂପାନ୍ତରିତ ହୋଇ ଉତ୍ସବରେ ପରିଣତ ହୋଇଛି ।

ରକ୍ତାକ୍ତ ଯୁଦ୍ଧ ପରିବର୍ତ୍ତେ ପ୍ରଚଳିତ ହୋଇଛି ଉପଢୌକନ ଏବଂ କ୍ଷତିପୂରଣ । କନ୍ୟାର କ୍ରନ୍ଦନରତ ମା, ଭଉଣୀ ଏବଂ ବାନ୍ଧବୀମାନେ ବିବାହ ଉତ୍ସବରେ ଅଂଶଗ୍ରହଣ କରିଛନ୍ତି । ବିବାହ ଉତ୍ସବର ସମାପ୍ତି ଘଟୁଛି ଭୋଜିଭାତିରେ ।

ପୁରାକାଳରେ ଗୋଟିଏ ଗୋତ୍ର ଛାଡ଼ି ଆଉ ଗୋଟିଏ ଗୋତ୍ରକୁ ଯିବା ବେଳେ ଝିଅଟିର ଭାଗ୍ୟ ସଂପର୍କରେ ଅନୁଶୋଚନା ନେଇ ଯେଉଁସବୁ ଦୁଃଖପୂର୍ଣ୍ଣ ଗୀତ ବୋଲାଯାଉଥିଲା ସେସବୁର ପ୍ରତିଧ୍ୱନି ଏବେ କାନ୍ଦଣା ମଧ୍ୟରେ ଶୁଣାଯାଏ ।

ଝିଅଟିର ଏତାଦୃଶ ଭାଗ୍ୟ ପରିବର୍ତ୍ତନ ପ୍ରତି କେହି ଈର୍ଷା ପ୍ରକାଶ କରେ ନାହିଁ । ଅପରିଚିତ ସଂସାର ମଧ୍ୟରେ ତାକୁ ସଂପୂର୍ଣ୍ଣ ରୂପେ ସ୍ୱାମୀର ଅଧୀନରେ ରହିବାକୁ ହେଉଥିଲା । ତାକୁ ସହାନୁଭୂତି ଦେଖାଇବାକୁ କେହି ନଥିଲେ । ଶାଶୁ, ଶଶୁର ଏବଂ ସ୍ୱାମୀର ଅନ୍ୟାନ୍ୟ ସଂପର୍କୀୟମାନେ ସ୍ୱାମୀର ପକ୍ଷ ନେଉଥିଲେ । କୌଣସି ପୁରୁଷ

ନୂଆ ବହୂଟିଏ ଘରକୁ ଆଣିଲେ ତାକୁ ପରିବାରରେ ଅଧିକ ଏକ କାମ କଲା ଲୋକ ଆସିଲା ବୋଲି ମନେ କରାଯାଉଥିଲା । ତେଣୁ ସେ ଯେପରି କ୍ଷଣଟିଏ ବସି ନରହେ କିମ୍ବା ଯେତିକି ଖାଇବା କଥା ତାଠାରୁ ବେଶି ନଖାଏ , ସେଥି ପ୍ରତି ସମସ୍ତେ ନଜର ରଖୁଥିଲେ । ଏହି ଭାବେ , ପରିବାରରେ ମାତୃ କର୍ତ୍ତୃତ୍ୱର ଅବସାନ ଘଟି ପିତୃ କର୍ତ୍ତୃତ୍ୱ କାଏମ ହେଲା ।

ପିଲାମାନେ ଏବେ ଆଉ ମାମୁ ଘରେ ରହିଲେ ନାହିଁ ବାପାର ପରିବାରରେ ରହିଲେ । ସେମାନଙ୍କ ମଧ୍ୟରେ ସଂପର୍କ ଏବେ ବାପାର ପରିବାର ଆଡୁ ନିର୍ଦ୍ଧାରିତ ହେଲା , ମାଆର ପରିବାର ଆଡୁ ହେଲା ନାହିଁ । ଋଷିଆରେ ସେମାନେ ନିଜର ପ୍ରଥମ ନାମ ସହିତ 'ଅମୁକର ପୁଅ' ଏବଂ ବାପର ପ୍ରଥମ ନାମ ଯୋଗ କଲେ ।

ତେଣୁ କରି ବଂଶଗତ ନାମ ସହିତ ଆମେ କହିଥାଏ 'ପିଓତର ଇଭାନୋଭିଚ୍' , ପ୍ରାଚୀନ କାଳରେ ଏହାର ଅର୍ଥ "ପିଓତର ହେଉଛନ୍ତି ଇଭାନ୍‌ଙ୍କ ପୁତ୍ର ।"

# ପ୍ରଥମ ଯାଯାବର ।

ମଣିଷ ଏକଦା ଯେଉଁ ଆଶ୍ଚର୍ଯ୍ୟଜନକ ଭଣ୍ଡାରଟି ଆବିଷ୍କାର କରିଥିଲା ସେଥିରୁ ସେ ଅଧିକରୁ ଅଧିକ ଜିନିଷ ପାଇବାକୁ ଲାଗିଲା । ତୃଣଭୂମିରେ ହଜାର ହଜାର ମେଣ୍ଢା ଚରୁଥିଲେ । ନରମ କଳା ମାଟି ଉପରେ ହଳିଆ ଚା'ର କ୍ଲାନ୍ତ ଷଣ୍ଢମାନଙ୍କୁ ହାଙ୍କି ଗ୍ଲାଲିଲା ।

ଉର୍ବର ଉପତ୍ୟକାମାନଙ୍କରେ ପ୍ରଥମ ଫଳ ବଗିଚା ସବୁ ହସି ଉଠିଲା ଏବଂ ଅଙ୍ଗୁର ଉଦ୍ୟାନରେ ଫଳସବୁ ଫଳିବାକୁ ଲାଗିଲା । ସଂଧ୍ୟାବେଳେ ଲୋକେ ଆସି ଡିମ୍ବିରି ଗଛ ମୂଳେ ବସି ଗପସପ କରିବାକୁ ଲାଗିଲେ ।

ମଣିଷର ଶ୍ରମ ତା'ର ଜୀବନକୁ ନାନା ଭାବେ ଆଶୀର୍ବାଦ ମଣ୍ଡିତ କଲା । କିନ୍ତୁ ସେଥି ପାଇଁ ତାକୁ ଅଧିକ କଠିନ ପରିଶ୍ରମ କରିବାକୁ ପଡ଼ିଥିଲା । ପ୍ରତ୍ୟେକ ଅଙ୍ଗୁର ପେଣ୍ଡା , ପ୍ରତ୍ୟେକ ଯଅ ଧାନର କେଣ୍ଡାରେ ଭରି ରହିଥିଲା ମଣିଷର ଶ୍ରମ ।

ସବୁଠାରୁ ଅଧିକ ପରିଶ୍ରମ କରିବାକୁ ପଡୁଥିଲା ଅଙ୍ଗୁର ବଗିଚାର ଯତ୍ନ ନେବା ପାଇଁ । ଓଜନିଆ ଅଙ୍ଗୁର ପେଣ୍ଡାଗୁଡ଼ିକୁ ତୋଳି ପଥର ପେଷାରେ ପେଷି ସେଥିରୁ ରସ ବାହାର କରାଯାଉଥିଲା । ରକ୍ତ ଭଳି ଲାଲ ରସକୁ ଭରାଯାଉଥିଲା ଛେଳି ଚମଡ଼ାରେ ତିଆରି ଥଳି ସବୁରେ । ଲୋକମାନେ ଛେଳି ଚମଡ଼ା ପିନ୍ଧିଥିବା ଏକ ଅଦ୍ଭୁତ ଦେବତା ଉଦ୍ଦେଶ୍ୟରେ ରହସ୍ୟମୟ ସ୍ତବ ପଢ଼ୁଥିଲେ – ସେ ଦେବତାକୁ

ଯେତେ କଷ୍ଟ ଦିଆଯାଉଛି ସେଥି ପାଇଁ କ୍ଷମା ମାଗୁଥିଲେ ଏବଂ ମଦ୍ୟର ଜୟଗାନ କରୁଥିଲେ ।

ନଦୀର ଜାଲୁ ମାଟିରେ ପ୍ରତିଟି ବସନ୍ତ ଋତୁରେ ନଦୀର ବନ୍ୟା ଜଳ ମାଡ଼ି ଆସି ପଟୁ ଢାଳି ଦେଉଥିଲା । ପ୍ରକୃତି ସତେ ଯେମିତି ନିଜ ହାତରେ ଫସଲ ଭରି ଦେଉଥିଲା ସେଠି ।

କିନ୍ତୁ ତା ସତ୍ତ୍ୱେ ସେଠାରେ ମଧ୍ୟ ମଣିଷର ହାତ ସ୍ଥିର ହୋଇ ରହିଲା ନାହିଁ । ଖାଇ ଖୋଳି, ବନ୍ଧ ପକାଇ ବହି ଯାଉଥିବା ପାଣିକି ସେ ଅଟକାଇଲା ଏବଂ ଆବଶ୍ୟକମତେ କ୍ଷେତରେ ମଡ଼ାଇଲା ।

ନଦୀ ହିଁ ଜମିକୁ ଉର୍ବରା କରେ ବୋଲି ଲୋକେ ନଦୀକୁ ସ୍ତୁତି କରୁଥିଲେ । ସେମାନେ ଭୁଲି ଯାଉଥିଲେ ଯେ, ନଦୀ କୂଳ ଜମିରେ ସେମାନେ ନିଜେ ହାଡ଼ଭଙ୍ଗା ଖଟିଣି ନକଲେ ସେଠିବି ବାଲୁଙ୍ଗା ଭରିଯିବ ।

ସମୟ ବିତି ଚାଲିବା ସଙ୍ଗେ ସଙ୍ଗେ ଚାଷୀକୁ ଅଧିକ ପରିଶ୍ରମ କରିବାକୁ ପଡ଼ିଲା । ପଶୁପାଳକକୁ ମଧ୍ୟ ଫୁରସତ୍ ମିଳିଲା ନାହିଁ ଟିକେ ବିଶ୍ରାମ ନେବାକୁ । ପଶୁପାଳନ କାମ କ୍ରମଶଃ କଠିନ ହୋଇ ଉଠିଲା । ଆଖି ଆଗରେ ତା'ର ଗୋରୁ ମେଣ୍ଢାଙ୍କ ସଂଖ୍ୟା ସବୁଜ ତୃଣଭୂମି ଉପରେ ବଢ଼ିବାକୁ ଲାଗିଲେ । ପଶୁପଲଗୁଡ଼ିକ ଯେତିକି ବଡ଼ ହେଲେ ସେମାନଙ୍କୁ ସମ୍ଭାଳିବା ସେତିକି କଠିନ ହୋଇ ଉଠିଲା । ଦଶ କୋଡ଼ିଏଟା ଗୋରୁ ମେଣ୍ଢାକୁ ସମ୍ଭାଳିବା ଗୋଟେ କଥା, କିନ୍ତୁ ହଜାର ହଜାର ଗୋରୁ ମେଣ୍ଢାକୁ ଜଗିବା ରଖିବା ଅଲଗା କଥା । ପୁଣି ଗୋଟାଏ ବଡ଼ ପଲ ଦିନେ ଦୁଇ ଦିନରେ ପଡ଼ିଆ ଘାସକୁ ଚରି ସଫା କରି ଦେଉଥିଲେ । ତା'ପରେ ସେମାନଙ୍କୁ ଆଉ ଏକ ପଡ଼ିଆକୁ ନେଇ ଯିବାକୁ ପଡ଼ୁଥିଲା । ଏହି ଭାବେ ଗାଁଠାରୁ ଅନେକ ଦୂରକୁ ଚାଲି ଯିବାକୁ ହେଉଥିଲା ।

ଶେଷକୁ ଗାଁ ସାରା ଲୋକ ଆପଣାର ଚୁଲି ଚାଳ ଧରି ପଶୁପଲର ପଛେ ପଛେ ଚାଲୁଥିଲେ । ତମ୍ବୁକୁ ଗୋଟେଇ ଏବଂ ଘରୋଇ ଜିନିଷକୁ ଓଟ ପିଠିରେ ଲଦି ସେମାନଙ୍କୁ ଯାତ୍ରା କରିବାକୁ ପଡ଼ୁଥିଲା । ଆଗରେ ସେମାନଙ୍କର ଚାଲୁଥିଲେ ସେମାନଙ୍କର ଜୀବନ୍ତ ସଂପତ୍ତି ।

ପଛରେ ସେମାନଙ୍କର ରହି ଯାଉଥିଲା କ୍ଷେତସବୁ । ସେସବୁ ଅବିଳମ୍ବେ ପୁଣି ଭରି ଉଠୁଥିଲା ଘାସ ଆଉ ବାଲୁଙ୍ଗାରେ । ସେଥିପାଇଁ ସେମାନେ ଚିନ୍ତିତ ହେଉ ନଥିଲେ । କାରଣ, ତୃଣଭୂଇଁରେ ସାଧାରଣତଃ ଭଲ ଫସଲ ଫଳୁ ନଥିଲା ।

ମଣିଷର ଇତିହାସରେ ପ୍ରଥମେ ଏହି ଶ୍ରମ ବିଭାଗଟି ଦେଖାଦେଲା କେବଳ ମଣିଷ ମଣିଷ ମଧ୍ୟରେ ନୁହଁ, ବିଭିନ୍ନ ଉପଜାତି ମଧ୍ୟରେ ମଧ୍ୟ ।

ତୃଣଭୂଇଁରେ ଗୋରୁ ମେଣ୍ଢା ପାଳକ ଉପଜାତିମାନେ ଦେଖା ଦେଲେ । ସେମାନେ ଗୋରୁ ମେଣ୍ଢା ବଦଳରେ ଖାଦ୍ୟ ଶସ୍ୟ ସଂଗ୍ରହ କରୁଥିଲେ । ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ଠାବ ଠିକଣା ନଥିଲା । ସବୁବେଳେ ସେମାନେ ଏଣେ ତେଣେ ବୁଲୁଥିଲେ – ଗୋଟିଏ ତୃଣ ପ୍ରାନ୍ତରରୁ ଆଉ ଏକ ତୃଣ ପ୍ରାନ୍ତରକୁ ।

ଏହିସବୁ ଯାଯାବରମାନଙ୍କର ଜୀବନ ଥିଲା ସ୍ୱାଧୀନ ଏବଂ ବଣୁଆ ପ୍ରକୃତିର ।

ଖୋଲା ପ୍ରାନ୍ତର ମଧ୍ୟରେ, ଖୋଲା ଆକାଶ ତଳେ ସେମାନେ ତମ୍ବୁ ପକାଉଥିଲେ । ତାରାଭରା ଆକାଶ ଛଡ଼ା ସେମାନଙ୍କ ଉପରେ ଆଉ କିଛି ନଥିଲା । ଗୋଟାକ ଯାକ ସମତଳ ତୃଣଭୂମି ଥିଲା ସେମାନଙ୍କ ବାସଭୂମି । ସୁଦୀର୍ଘ ଯାତ୍ରା ପଥରେ ଓଟ ପିଠିର ଦୋଳନାରେ ସେମାନଙ୍କ ପିଲାମାନେ ଦୋଳି ଖେଳି ଖେଳି ଶୋଉଥିଲେ । କାରଣ, ଏହା ଛଡ଼ା ସେମାନଙ୍କର ଅନ୍ୟ କୌଣସି ଦୋଳନା ନଥିଲା ।

କିନ୍ତୁ ଆମେ ଯେଉଁ ସମୟର କଥା କହୁଛେ, ସେତେବେଳେ ପଶୁପାଳକ ଉପଜାତିମାନଙ୍କ ମଧ୍ୟରେ ପ୍ରକୃତ ଅର୍ଥରେ ଯାଯାବର, ଅବଶ୍ୟ, କେହି ନଥିଲେ ।

## ଜୀବନ୍ତ ଯନ୍ତ୍ର ।

ଯାଯାବର ଉପଜାତିମାନଙ୍କର ଜୀବନ ଏତେ ସୁଖ ଶାନ୍ତିର ନଥିଲା । ପଶୁ ଚରାଇ ଚରାଇ ଗଲାବେଳେ ବାଟରେ କୌଣସି ଚାଷ ଜମି ପଡ଼ିଲେ ସେମାନେ ପ୍ରାୟ ଅନ୍ୟର ଫସଲକୁ ଘେରି କରି ନେଇ ଯାଉଥିଲେ । ପାହାଡ଼ରୁ ନଦୀ ଉପତ୍ୟକାରେ ଓହ୍ଲାଇଲା ବେଳେ ବା ଜଙ୍ଗଲ ଧାରରେ ତୃଣଭୂଇଁ ଉପର ଦେଇ ଯାଉଥିଲା ବେଳେ, ସେମାନେ ଗାଁ ପରେ ଗାଁ ନିଆଁ ଲଗେଇ ଦେଇ ଲୁଟି ନେଉଥିଲେ, ଶସ୍ୟ ନଷ୍ଟ କରୁଥିଲେ । ଗାଁବାଲାଙ୍କ ଗୋରୁ ମେଣ୍ଢାଙ୍କ ସମେତ ସେମାନଙ୍କୁ ବନ୍ଦୀ କରି ନେଇ ଯାଉଥିଲେ ।

ସେମାନେ ଅଧିକ ଲୋକ ଚାହୁଁଥିଲେ, ଯେଉଁସବୁ ଲୋକେ ସେମାନଙ୍କ ପାଇଁ କାମ କରିବେ ଏବଂ ଗୋରୁ ମେଣ୍ଢାଙ୍କୁ ରଖିବେ ।

ଏହି ଭାବେ ଯାଯାବରମାନେ ବସବାସ କରୁଥିଲେ । କିନ୍ତୁ ଚାଷୀମାନେ ଯେ ଖୁବ୍ ଶାନ୍ତିପ୍ରିୟ ଥିଲେ ତା ନୁହେଁ ।

ହେମନ୍ତ କାଳରେ ଶସ୍ୟ ଅମଳ ସରିଗଲା କ୍ଷଣି ସେମାନେ ସେମାନଙ୍କ ପ୍ରତିବେଶୀମାନଙ୍କ ଶସ୍ୟ, ଲୁଗାପଟା, ଗହଣା ଏବଂ ଅସ୍ତ୍ରଶସ୍ତ୍ରକୁ ଘେରି କରି



ଦାସମାନେ ଜମିରେ ଚାଷ କରୁଛନ୍ତି ।

ନେବାକୁ ଦ୍ୱିଧାବୋଧ କରୁ ନଥିଲେ । ସେମାନଙ୍କର ମଧ୍ୟ ସବୁଠାରୁ ମୂଲ୍ୟବାନ ଲୁଣ୍ଠନ ଜିନିଷ ଥିଲେ ବନ୍ଦୀମାନେ ।

ଚାଷୀମାନେ ମଧ୍ୟ ସେମାନଙ୍କ ନଳା ଖୋଳିବା ପାଇଁ, ବନ୍ଧ ବାନ୍ଧିବା ପାଇଁ ଏବଂ ବଳଦ ଗୋଡ଼ାଇବା ପାଇଁ ଅଧିକ ଲୋକ ଆବଶ୍ୟକ କରୁଥିଲେ ।

ପ୍ରଥମେ ପ୍ରଥମେ, ବନ୍ଦୀମାନଙ୍କୁ ଦାସରେ ପରିଣତ କରାଯାଉ ନଥିଲା । କାରଣ ନୂଆ ଲୋକଙ୍କ ଦ୍ୱାରା ବିଶେଷ ଲାଭ ହେଉ ନଥିଲା । ସେ ଲୋକ ଯେତିକି କାମ କରୁଥିଲା ସେତିକି ମଧ୍ୟ ଖାଉଥିଲା ।

କିନ୍ତୁ ଅବସ୍ଥା କ୍ରମଶଃ ବଦଳି ଗଲା । ପଶୁପଲ ସବୁ ସଂଖ୍ୟା ଆଉ ଆକାରରେ ବଢ଼ିଗଲେ । ଲୋକ ତା'ର ଆବଶ୍ୟକ ତୁଳନାରେ ଅଧିକ ଶସ୍ୟ, ମାଂସ ଏବଂ ପଶମ ଉତ୍ପାଦନ କଲା । ଚାଷୀମାନେ ସେମାନଙ୍କର ଆବଶ୍ୟକୀୟ ଶସ୍ୟ ଅପେକ୍ଷା ଅଧିକ ଶସ୍ୟ ଗଛ ରୋଇଲେ । ଏହି ଅଧିକ ଶସ୍ୟର ପ୍ରତିବଦଳରେ ସେମାନେ ପଶମ କିଣିଲେ । ସେହିପରି ଭାବେ ପଶୁପାଳକମାନେ ମଧ୍ୟ ସେମାନଙ୍କର ଆବଶ୍ୟକୀୟ ପଶୁପଲ ଅପେକ୍ଷା ଅଧିକ ପଶୁ ପାଳିଲେ – ସେମାନେ ମଧ୍ୟ ଅଧିକା ପଶମ ବିନିମୟରେ ଶସ୍ୟ ଏବଂ ଅସ୍ତ୍ର କିଣିବାକୁ ଲାଗିଲେ ।

ଏହି ବିନିମୟ ଏବଂ ଚୋରି ଦ୍ୱାରା କେତେକ ଗୋତ୍ର ଏବଂ ପରିବାର ଅଧିକ ଧନୀ ହେବାକୁ ଲାଗିଲେ । ସେମାନଙ୍କ ପଶୁପଲଗୁଡ଼ିକ ଅଧିକ ବଡ଼ ଥିଲେ ଏବଂ ସେମାନେ ଅଧିକ ଶସ୍ୟଗଛ ରୋପଣ କରୁଥିଲେ । କିନ୍ତୁ ସେସବୁ ପଶୁପଲକୁ ଜଗା ରଖା କରିବା ପାଇଁ ଏବଂ ସେସବୁ ଜମିକୁ ଚାଷ କରିବା ପାଇଁ ସେମାନଙ୍କର ଯଥେଷ୍ଟ ଲୋକ ନଥିଲେ । ଠିକ୍ ଏତିକିବେଳେ କେତେକ ଲୋକ ଅନ୍ୟମାନଙ୍କୁ କ୍ରୀତ ଦାସରେ ପରିଣତ କରିବାକୁ ଲାଗିଲେ ।

ଦାସମାନଙ୍କର କାମ ହେଲା ସେମାନଙ୍କ ମାଲିକକୁ ଏବଂ ନିଜକୁ ଖୁଆଇବା । ପ୍ରତ୍ୟେକ ପ୍ରଭୁ ଗ୍ଧହୁଁଥିଲେ, ତା'ର ଦାସ ବେଶି କାମ କରୁ ଏବଂ ଅଳ୍ପ ଖାଉ । ତେଣୁ ଜଣେ ଅନ୍ୟ ଜଣକୁ ଜୀବନ୍ତ ହତିଆରରେ ପରିଣତ କଲା ।

ମଣିଷର ଅଧଃପତନ ଘଟାଇ ପଶୁ ପରି ତା ବେକରେ ଏକ ଯୁଆଳି ଚଢ଼ାଗଲା ।

ମଣିଷର ମୁକ୍ତି ପଥରେ, ପ୍ରକୃତିର ଶକ୍ତିମାନଙ୍କ ଉପରେ ତା'ର ପ୍ରଭୁତ୍ୱକୁ ବିସ୍ତାର କରିବା ଦିଗରେ ମଣିଷ ହେଲା ଆଉ ଏକ ମଣିଷର ଦାସ ।

ପୂର୍ବେ ଜମି ଥିଲା ସର୍ବସାଧାରଣଙ୍କ ସଂପତ୍ତି । ଯେଉଁମାନେ ଗ୍ଧଷ କରୁଥିଲେ ଜମି ଥିଲା ସେଇମାନଙ୍କର । ଏବେ କ୍ରୀତ ଦାସ ଯେଉଁ ଜମି ଗ୍ଧଷ କଲା ସେଥିରେ ତା'ର ଅଧିକାର ନଥିଲା ।

ଯେଉଁ ବଳଦ ଦ୍ୱାରା ସେ ଗ୍ଧଷ କଲା ସେ ବଳଦ ତା'ର ନୁହେଁ । ଯେଉଁ ଫସଲ ସେ ଫଳାଇଲା, ସେ ମଧ୍ୟ ତା'ର ନୁହେଁ ।

ଅତୀତରେ ମିଶରରେ କ୍ରୀତ ଦାସ ବଳଦକୁ ଅଡ଼େଇଲା ବେଳେ କହୁଥିଲା :

"ଗହମ କେଣ୍ଡା ଯେତେ ଦଳି ଯାଆ ଖୁରାରେ
ଦଳି ଯାଆ ଯେତେ ପାରୁ ଦଳି ଯାଆ
ଏ ଫସଲ ସବୁ ମୋର ପ୍ରଭୁର !"

ମଣିଷ ସମାଜର ଇତିହାସରେ ପ୍ରଥମ ଥର ପାଇଁ ପ୍ରଭୁ ଆଉ ଦାସ ଦେଖା ଦେଲେ ।

## ସ୍ମୃତି ଓ ସ୍ମୃତି ଚିହ୍ନ ।

ଅତୀତ ମଧ୍ୟକୁ ଆମର ଏହି ଯାତ୍ରା ବିଭିନ୍ନ ଅସୁବିଧାରେ ଭରା । କାରଣ, ଦର୍ଶକ ହିସାବରେ ନବୁଲି, ଆବିଷ୍କାରକ ହିସାବରେ ପାହାଡ଼ ପର୍ବତର ଗୁମ୍ଫାସବୁର ଗୋଲକଧନ୍ଦା ମଧ୍ୟ ଦେଇ ଆମେ ଘୂରିଛେ । ଆମେ ଏଭଳିସବୁ ଜିନିଷ ଦେଖିବାକୁ ପାଇଛେ ସେସବୁ ଗୋଟିଏ ଗୋଟିଏ ରହସ୍ୟ ଭଳି । ସେସବୁ ରହସ୍ୟକୁ ସମାଧାନ କରିବା ହେଉଛି ଆମର କାମ । ଆମର ଯାତ୍ରା ପଥରେ ଏପରି କୌଣସି ଦିକ୍‌ଚିହ୍ନ ନାହିଁ ଯେ, ଯିଏକି ଆମକୁ ଦିଗ ନିରୂପଣ କରିବାରେ ସାହାଯ୍ୟ କରିବ । କିନ୍ତୁ ପଥର ଯୁଗରେ ବାସ କରୁଥିବା ପ୍ରାଗୈତିହାସିକ ମଣିଷ କି ଚିହ୍ନ ବା ଆମ ପାଇଁ ରଖି ଯାଇ ପାରିଥାନ୍ତା ? ସେ ତ ଜାଣି ନଥିଲା କିପରି ବିଧାଡ଼ି ଲେଖିବାକୁ ହୁଏ !

କିନ୍ତୁ ଏଥର ଆମେ ଏପରି ଏକ ରାସ୍ତାକୁ ଆସି ଯାଇଛେ, ଯେଉଁଠି ଚଲାବାଟର ଧାରରେ ଚିହ୍ନସବୁ ରହିଛି । ଆମେ ପ୍ରଥମ କରି କବର ଆଉ ମନ୍ଦିର ଦେହରେ

ଖୋଳା ଲିପି ଦେଖିବାକୁ ପାଉଛେଣି । ଏସବୁ ମୋତେ ଆଗର ଯାଦୁକରୀ ଛବି ପରି ଦେଖିବାକୁ ନୁହେଁ, ଯେଉଁଗୁଡ଼ିକ ଅଙ୍କା ଯାଉଥିଲା ଡାଆଣୀ ଭୂତ ଆଦିକୁ ଘୋଉଡ଼ିବା ପାଇଁ । ସେସବୁ ଥିଲା ଚିତ୍ର ମାଧ୍ୟମରେ ଗପ ଏବଂ ଗପସବୁ ଥିଲା ମଣିଷ ପାଇଁ ଏବଂ ମଣିଷକୁ ନେଇ ।

କିନ୍ତୁ ସେସବୁ ଲେଖା ମୋତେ ଆମ ଅକ୍ଷର ଭଳି ନୁହେଁ । ଷଣ୍ଢଟିଏ ଲେଖିବାକୁ ଗଲାବେଳେ ଷଣ୍ଢ ଭଳି ଚିତ୍ରଟିଏ ଆଙ୍କିବାକୁ ପଡ଼ୁଥିଲା, ଗଛ ଲେଖିବାକୁ ହେଲେ ଡାଳପତ୍ର ସମେତ ଗୋଟାକ ଯାକ ଗଛକୁ ଆଙ୍କିବାକୁ ପଡ଼ୁଥିଲା ।

ଲେଖାର ଇତିହାସ ଆରମ୍ଭ ହୋଇଥିଲା ଚିତ୍ର-ଶବ୍ଦ ବା ଚିତ୍ର-ଲିପି ମଧ୍ୟରୁ । ଏହିସବୁ ଚିତ୍ରକୁ ସରଳ କରିବା ପାଇଁ ବହୁ ଶହ ବର୍ଷ ଲାଗି ଯାଇଥିଲା ଏବଂ ସେସବୁ ଚିହ୍ନରେ ପରିଣତ ହେଲା ।

ଆମ ବର୍ଣ୍ଣମାଳାର ଅକ୍ଷରଗୁଡ଼ିକ କେଉଁ କେଉଁ ଚିତ୍ରରୁ ସୃଷ୍ଟି ହୋଇଛି କହିବା କଷ୍ଟକର । "A" ବୋଇଲେ ଷଣ୍ଢର ମୁଣ୍ଡକୁ ବୁଝାଉ ଥିଲା ବୋଲି ଏବେ କିଏ ବା ଚିନ୍ତା କରିବ ? କିନ୍ତୁ ତୁମେ ଯଦି "A"କୁ ଓଲଟେଇ ଦେବ, ତେବେ ଦେଖିବ ଏହା ଦୁଇଟା ଶିଙ୍ଗ ଥିବା ମୁଣ୍ଡ ଭଳି ଦିଶିବ । ଅତୀତର ସେମାଇଟ୍‌ମାନେ ଏହି ଶିଙ୍ଗବାଲା ମୁଣ୍ଡକୁ "A" ବୋଲି କହୁଥିଲେ । "A"କୁ ସେମାନେ 'ଆଲେଫ୍' ବୋଲି କହୁଥିଲେ ଏବଂ ଆଲେଫ୍ ଅର୍ଥ 'ଷଣ୍ଢ' ।

ଠିକ୍ ଏହି ପରି ଇଂରାଜୀର ପ୍ରତ୍ୟେକ ଅକ୍ଷରର ଇତିହାସ ଖୋଜା ଯାଇ ପାରେ । 'O' ହେଉଛି ଆଖି, 'P' ହେଉଛି ଲମ୍ବା ବେକ ଉପରେ ଗୋଟିଏ ମାଳା ।

କିନ୍ତୁ ଆମର ସାତପାଦିଆ ଜୋତା ହଳକ ଆମକୁ ଇତି ମଧ୍ୟରେ ଅନେକ ଦୂର ନେଇ ଆସିଛି ।

ପ୍ରକୃତରେ ଆମେ ଆସି ପହଞ୍ଚି ଯାଇଛେ ଚିତ୍ର-ଲିପି ସୃଷ୍ଟିର ଯୁଗରେ ।

ମଣିଷ ଖୁବ୍ ଧୀରେ ଧୀରେ ଅନିର୍ଦ୍ଦିଷ୍ଟ ଭାବେ ଲେଖା ଶିଖିଲା ।

ତଥାପି ସେତେବେଳକୁ ଶିଖିବାର ଡେରି ହୋଇ ଯାଇଥାଏ ।

ଯେତେ ଦିନ ଯାଏ ବେଶି କିଛି ଶିଖିବାକୁ ନଥିଲା, ସେଯାଏ ମଣିଷ ସବୁ କଥା ମୁଖସ୍ଥ କରୁଥିଲା । ଗାଥା, ଲୋକକଥା ସବୁ ବଂଶ ପରମ୍ପରା କ୍ରମେ ଗଡ଼ି ଆସୁଥିଲା । ସେ କାଳର ପ୍ରତ୍ୟେକ ବୁଢ଼ା ଲୋକ ଥିଲା ମୂର୍ତ୍ତିମନ୍ତ ଖଣ୍ଡେ ଖଣ୍ଡେ ବହି । ଲୋକେ ଗଳ୍ପରାଜି, ଲୋକକଥା, ଏବଂ ସାଧାରଣ ଜ୍ଞାନ ସଂପନ୍ନ ନିୟମାବଳୀକୁ ମନରେ ରଖୁଥିଲେ । ସେସବୁକୁ ସେମାନେ ସେମାନଙ୍କ ବଂଶଧରମାନଙ୍କୁ ପ୍ରଦାନ କରୁଥିଲେ ଏକ ମୂଲ୍ୟବାନ ବୋଝ ହିସାବରେ । ତା'ପରେ ସେମାନେ ସେମାନଙ୍କ

ପରବର୍ତ୍ତୀ ବଂଶଧରମାନଙ୍କୁ ଦେଇ ଯାଉଥିଲେ । କିନ୍ତୁ ଏହି ବୋଝଟା ଯେତେ ବେଶି ଭାରୀ ହେଉ ଥିଲା, ସେସବୁକୁ ମନେ ରଖିବା ସେତେ କଷ୍ଟକର ହେଲା ।

ଏ ଦିଗରେ ଏହି ସମୟର କୀର୍ତ୍ତିସ୍ତମ୍ଭଗୁଡ଼ିକ ସ୍ମୃତି ଶକ୍ତିକୁ ସହାୟତା କରିଥିଲା । ଅଭିଜ୍ଞତାସମୂହକୁ ଦାନ କରିବାରେ ଲିଖିତ ଭାଷା ସାହାଯ୍ୟ କଲା କଥିତ ଭାଷାକୁ । ଉପଜାତୀୟ ନେତାମାନଙ୍କ ସମାଧିସ୍ତମ୍ଭ ଉପରେ ତାଙ୍କ ଦିଗ୍‌ବିଜୟ, ଯୁଦ୍ଧାଭିଯାନ ଖୋଦିତ ହେଲା । ଏହା ଦ୍ୱାରା ପରବର୍ତ୍ତୀ ବଂଶଧରମାନେ ତାଙ୍କ କୀର୍ତ୍ତିକଳାପ ସଂପର୍କରେ ଜାଣି ପାରୁଥିଲେ ।

ଗୋଟିଏ ଉପଜାତିର ମୁଖ୍ୟଙ୍କ ନିକଟରୁ ଅନ୍ୟ ଏକ ପ୍ରତିବେଶୀ ଉପଜାତିର ମୁଖ୍ୟଙ୍କ ନିକଟକୁ ଦୂତ ପ୍ରେରଣ କରା ଗଲାବେଳେ ଗଛର ବକଳା ଉପରେ କିମ୍ବା ମାଟିପାତ୍ର ଉପରେ ଅନେକଗୁଡ଼ିଏ ଚିତ୍ର-ଲିପି ଲେଖି ଦିଆଯାଉଥିଲା । ସେସବୁ ସହାୟକ ହେଉଥିଲା ଆବଶ୍ୟକୀୟ କଥାଗୁଡ଼ିକୁ ମନେ ରଖିବା ପାଇଁ ।

ପୃଥିବୀରେ ପ୍ରଥମ ପୁସ୍ତକ ହେଉଛି ସମାଧିସ୍ତମ୍ଭ, ପ୍ରଥମ ଲେଖା କାଗଜ ହେଉଛି ବାର୍ଚ୍ଚଗଛର ବକଳା ।

ଆମେ ଏବେ ଆମର ଟେଲିଫୋନ୍, ରେଡ଼ିଓ ସେଟ୍ ଏବଂ ଟେପ୍ ରେକର୍ଡର ପାଇଁ ଗର୍ବ କରେ । ଏସବୁ ସହାୟକ ହୁଏ ଦୂରତ୍ୱ ଏବଂ ସମୟକୁ ଅତିକ୍ରମ କରିବାରେ । ହଜାର ହଜାର ମାଇଲ ଦୂରକୁ କିପରି ଶବ୍ଦ ପ୍ରେରଣ କରିବାକୁ ହୁଏ, ସେ କଥା ଆମେ ଶିଖି ଯାଇଛେ । ଆମ କଥାକୁ ଟେପ୍ ଏବଂ ରେକର୍ଡ କରି ପାରୁଛେ । ହଜାର ହଜାର ବର୍ଷ ପରେ ସେସବୁକୁ ଶୁଣାଯାଇ ପାରିବ । ଏସବୁ ନିଃସନ୍ଦେହରେ ଆମର ବିରାଟ ସାଫଲ୍ୟ । କିନ୍ତୁ ଆମର ପୂର୍ବପୁରୁଷମାନଙ୍କର ସାଫଲ୍ୟକୁ ଆମେ ଯେପରି ଭୁଲି ନଯାଏଁ । ଆମ ଯୁଗର ବହୁ ପୂର୍ବରୁ ଆମର ପୂର୍ବପୁରୁଷମାନେ ଦୂରତା ଆଉ କାଳର ବ୍ୟବଧାନକୁ ଜୟ କରିବାରେ ସାଫଲ୍ୟତା ଅର୍ଜନ କରିଥିଲେ । ଗଛର ବକଳାରେ ଭାଷା ଲେଖି ଦୂରତାକୁ ଏବଂ ପ୍ରସ୍ତର ସ୍ତମ୍ଭ ଉପରେ ବାର୍ତ୍ତା ଲେଖି କାଳକୁ ଜୟ କରିଥିଲେ ।

ସେସବୁ ଯୁଗର ବହୁ ସ୍ମୃତିସ୍ତମ୍ଭ ଏବେବି ତିଷ୍ଠି ରହିଛି । ସେସବୁ ସେକାଳର ବିରାଟ ଦିଗ୍‌ବିଜୟ ଏବଂ ଯୁଦ୍ଧାଭିଯାନର କଥା ଆମକୁ କହେ । ସେସବୁ ଦେହରେ ସେକାଳର ତରବାରି ବର୍ଚ୍ଛା ଶୋଭିତ ବୀରମାନଙ୍କର ଚିତ୍ର ଅଙ୍କା ହୋଇଛି । ଏହିସବୁ ବୀରମାନେ ସଦର୍ପରେ ଦିଗ୍‌ବିଜୟରୁ ସ୍ୱଗୃହକୁ ଫେରୁଛନ୍ତି । ପଛରେ ସେମାନଙ୍କର ଧାଡ଼ି ଧାଡ଼ି ହୋଇ ଗ୍ଲଲିଛନ୍ତି ଯୁଦ୍ଧ ବନ୍ଦୀମାନେ, ସେମାନଙ୍କ ମୁଣ୍ଡସବୁ ତଳକୁ ନଇଁ ଯାଇଛି ଏବଂ ହାତସବୁ ପଛ ଆଡ଼େ ବନ୍ଧା ହୋଇଛି । ଏଠାରେ ମଧ୍ୟ ଚିତ୍ର-ଲିପିଗୁଡ଼ିକ ମଧ୍ୟରେ ଆମେ ଦେଖିବାକୁ ପାଏଁ ହାତ ତିଆରି ଲୁହାରେ ଅଙ୍କା ଏକ



ଦାସମାନେ ମନ୍ଦିର ନିର୍ମାଣରତ । ଡାହାଣ ପଟର ଉପରେ, ହାତରେ ଛଡ଼ ଧରି ବସିଛି ସର୍ବନିରିକ୍ଷକ (ମିଶରର ଚିତ୍ର)

ଚିତ୍ର । ଚିତ୍ରଟି ହେଉ ଦାସତ୍ୱ ଆଉ ଅସାମ୍ୟର ପ୍ରତୀକ । ପ୍ରତୀକଟି ମଣିଷଜାତିର ଇତିହାସର ନୂଆ ଏକ ଅଧ୍ୟାୟର ପ୍ରାରମ୍ଭ, ଅର୍ଥାତ୍ ଦାସପ୍ରଥାର ଆରମ୍ଭର କଥା କହେ ।

ମିଶରର ମନ୍ଦିରମାନଙ୍କରେ ଏଭଳି ଆହୁରି ନାନା ପ୍ରକାରର ଛବି ଦେଖିବାକୁ ପାଏଁ ।

ଗୋଟିକରେ ଲମ୍ବ ହୋଇ ଧାଡ଼ିଏ ବନ୍ଦୀ ଗୋଟିଏ କୋଠା ନିର୍ମାଣ କରିବା ପାଇଁ ଇଟା ବହୁଛନ୍ତି । ଜଣେ ଦାସର କାନ୍ଧ ଉପରେ ଗଦାଏ ଇଟା ଲଦା ହୋଇଛି ଏବଂ ତାକୁ ସେ ଦୁଇ ହାତରେ ଧରିଛି । ଆଉ ଜଣେ ଗୋଟାଏ ଲମ୍ବବାଡ଼ିର ଦୁଇ ମୁଣ୍ଡରେ ଭାର କରି ଇଟା ବାନ୍ଧିଛି, ଗୁଆମାନେ ଯେମିତି ଭାର କରି ପାଣି ନିଅନ୍ତି । ରାଜମିସ୍ତ୍ରୀମାନେ ଗାନ୍ଥିନୀ କରିବାରେ ବ୍ୟସ୍ତ । ଜଣେ ତଦାରଖଦାର ଗଦାଏ ଇଟା ଉପରେ ବସିଛି । ଆଣ୍ଠୁ ଉପରେ କହୁଣି ଦୁଇଟିକୁ ରଖି ହାତରେ ଗୋଟିଏ ବାଡ଼ି ଧରିଛି । ତାକୁ କାମ କରିବାକୁ ପଡ଼ୁନି । ତା କାମ ହେଉଛି ଅନ୍ୟମାନଙ୍କୁ କାମ କରେଇବା । ଦ୍ୱିତୀୟ ତଦାରଖଦାରଟି କୋଠା ନିକଟରେ ଟହଲ ଦେଉଛି । ଜଣେ ଦାସର ମୁଣ୍ଡ ଉପରେ ଭୟଙ୍କର ଭାବେ ସେ ତା ବାଡ଼ିଟିକୁ ଉଞ୍ଚେଇକି ଧରିଛି । ଦାସଟି ସମ୍ଭବତଃ ତା ଇଚ୍ଛା ବିରୁଦ୍ଧରେ କିଛି କରି ପକାଇଛି ବୋଲି ମନେ ହୁଏ ।

## ଦାସ ଓ ସ୍ୱାଧୀନ ମଣିଷ ।

ପିଆଜ ଗଛରେ ଗୋଲାପ ଫୁଟଇ ନାହିଁ,
ଦାସୀ ଗରଭରୁ ସ୍ୱାଧୀନ ମଣିଷ ଜନମେ ନାହିଁ ।

ଗ୍ରୀକ୍ କବି ଥିଓଜ୍‌ନସ୍ ଏହି ପଂକ୍ତିଟି ଲେଖିଥିଲେ ବେଳେ ସମାଜରେ ଦାସପ୍ରଥା ବେଶ୍ କାଏମ୍ ହୋଇ ଯାଇଥିଲା ।

କିନ୍ତୁ ପ୍ରଥମେ ପ୍ରଥମେ ଦାସମାନଙ୍କୁ ନୀଚ ଜାତୀୟ ବୋଲି ବିଚାର କରାଯାଉ ନଥିଲା । ସ୍ୱାଧୀନ ମଣିଷ ଏବଂ ଦାସ ସମସ୍ତେ ଏକ ବଡ଼ ପରିବାର ବା ଗୋଷ୍ଠୀ ପରି ଏକସାଙ୍ଗରେ ବାସ କରୁଥିଲେ, ଏକାଠି କାମ କରୁଥିଲେ ।

ପିତା ଥିଲେ ଏହି ପରିବାର ଗୋଷ୍ଠୀର ମୁଖ୍ୟ ଏବଂ କର୍ତ୍ତା । ତାଙ୍କର ପୁଅମାନେ, ବହୂମାନେ, ନାତି ନାତୁଣୀ, ଦାସ ସମସ୍ତେ ଏକା ସାଙ୍ଗରେ ବାସ କରୁଥିଲେ । ସମସ୍ତେ ତାଙ୍କ କର୍ତ୍ତୃତ୍ୱକୁ ମାନୁଥିଲେ । ପିତାହିଁ କେବଳ ଏକମାତ୍ର ଅବାଧ୍ୟ ପୁଅ ବା ଦାସମାନଙ୍କୁ ବେତ୍ରାଘାତ କରି ପାରୁଥିଲେ ।

ଜଣେ ବୃଦ୍ଧ ଦାସ ତା'ର ପ୍ରଭୁକୁ 'ପୁଅ' ବୋଲି ସମ୍ବୋଧନ କରି ପାରୁଥିଲା, ଆଉ ପ୍ରଭୁ ତାକୁ 'ବାପା' ବୋଲି ଡାକୁଥିଲା ।

ତୁମମାନଙ୍କ ମଧ୍ୟରୁ ଯେଉଁମାନେ ଗ୍ରୀକ୍ ମହାକାବ୍ୟ 'ଓଡେସି' ପଢ଼ିଥିବ, ସେମାନେ ମନେ ପକାଇ ପାରିବେ ଯେ, ବୃଦ୍ଧ ଦାସ ଇୟୁମିଉସ୍ ତା'ର ମୁନିବ ସହିତ ଏକାସାଙ୍ଗରେ ବସି ଖାଉଥିଲା ଏବଂ ମଦ୍ୟପାନ କରୁଥିଲା । ଇୟୁମିଉସ୍ ଥିଲା ଘୁଷୁରି ରକ୍ଷକ । ତାକୁ 'ଦେବୋପମ' ବୋଲି କୁହାଯାଉଥିଲା, କାରଣ ସେ ଉପଜାତିର ମୁଖ୍ୟଙ୍କୁ 'ଦେବୋପମ' ବୋଲି ସମ୍ବୋଧନ କରାଯାଉଥିଲା ।

କିନ୍ତୁ ପୁରାଣର କଥାକୁ ସବୁବେଳେ ବିଶ୍ୱାସ କରି ହୁଏ ନାହିଁ । ଘୁଷୁରି ଚରଉଥିବା ଇୟୁମିଉସ୍ କେବେ ଦେବତା କିମ୍ବା ତା'ର ପ୍ରଭୁ ସହିତ ସମାନ ନଥିଲା । ସେ ତା'ର ପ୍ରଭୁ ଇଚ୍ଛା ମୁତାବକ କାମ କରୁଥିଲା ବେଳେ ତାକୁ ବାଧ୍ୟ ହୋଇ ତା'ର ଇଚ୍ଛା ବିରୁଦ୍ଧରେ କାମ କରିବାକୁ ପଡ଼ୁଥିଲା । ପରିବାରର ଅନ୍ୟମାନଙ୍କଠାରୁ ଦାସକୁ ଅଧିକ ଖଟିବାକୁ ପଡ଼ୁଥିଲା, କିନ୍ତୁ ମିଳୁଥିଲା ସବୁଠାରୁ କମ୍ । ଦାସ ଥିଲା ତା ପ୍ରଭୁର ସଂପତ୍ତି, କିନ୍ତୁ ପ୍ରଭୁ ଥିଲା ସଂପତ୍ତିର ମାଲିକ ।

ପ୍ରଭୁ ମରିଗଲେ ପ୍ରଭୁର ଦାସ ଅନ୍ୟାନ୍ୟ ସଂପତ୍ତି, ଜିନିଷପତ୍ର, ପଶୁପଲ ସମେତ ତା'ର ପୁଅମାନଙ୍କର ସଂପତ୍ତିରେ ପରିଣତ ହେଉଥିଲା ।

ଏହି ଧରଣର ପରିବାର ଗୋଷ୍ଠୀ ମଧ୍ୟରେ ଆଗକାଳର ସମାନତା ଆଉ ରହିଲା ନାହିଁ ।

ପିତା ହେଲା ସନ୍ତାନର ଶାସକ, ସ୍ତ୍ରୀ ହେଲା ସ୍ୱାମୀର ଅଧୀନ, ପୁତ୍ରବଧୂ ଶ୍ୱଶୁରର ଏବଂ ଛୋଟ ବହୂମାନେ ବଡ଼ ବହୂମାନଙ୍କ ଅଧୀନରେ ରହିଲେ । ଆଉ ସବା ତଳେ ରହିଲା ଦାସ ।

କୁଳ ଏବଂ ଗୋଷ୍ଠୀ ମଧ୍ୟରେ ଥିବା ପୂର୍ବର ସେ ସାମ୍ୟତା ମଧ୍ୟ ଆଉ ରହିଲା



ଦାସ-ଚଷାଟାଳି ଓ ହଳର ମାଲିକ (ମିଶରର ଚିତ୍ର)

ନାହିଁ । କେତେକଙ୍କର ବେଶି ପଶୁପଲ ଥିଲେ ତ ଆଉ କେତେକଙ୍କର କମ୍ ଥିଲା । ଏହିସବୁ ପଶୁପଲ ହେଲେ ସଂପଦର ମାପକାଠି । ଗୋରୁ ମେଣ୍ଢାଙ୍କ ବିନିମୟରେ ପୋଷାକପତ୍ର ଏବଂ ଅସ୍ତ୍ରଶସ୍ତ୍ର କିଣା ଯାଉଥିଲା । ତେଣୁ କରି ପ୍ରଥମ ବ୍ରୋଞ୍ଜ ତିଆରି ମୁଦ୍ରାସବୁ ଷଣ୍ଢର ଆକୃତି ଭଳି ହୁଏତ ତିଆରି ହୋଇଥିଲା ।

ସେ ପର୍ଯ୍ୟନ୍ତ ଜଣେ ଦାସର ମୂଲ୍ୟ ଏକ ଷଣ୍ଢଠାରୁ ଅବଶ୍ୟ ଅଧିକ ଥିଲା ।

ଗୋରୁ ମେଣ୍ଢା ଘୁଷୁରି ଇତ୍ୟାଦିକୁ ଦାସ ଚରାଉଥିଲା । ସାରା ଦିନ ପଡ଼ିଆରେ ଚରାଇ ସଞ୍ଜ ନଇଁଲା ବେଳକୁ ସେସବୁକୁ ଆଣି ସେ ପୁଣି ପୂରାଉଥିଲା ଖୁଆଡ଼ ବା ଗୁହାଳରେ । ଫସଲ ଅମଳରେ ସେ ମଧ୍ୟ ସାହାଯ୍ୟ କରୁଥିଲା, ଅଙ୍ଗୁର ଆଉ ଅଲିଭ୍‌କୁ ପେଷି ରସ ବାହାର କରୁଥିଲା । ସୁନେଲୀ ଶସ୍ୟରେ ଅମ୍ବାରସବୁ ଭରି ଯାଉଥିଲା, ବଡ଼ ବଡ଼ ମାଟି ପାତ୍ର ମଧ୍ୟକୁ ସୁଗନ୍ଧ ତେଲର ଧାରା ଝରି ପଡ଼ୁଥିଲା ।

ଦାସ ସବୁବେଳେ ସ୍ୱାଧୀନ ଲୋକକୁ ସାହାଯ୍ୟ କରୁଥିଲା ଏବଂ ସବୁଠାରୁ କଠିନ ଏବଂ ଅସନା କାମ ପଡ଼ୁଥିଲା ତା ପାଳିରେ ।

ତା'ପରେ ଯୁଦ୍ଧ କ୍ରମଶଃ ଖୁବ୍ ଲାଭଜନକ ହୋଇ ଉଠିଲା । କାରଣ ଯୁଦ୍ଧରେ ଜିତିଲେ ଦାସ ଏବଂ ଧନ ସଂପଦ ମିଳୁଥିଲା ।

ତେଣୁ ଦାସମାନଙ୍କୁ ଘରେ ଗୋରୁ ମେଣ୍ଢା ତଦାରଖ କରିବାକୁ ଛାଡ଼ି ଦେଇ ସ୍ୱାଧୀନ ମଣିଷମାନେ ଲଢ଼େଇ କରିବାକୁ ଚାଲି ଯାଉଥିଲେ ।

ଯୁଦ୍ଧ ସାଙ୍ଗେ ସାଙ୍ଗେ ଲୋକଙ୍କ କାମ ମଧ୍ୟ ବଢ଼ିଗଲା । ଅନ୍ୟ ଉପଜାତିକୁ

ଆକ୍ରମଣ କରିବା ପାଇଁ ଦରକାର ପଡ଼ିଲା ତରବାରି, ବର୍ଚ୍ଛା ଏବଂ ରଥସବୁ । ଯୋଦ୍ଧାମାନେ ରଥ ସାଙ୍ଗରେ ଦ୍ରୁତଗାମୀ ଘୋଡ଼ାଙ୍କୁ ଯୋଚି ଯୁଦ୍ଧ କ୍ଷେତ୍ରକୁ ଗ୍ଭଳନା କରୁଥିଲେ ।

କିନ୍ତୁ ଯୁଦ୍ଧବେଳେ ଦୁଇଟି କଥା ଘଟେ – ଗୋଟିଏ ପଟୁ ଆକ୍ରମଣ ସାଙ୍ଗକୁ ଅନ୍ୟ ପଟରୁ ପ୍ରତିରକ୍ଷା । ଶତ୍ରୁ ପକ୍ଷର ତରବାରି ଏବଂ ବର୍ଚ୍ଛା ଆଘାତରୁ ନିଜକୁ ରକ୍ଷା କରିବା ପାଇଁ ଯୋଦ୍ଧାମାନଙ୍କୁ ଶିରସ୍ତ୍ରାଣ ପିନ୍ଧିବାକୁ ପଡ଼ୁଥିଲା ଏବଂ ବର୍ମରେ ଦେହକୁ ଢାଙ୍କିବାକୁ ହେଉଥିଲା । ଶେଷକୁ ଗୋଷ୍ଠୀ ଘରଗୁଡ଼ିକ ଗ୍ଭରି ପାଖରେ ଉଠିଲା ମଜ୍‌ଭୁତ ପାଚେରୀସବୁ । ପାଚେରୀଗୁଡ଼ିକ ତିଆରି ହେଉଥିଲା ପଥରରେ ।

ଯେଉଁ କୁଳ ଯେତେ ଧନୀ ଆଉ ଶକ୍ତିଶାଳୀ ହେଉଥିଲା, ତା'ର ପ୍ରତିରକ୍ଷା ବ୍ୟବସ୍ଥା ପାଇଁ ସେ ସେତେ ବେଶି ସମୟ ଆଉ ଶ୍ରମ ବ୍ୟୟ କରୁଥିଲା । କାରଣ ସେମାନଙ୍କୁ ଅନେକ ବେଶି କିଛି ରକ୍ଷା କରିବାକୁ ପଡ଼ୁଥିଲା ।

କ୍ରମେ ବିରାଟ ବିରାଟ ଦୁର୍ଗ ତିଆରି କରି ସେମାନେ ସେଥିରେ ବସବାସ କରିବାକୁ ଲଗିଲେ । ସେସବୁଥିରେ ଅନେକ କୋଠରୀ, ଭଣ୍ଡାର ଘର, ପାଚିରୀ ଦେହରେ ବୁରୁଜ ଏବଂ ପ୍ରବେଶ ଦ୍ୱାରରେ ଶକ୍ତିଶାଳୀ ଫାଟକସବୁ ଥିଲା । ପର୍ବତ ଉପରେ ଏହିପରି ଦୁର୍ଗସବୁ ବହୁ ଦୂର ପର୍ଯ୍ୟନ୍ତ ଦେଖାଯାଉଥିଲା ।

## ତମ୍ବୁ ହେଲା ଘର, ଘର ହେଲା ସହର ।

ବିଖ୍ୟାତ ସୋଭିଏତ୍ ପ୍ରତ୍ନତତ୍ତ୍ୱବିତ୍ ଏସ୍.ତଲସ୍ତୋଭ୍ ତାଙ୍କ ଏକ ପୁସ୍ତକ, "ପ୍ରାଚୀନ ଖୋରେଜମ୍"ରେ କେତେକ ଦୁର୍ଗ ଭବନର ଧ୍ୱଂସାବଶେଷ ସଂପର୍କରେ ବର୍ଣ୍ଣନା କରିଛନ୍ତି । ଏହି ଭବନଗୁଡ଼ିକୁ ସେ ମଧ୍ୟ ଏସିଆର ମରୁଭୂମିରେ ଆବିଷ୍କାର କରିଥିଲେ ।

ଏସବୁ ଭବନକୁ ଭବନ ନକହି ସହର କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଶକ୍ତ ଶୁଖିଲା ଇଟାରେ ତିଆରି ପ୍ରାଚୀରଗୁଡ଼ିକ ବିରାଟ ଏକ ଖାଲି ସ୍କୋୟାର୍‌କୁ ଘେରି ଛିଡ଼ା ହୋଇଛି । ଜନଗୋଷ୍ଠୀ ଅନ୍ତର୍ଗତ ଲୋକମାନେ ଏହିସବୁ ପ୍ରାଚୀର ମଧ୍ୟରେ ବାସ କରୁଥିଲେ । ଗୋଲକାର ବାରନ୍ଦା ଏବଂ ପ୍ରାଚୀରର ଉପର ଭାଗରେ ଛୋଟ ଝରକାବାଟି ସବୁ ଥିଲା ।

ପ୍ରାଚୀରର ସଂକୀର୍ଣ୍ଣ ଏବଂ ଅନ୍ଧାରୁଆ ବାରନ୍ଦାରେ ହଜାର ହଜାର ଲୋକେ ବାସ କରୁଥିଲେ ଏବଂ ମଝିରେ ଥିବା ବିରାଟ ସ୍କୋୟାର୍‌ଟି କାହିଁକି ଖାଲି ପଡ଼ି ରହୁଥିଲା, ଏ କଥା ଭାବିଲା ବେଳକୁ ଆଶ୍ଚର୍ଯ୍ୟ ଲଗେ ।

ଡଲହୋଭ୍ କିନ୍ତୁ ଏହାର ଏକ ସରଳ ଉତ୍ତର ପ୍ରଦାନ କରିଥିଲେ । ସେତେବେଳେ ଖୋରେଜମ୍‌ର ଲୋକଙ୍କର ପ୍ରଧାନ ସଂପଦ ଥିଲା ପଶୁପଲ । ଘରି ପାଖର ପ୍ରାଚୀର ମଧ୍ୟରେ ଥିବା ଗୋଟିକଟି ଥିଲା ଅନେକଗୁଡ଼ିଏ ପଶୁପଲର ଖୁଆଡ଼ ଭଳି । ଜଳକବାଟି ଏବଂ ଜଗୁଆଳ ଗମ୍ବୁଜ ଥିବା ପ୍ରାଚୀରଗୁଡ଼ିକ ଏହିସବୁ ପଶୁସଂପଦକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରୁଥିଲା ।

କୌଣସି ଶତ୍ରୁ ଆକ୍ରମଣ କଲାବେଳେ ଦୁର୍ଗ ଭିତରର ଲୋକେ ପ୍ରାଚୀରରେ ଥିବା ଜଳକବାଟିଗୁଡ଼ିକ ପାଖରେ ରହି ଆକ୍ରମଣକାରୀମାନଙ୍କ ଉପରେ ତୀର ବର୍ଷଣ କରୁଥିଲେ ।

କିନ୍ତୁ ସେମାନେ ଯେଉଁ ସଂପଦକୁ ରକ୍ଷା କରୁଥିଲେ – ସେଇ ପଶୁସଂପଦ ସେମାନଙ୍କର ଆଉ କୋଠ ସଂପତ୍ତି ହୋଇକି ନଥିଲା । ପରିବାରମାନେ ଅବଶ୍ୟ ପରସ୍ପର ସହିତ ସଂପୃକ୍ତ ଥିଲେ , କିନ୍ତୁ କେତେକ ପରିବାରର ବେଶି ମେଣ୍ଢା , ଗୋରୁ ଏବଂ ଘୋଡ଼ା ଥିଲା ବେଳେ ଆଉ କେତେକଙ୍କର କମ୍ ଥିଲା ।

ପ୍ରାଚୀନ କିଂବଦନ୍ତୀଗୁଡ଼ିକରୁ ଆମେ ଜାଣିବାକୁ ପାଏଁ ଯେ , ସେଇ ଦୂର ଅତୀତରେ 'ଧନୀ' ଶବ୍ଦଟି ଏକ ବାକ୍ୟାଂଶର ଅଂଶ ହିସାବରେ ବ୍ୟବହୃତ ହେଉଥିଲା । ଲୋକେ କାହାକୁ ଧନୀ ବୋଲି କହିଲା ବେଳେ , ପଶୁରେ ଧନିକ ବା ଘୋଡ଼ାରେ ଧନିକ ବୋଲି ବୁଝାଉଥିଲା ।

ନିକଟବର୍ତ୍ତୀ ଦୁର୍ଗ ଉପରେ ଏହି ଭଳି ଆକ୍ରମଣ ଫଳରେ ଦଳପତି ଯୋଦ୍ଧାମାନଙ୍କର ପଶୁପଲଙ୍କର ସଂଖ୍ୟା ବଢ଼ି ଚାଲିବା ସଙ୍ଗେ ସଙ୍ଗେ ଧନୀ ଏବଂ ଦରିଦ୍ରମାନଙ୍କ ମଧ୍ୟରେ ପାର୍ଥକ୍ୟ ମଧ୍ୟ ବଢ଼ିବାକୁ ଲାଗିଲା ।

ଡଲହୋଭ୍ ଏବଂ ତାଙ୍କର ସହକର୍ମୀମାନେ ଆଉ କେତେକ ଦୁର୍ଗ – ଉଭୟ ଗୃହ ଏବଂ ସହର – ଆବିଷ୍କାର କରିଛନ୍ତି । ସେଗୁଡ଼ିକ ପରବର୍ତ୍ତୀ କାଳରେ ନିର୍ମିତ ହୋଇଥିଲା ।

ମରୁଭୂମି ମଧ୍ୟରୁ ସେସବୁକୁ ଖୋଳି ବାହାର କରିବାକୁ ଅନେକ ବର୍ଷ ଲାଗି ଯାଇଥିଲା । ଏହି କାମ ମଧ୍ୟ ମୋଟେ ସହଜ ନଥିଲା ଏବଂ ବଡ଼ କଷ୍ଟକର ଥିଲା । ସୋଭିଏତ୍ ବିଶେଷଜ୍ଞମାନେ ଓଟ ପିଠିରେ ବସି , ମୋଟର ନୌକା ଏବଂ ଉଡ଼ାଜାହାଜରେ ଚଢ଼ି ଏହି ନଷ୍ଟପ୍ରାପ୍ତ ବିଗତ ସଭ୍ୟତାକୁ ଖୋଜିଥିଲେ । ବେଳେ ବେଳେ ଓଠ ପିଠିରେ ବସି କିମ୍ବା ଛୋଟ ପାହାଡ଼ ଉପରେ ଛିଡ଼ା ହୋଇ ଧୂସର ରଙ୍ଗର ଭୁଣ ଢଙ୍କା କୁହଦସବୁ ଦେଖୁଥିଲେ । କିନ୍ତୁ ଉଡ଼ାଜାହାଜରେ ବସି ଅଳ୍ପ ଉଚ୍ଚରେ ଉଡ଼ିଲା ବେଳେ ସେମାନେ ଲମ୍ବା ଲମ୍ବା ପାଚିରୀ , ରାସ୍ତା ଏବଂ ବଡ଼ ବଡ଼ ଗୋଷ୍ଠୀ ଘରଗୁଡ଼ିକୁ ପରିଷ୍କାର ଭାବେ ଦେଖି ପାରୁଥିଲେ ।

ଏହିସବୁ ଘର ଏବଂ ସହରକୁ ତୁଳନା କଲାବେଳେ ସେମାନେ ସେସବୁରେ ଅନେକ ପରିବର୍ତ୍ତନ ଦେଖିବାକୁ ପାଇଲେ । ସେଇ ପରିବର୍ତ୍ତନଗୁଡ଼ିକ ହେଉଛି ଆଦିମ ଗୋଷ୍ଠୀଗତ ପ୍ରଥାରୁ ଦାସପ୍ରଥାଯୁକ୍ତ ବ୍ୟବସ୍ଥାକୁ ପରିବର୍ତ୍ତନ ।

ଦ୍‌ଜାନବାସ୍-କାଲ ନିକଟରେ ମତ୍ସ୍ୟଜୀବୀମାନଙ୍କର ଏକ ତମ୍ବୁଘର ଆବିଷ୍କୃତ ହୋଇଛି । ଏହି ତମ୍ବୁଘରେ କେହି ଧନୀ କି କେହି ଗରିବ ନଥିଲେ । ଏଠାରେ ମିଳିଥିବା ଚୁଲୀସବୁର ଆକାର ସମାନ ଏବଂ ସମସ୍ତେ ଥିଲେ ସମାନ । କାରଣ ସେମାନେ ସମସ୍ତେ ଥିଲେ ସମାନ ଭାବେ ଗରିବ । ଏହି ଘର ଚାରି ପାଖରେ କୌଣସି ଦୁର୍ଗ ପ୍ରାଚୀର ନଥିଲା । କାରଣ ସେଥିରେ ଧନୀ ଲୋକ ନଥିଲେ ଏବଂ ତେଣୁ ସେମାନଙ୍କୁ ସୁରକ୍ଷା କରିବାର ଦରକାର ପଡ଼ୁ ନଥିଲା ।

ଏହି ତମ୍ବୁ ଗୃହଟିର ଅନତିଦୂରରେ ବିଜ୍ଞାନୀମାନେ ମାଟି ନିର୍ମିତ ଏକ 'ଲମ୍ବା ଘରର' ଅବଶେଷାଂଶ ଦେଖିବାକୁ ପାଇଛନ୍ତି । ଏହି ଘରରେ ୧୫୦ ଫୁଟିଆ ଲମ୍ବର ଦୁଇଟି ବାରନ୍ଦା ଅଛି ଏବଂ ବାରନ୍ଦା ତଳକୁ ଲାଗି ଗୋଟିକ ପରେ ଗୋଟିଏ ଚୁଲୀ ଧାଡ଼ି ହୋଇ ଖୋଳା ହୋଇଛି ।

ଘରଟିର ଚାରି ପାଖରେ ମଧ୍ୟ ପାଚିରୀ ଘେର ନଥିଲା ।

କିନ୍ତୁ ଶହ ଶହ ବର୍ଷ ବିତି ଚାଲିବା ସଙ୍ଗେ ସଙ୍ଗେ ଗୋଟିକ ପରେ ଗୋଟିଏ 'ଲମ୍ବା ଘର' ପାଖକୁ ପାଖ ଲାଗି ତିଆରି ହୋଇଥିଲା । ଘରଗୁଡ଼ିକ ଏକ ଲମ୍ବ ପାଚିରୀ ଭଳି ଚାରି ପାଖରେ ଛିଡ଼ା ହୋଇଥିଲେ ଏବଂ ମଝିରେ ରହିଥିଲା ଏକ ବଡ଼ ଫାଙ୍କା ଚୌକ ।

କୁଇକେଲି-ଗଏରର ପାଚିରୀ ଘେରା ବସିତିଟି ହେଉଛି ଏହି ଭଳି ଏକ ଘର । ଏଥିରେ ଆମେ କାନ୍ଥ ଉପରେ ଢଳକବାଟି ଏବଂ ଜଗୁଆଳି ବୁରୁଜ ଦେଖିବାକୁ ପାଉଁ । ଏଥିରେ ବାସ କରୁଥିବା ଲୋକେ ସେମାନଙ୍କ ପଶୁପଲଙ୍କୁ ଶତ୍ରୁ ଆକ୍ରମଣରୁ ରକ୍ଷା କରୁଥିଲେ । କିନ୍ତୁ ସେମାନେ ସେମାନଙ୍କ ପ୍ରତିବେଶୀମାନଙ୍କୁ ଆକ୍ରମଣ କରି ସେମାନଙ୍କ ଧନସଂପତ୍ତି ଲୁଟି ନେବାକୁ ଦ୍ୱିଧାବୋଧ କରୁ ନଥିଲେ । ଏଠାରେ କେତେକ ପରିବାର ଅନ୍ୟ ପରିବାରଙ୍କଠାରୁ ଧନୀ ଥିଲେ ବୋଲି ମନେ ହୁଏ, ଯଦିଓ ତା'ର କୌଣସି ନିର୍ଦ୍ଦିଷ୍ଟ ପ୍ରମାଣ ମିଳେ ନାହିଁ । ପ୍ରତ୍ନତତ୍ତ୍ୱବିତ୍‌ମାନେ ଅନ୍ୟାନ୍ୟ ଦେଶରେ ଏବଂ ଦୁନିଆର ଅନ୍ୟ ଅଂଶରେ ବାସ କରୁଥିବା ଜାତିମାନଙ୍କର ଆଚାର ବ୍ୟବହାରକୁ ଅନୁଧ୍ୟାନ କରି କେବଳ ଏହି ନିଷ୍କର୍ଷରେ ପହଞ୍ଚିଛନ୍ତି ।

ଏହାର ପରବର୍ତ୍ତୀ ପରିବର୍ତ୍ତନଟି ହେଉଛି ଦ୍‌ଜାନବାସ୍-କାଲ ଦୁର୍ଗ । ଚତୁଷ୍କୋଣ ବିଶିଷ୍ଟ ପାଚିରୀ ମଧ୍ୟରେ ଥିବା ଜାଗାଟି ଏଠାରେ ଫାଙ୍କା ପଡ଼ି ନଥିଲା । ଏଠାରେ ନିର୍ମିତ ହୋଇଥିଲା ବହୁ କୋଠରୀ ଥିବା ଦୁଇଟି ଗୋଷ୍ଠୀ ଗୃହ । ଏହି ଦୁଇ ଘରର

ମଧ୍ୟ ଦେଇ 'ଅଗ୍ନି ଗୃହ'କୁ ଯାଇଥିଲା ଏକ ପଥ । ପ୍ରାଗୈତିହାସିକ ମତ୍ସ୍ୟଜୀବୀମାନଙ୍କ ତମ୍ବୁରେ ଥିବା ଅଗ୍ନିରା ନିଆଁ ଚୁଲୀଟି ଏଠାରେ ଏକ ମନ୍ଦିରର ରୂପ ନେଇଥିଲା ।

ଏହି ଦୁର୍ଗରେ ସେତେବେଳେ ଆଉ କେବଳ ଗୋଟିଏ ଗୋତ୍ରର ଲୋକେ ବାସ କରୁ ନଥିଲେ । ଏଥିରେ ଦୁଇଟି ଗୋତ୍ରର ଲୋକେ ବାସ କରୁଥିଲେ ଏବଂ ପ୍ରତ୍ୟେକ ଗୋତ୍ରର ଥିଲା ଗୋଟିଏ ଲେଖାଏଁ ଘର । ଦୁର୍ଗ ଘେରି ପାଖରେ କୌଣସି ପାଚିରୀ ନଥିଲା । କାରଣ ଏଥିରେ ବାସ କରୁଥିବା ଲୋକମାନଙ୍କର ପ୍ରଧାନ ବେଉସା ଥିଲା କୃଷି କାର୍ଯ୍ୟ, ସେମାନେ ଆଉ ପଶୁପାଳନ କରୁ ନଥିଲେ । ଦୁର୍ଗ ପାଚିରୀ ଘେରି ପାଖରେ ଥିଲା କୃଷି କ୍ଷେତ୍ର, ସେଥିରେ ଛକ ପଡ଼ିଲା ଭଳି ଜଳସେଚନର ନାଳସବୁ ଖୋଳା ହେଉଥିଲା । କୃଷି କ୍ଷେତ୍ର ଏବଂ ଜଳସେଚନର ନାଳକୁ ଯାଯାବରମାନଙ୍କ ଆକ୍ରମଣରୁ ରକ୍ଷା କରୁଥିଲା ଏହି ଦୁର୍ଗଟି ।

ଏହି ବିକାଶ ଧାରାର ପରବର୍ତ୍ତୀ ପର୍ଯ୍ୟାୟଟିକୁ ଆମେ ଦେଖିବାକୁ ପାଏଁ ତୋପ୍ରାକ୍-କାଲା ଦୁର୍ଗରେ । ଏଠାରେ ଦୁର୍ଗ ପାଚିରୀ ମଧ୍ୟରେ ବହୁ କୋଠରୀ ବିଶିଷ୍ଟ ବାରଟି ପର୍ଯ୍ୟନ୍ତ ଘର ଥିଲା ।

ଦୁର୍ଗ ସହରଟିର ଘେରିପାଖରେ ଉଚ୍ଚା ଉଚ୍ଚା ବୁରୁଜସବୁ ମୁଣ୍ଡଟେକି ଛିଡ଼ା ହୋଇଥିଲେ । ଦୁର୍ଗ ମଧ୍ୟକୁ କୌଣସି ବାହାର ଲୋକ ସଙ୍ଗେ ସଙ୍ଗେ ପ୍ରବେଶ କରି ପାରୁ ନଥିଲା । ତାକୁ ପ୍ରଥମେ ଏକ ବ୍ୟୁହ ମଧ୍ୟ ଦେଇ ଯିବାକୁ ହେଉଥିଲା । ଏହି ବ୍ୟୁହଟି ଆଡ଼୍‌ଆଳ କରୁଥିଲା ଦୁର୍ଗର ପ୍ରବେଶ ଦ୍ୱାରଟିକୁ ।

ପ୍ରଧାନ ରାସ୍ତାଟି ପ୍ରବେଶ ଦ୍ୱାରଠାରୁ ଆରମ୍ଭ ହୋଇ ସହର ମଧ୍ୟ ଦେଇ ଏମୁଣ୍ଡରୁ ସେମୁଣ୍ଡକୁ ପର୍ଯ୍ୟନ୍ତ ଯାଇଥିଲା । ରାସ୍ତାର ଦୁଇ ପାଖରେ ବଡ଼ ବଡ଼ ଗୋଷ୍ଠୀ ଘରସବୁ ଛିଡ଼ା ହୋଇଥିଲା । ସେସବୁ ଘରେ ଶହ ଶହ କୋଠରୀ, ଛୋଟ ଛୋଟ ବୁରୁଜ ଏବଂ ଦଲାଣ ଥିଲା । ରାସ୍ତାଟି ଯାଇ ଶେଷ ହୋଇଥିଲା 'ଅଗ୍ନି ଗୃହ' ଏବଂ ସହରର ଶାସକଙ୍କ ତିନି ବୁରୁଜବାଲା ଚମତ୍କାର ପ୍ରାସାଦ ନିକଟରେ ।

ଏସବୁର ଏବେ ଯେଉଁ ଅବଶେଷାଂଶ ରହିଛି ତାହା ମାଟି ଏବଂ ବାଲିରେ ପୋତି ହୋଇ ପଡ଼ିଥିଲା । ସହରଟିକୁ ପୁନର୍ବାର ରୂପ ଦେବାକୁ ଯାଇ ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କୁ ଦୀର୍ଘ ଦିନ ପାଇଁ ପରିଶ୍ରମ କରିବାକୁ ପଡ଼ିଥିଲା ।

ସେମାନଙ୍କ ଶ୍ରମ କିନ୍ତୁ ସଫଳ ହୋଇଥିଲା । ଗୋଟିକ ପରେ ଗୋଟାଏ ଜିନିଷ ସେମାନେ ଆବିଷ୍କାର କରି ଯାଇଥିଲେ । ସେସବୁ ମଧ୍ୟରେ ସବୁଠାରୁ କୌତୂହଳପ୍ରଦ ଥିଲା ତିନି ବୁରୁଜ ବିଶିଷ୍ଟ ପ୍ରାସାଦଟି । ଏହାର କାନ୍ଥଗୁଡ଼ିକରେ ଏବେ ମଧ୍ୟ ସୁନ୍ଦର ପ୍ରାଚୀର ଚିତ୍ରର ଚିହ୍ନ ଦେଖିବାକୁ ମିଳେ । ଏସବୁକୁ କୌଣସି କୁଶଳୀ ଚିତ୍ରକର ନିଶ୍ଚୟ ଆଙ୍କି ଥିଲେ । ଗଛବୃଚ୍ଛହୀନ ଟାଙ୍ଗରା ମରୁ ବାଲି ଭିତରେ ପ୍ରାସାଦର

କାନ୍ଥଗୁଡ଼ିକରେ ଅତୀତର ଦୃଶ୍ୟ ଫୁଟି ଉଠିଛି । ମନେ ହେଉଛି ସେସବୁ ଯେମିତି ନୂଆ ଜୀବନ ଲାଭ କରି ଜୀଇ ଉଠିଛନ୍ତି । ସେସବୁ ଦୃଶ୍ୟାବଳୀ ମଧ୍ୟରେ ଅଛି : ଜଣେ ତରୁଣୀ ତିନିକୋଣିଆ ବାଦ୍ୟଯନ୍ତ୍ରଟିଏ ବଜାଉଛି, ଝିଅଟିଏ ଅଙ୍ଗୁର ପାଛିଆଟିଏ ମୁଣ୍ଡରେ ଥୋଉଛି, କଳା କୋଟ୍ ପିନ୍ଧିଥିବା ଜଣେ ଲୋକ, ଘୋଡ଼ା, ବାଘ ଏବଂ କୁକ୍କୁଟଜାତୀୟ ପକ୍ଷୀସବୁ । ଏସବୁ ଛଡ଼ା ସୁଦକ୍ଷ କାରିଗରଙ୍କ ହାତରେ ନିର୍ମିତ ମୂର୍ତ୍ତିରାଜିର କେତେକ ଅଂଶ ମଧ୍ୟ ଦେଖିବାକୁ ମିଳେ ।

ପ୍ରାସାଦରେ ଥିବା ପ୍ରତ୍ୟେକଟି ଜିନିଷ ଏ କଥା ପ୍ରମାଣିତ କରିଦିଏ ଯେ, ଏହାର ମାଲିକ ଥିଲେ ସହରର ଅନ୍ୟାନ୍ୟ ବାସିନ୍ଦାମାନଙ୍କଠାରୁ ଅନେକ ଧନୀ ଏବଂ ଉଚ୍ଚ ବଂଶଜ ।

ପ୍ରାସାଦଟି ଅନ୍ୟାନ୍ୟ ଘର ଅପେକ୍ଷା ଅନେକ ଉଚ୍ଚ ଥିଲା ଏବଂ ଏଥିରୁ ଜଣାଯାଏ ଯେ, ଏଥିରେ ବାସ କରୁଥିବା ଲୋକେ ଅନ୍ୟମାନଙ୍କ ଅପେକ୍ଷା ଖୁବ୍ ସୁଖରେ ରହୁଥିଲେ ।

ପ୍ରାସାଦର ମାଲିକ ଥିଲେ ଖୋରେଜମ୍‌ଶାହ । ସେ ଥିଲେ ଏହି ସହର, ସମଗ୍ର ଦେଶ, ତାଙ୍କ ପରିବାର ଏବଂ ତାଙ୍କର ବହୁ ଦାସଦାସୀଙ୍କର ଶାସନକର୍ତ୍ତା ।

ସହରଟି ତା'ର ଅଧିକାର ଦୃଷ୍ଟିରୁ ଥିଲା ଏକ ରାଷ୍ଟ୍ର । ଏହାର ଶାସକଙ୍କର ଥିଲା ଏକ ସେନାଦଳ । ସେମାନଙ୍କ ସାହାଯ୍ୟରେ ସେ ଦାସଦାସୀ ଏବଂ ଗରିବ ଲୋକଙ୍କୁ ଦମନ କରି ରଖିଥିଲେ, ଧନୀ ଏବଂ ଅଭିଜାତମାନଙ୍କ ସ୍ୱାର୍ଥ ରକ୍ଷା କରୁଥିଲେ । କେନାଲ ଖୋଳାଇବାର କାମ ତଦାରଖ କରୁଥିଲେ ଏହି ସୈନ୍ୟମାନେ । ଗୋଟିଏ ଗୋଟିଏ ବଡ଼ କେନାଲ ଖୋଳାଇବାକୁ ହଜାର ହଜାର ଦାସ ଦରକାର ହେଉଥିଲେ । କେବଳ ଗୋଟିଏ ଦୁର୍ଗ ନୁହେଁ, ଅନେକଗୁଡ଼ିଏ ଦୁର୍ଗ ଏବଂ ଏକ ନିୟମିତ ସେନାଦଳ ଶସ୍ୟ କ୍ଷେତ, କେନାଲ ଏବଂ ଦୁର୍ଗ ପ୍ରାଚୀରହୀନ ଖୋରେଜମ୍‌ର ଗ୍ରାମ୍ୟ ଘରଗୁଡ଼ିକୁ ରକ୍ଷା କରୁଥିଲେ ।

ଏହି ଭାବେ ବିଶେଷଜ୍ଞମାନେ ହଜାର ହଜାର ବର୍ଷ ମଧ୍ୟକୁ ଯାତ୍ରା କରି ସ୍ୱଚକ୍ଷୁରେ ଯାହାସବୁ ଦେଖିବାକୁ ପାଇଛନ୍ତି ସେସବୁ ହେଲା : ତମ୍ବୁ କିପରି ଘର ହେଲା, ଘର କିପରି ସହର ହେଲା ଏବଂ ସମାନ ଅଧିକାର ସଂପନ୍ନ ଏକ ଗୋଷ୍ଠୀ ସମାଜ ଏକ ଦାସମାଲିକ ରାଷ୍ଟ୍ରରେ ପରିଣତ ହେଲା ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ଏହିସବୁ ବିରାଟ ଦୁର୍ଗ-ଗୃହଗୁଡ଼ିକୁ କେବଳ ମଧ୍ୟ ଏସିଆରେ ଆବିଷ୍କାର କରି ନାହାନ୍ତି । ଯେଉଁଠି ଲୋକଙ୍କୁ ସେମାନଙ୍କ ଧନସଂପତ୍ତିକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବାକୁ ପଡ଼ିଥିଲା ସେସବୁ ଜାଗାରେ ସେମାନେ ଏହା ଆବିଷ୍କାର କରିଛନ୍ତି ।

# ଦୁର୍ଗ ଅବରୋଧ ।

ସେଇ ଦୁର୍ଗ ପାଚିରୀରୁ ଚାହିଁଲେ ବହୁ ଦୂର ପର୍ଯ୍ୟନ୍ତ ଦେଖା ଯାଉଥିଲା । ଦୂରରେ ଘୋଡ଼ା ଅଉ ଓଟ ଖୁରାର ଧୂଳି ପଟଳ କେବେ ଉଠିଲେ ଏବଂ ସୂର୍ଯ୍ୟ କିରଣରେ ବର୍ଚ୍ଛାର ଫଳକସବୁ ଝଲସି ଉଠିଲେ, ଦୁର୍ଗ ଭିତରେ ସମସ୍ତେ ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧ ପାଇଁ ତିଆରି ହୋଇ ଯାଉଥିଲେ । ଚାଷୀମାନେ ଗାଈ ବଳଦକୁ ଏବଂ ମେଣ୍ଢାପାଳକମାନେ ସେମାନଙ୍କ ମେଣ୍ଢାପଲକୁ ଦୁର୍ଗର ଫାଟକ ମଧ୍ୟକୁ ଘେନି ଯାଉଥିଲେ । ଏହିଭଳି ସମସ୍ତ ଲୋକବାକ ଦୁର୍ଗ ଭିତରକୁ ଚାଲିଗଲା ପରେ ଯାଇ ଦୁର୍ଗର ବିରାଟ ଦରଜାକୁ ବନ୍ଦ କରି ଦିଆଯାଉଥିଲା । ସୈନ୍ୟମାନେ ଦୁର୍ଗ ପାଚେରୀ ଦେହରେ ଆଉଜିକି ଛିଡ଼ା ହୋଇ ଶତ୍ରୁର ଆକ୍ରମଣ ପାଇଁ ଜାଗତିଆର ରହୁଥିଲେ ଶତ୍ରୁ ପାଖକୁ ଆସିଲେ ପକ୍ଷୀ ପର ଲଗା ଶରରେ ତା ଦେହକୁ ଛାଇ ଦେଉ-ଥିଲେ ।

ଆକ୍ରମଣକାରୀମାନେ ଦୁର୍ଗ ପାଖକୁ ଲାଗି ଆସି ଦୁର୍ଗ ବାହାରେ ତମ୍ବୁ ପକାଉଥିଲେ । ସେମାନେ ଜାଣିଥିଲେ ଦୁର୍ଗ ସହଜରେ ନତି ସ୍ୱୀକାର କରିବ ନାହିଁ । ଦୁର୍ଗର ସେହି ଉଚ୍ଚା ପାଚେରୀକୁ ଭାଙ୍ଗିବା ପାଇଁ ସେମାନଙ୍କୁ ମାସ ମାସ ଲାଗିଯିବ । ପ୍ରତିଦିନ ବଡ଼ି ସକାଳୁ ଦୁର୍ଗର ଫାଟକସବୁ ଖୋଲି ଯାଉଥିଲା । ଦୁର୍ଗ ମଧ୍ୟରୁ ଦଳେ ସୈନ୍ୟ ବର୍ଚ୍ଛା ଧରି ଯୁଦ୍ଧ ପାଇଁ ବାହାରି ଆସୁଥିଲେ । ମୁହାଁମୁହିଁ ଯୁଦ୍ଧ ମଧ୍ୟ ଦେଇ ସେମାନେ ଜୟ ପରାଜୟ ନିର୍ଦ୍ଧାରଣ କରିବାକୁ ଚାହାନ୍ତି । ଘୋଡ଼ା ବାଳରେ ମଣ୍ଡିତ ଶତ୍ରୁର ଚକ୍ ଚକ୍ ଶିରସ୍ତ୍ରାଣ ଉପରକୁ ସେମାନଙ୍କ କ୍ରୋଧୋନ୍ମତ ତରବାରିସବୁ ନଇଁ ଆସେ । ଉଭୟ ପକ୍ଷ ସଂପୂର୍ଣ୍ଣ ରୂପେ ଅବସନ୍ନ ହେଲା ପର୍ଯ୍ୟନ୍ତ ସେମାନଙ୍କ ଯୁଦ୍ଧ ଚାଲୁଥିଲା । କେହି କାହାରିକୁ ହରାଇ ଦେବାକୁ ଚାହୁଁ ନଥିଲେ ।

ଦଳେ ନିଜର ଘର ଏବଂ ପରିବାରମାନଙ୍କୁ ରକ୍ଷା କରିବାର ଅନୁପ୍ରେରଣା ନେଇ ଯୁଦ୍ଧ କରୁଥିଲେ । ଅନ୍ୟ ଦଳେ କ୍ରୋଧର ନିଆଁରେ ଜଳି ଉଠି ସଂପଦ ପାଇଁ ଯୁଦ୍ଧ କରୁଥିଲେ । ଏତେ ହାତ ପାହାନ୍ତାରେ ସଂପଦସବୁ ଥାଇ ମଧ୍ୟ କେତେ ଦୂରରେ ରହିଯାଇଛି । ଦିନ ସାରା ଯୁଦ୍ଧ ଚାଲେ । ରାତ୍ରି ହେଲେ ପ୍ରତିରକ୍ଷା ପାଇଁ ଯୁଦ୍ଧ କରୁଥିବା ଲୋକଙ୍କ ମଧ୍ୟରୁ ଯେଉଁମାନେ ଜୀବିତ ଥାଆନ୍ତି ସେମାନେ ଦୁର୍ଗ ମଧ୍ୟକୁ ଅବଶ ହୋଇ ଫେରି ଥାଆନ୍ତି । ପୁଣି ସକାଳ ହେଲା ପର୍ଯ୍ୟନ୍ତ ଯୁଦ୍ଧ ସ୍ଥଗିତ ରହେ ।

ଏହିପରି ଦିନ ପରେ ଦିନ ଗଡ଼ି ଚାଲେ । ଅବରୋଧ ମଧ୍ୟରେ ପଡ଼ିଥିବା ଲୋକେ ଆକ୍ରମଣକାରୀମାନଙ୍କ ବିରୁଦ୍ଧରେ ଜୀବନ ପଣ କରି ଲଢ଼ି ଚାଲନ୍ତି । କିନ୍ତୁ ଦୁର୍ଗରେ

ଆବଦ୍ଧ ରହିଲେ ସଞ୍ଚିତ ଖାଦ୍ୟ ଦ୍ରବ୍ୟ କେତେ ଦିନ ଯିବ ? ଶତ୍ରୁର ବର୍ଛା ଏବଂ ତୀରଠାରୁ କ୍ଷୁଧା ହେଉଛି ଆହୁରି ମାରାତ୍ମକ ।

ଶସ୍ୟ ଭର୍ତ୍ତି ଓଳିଆ ସବୁ ଶେଷ ହୋଇ ଯାଏ, ମାଟିପାତ୍ର ଭରା ତେଲ ସରିଯାଇ କେବଳ କାଣ୍ଠି ପଡ଼ି ରହେ । ଦୁର୍ଗ ଭିତରେ ପଡ଼ିଯାଏ ହାହାକାର । ଖାଇବାକୁ ନପାଇ ପିଲମାନେ ଚିତ୍କାର ଛାଡ଼ନ୍ତି, ସ୍ତ୍ରୀଲୋକମାନେ ନିରବରେ ଲୁହ ଢାଳନ୍ତି । ଏସବୁ କେବଳ ପୁରୁଷମାନଙ୍କର କ୍ରୋଧର ନିଆଁକୁ ଆହୁରି ଉଦ୍ଦୀପିତ କରେ ।

ସେଥି ସଙ୍ଗେ ସଙ୍ଗେ ପ୍ରତିଥର ଲଢ଼େଇରେ ଲୋକ କ୍ଷୟ ହୁଅନ୍ତି । ଦୁର୍ଗ ମଧ୍ୟରେ ଥିବା ପ୍ରତିରକ୍ଷାକାରୀଙ୍କ ସଂଖ୍ୟା କମି ଆସେ । ଅବଶେଷରେ ସେମାନଙ୍କ ପ୍ରତିରୋଧ କ୍ଷମତା ଭାଙ୍ଗି ପଡ଼ିଲେ ଆକ୍ରମଣକାରୀମାନେ ପରାଜିତ ସୈନ୍ୟମାନଙ୍କ ପଛରେ ଗୋଡ଼େଇ ଗୋଡ଼େଇ ଦୁର୍ଗ ଭିତରେ ପ୍ରବେଶ କରନ୍ତି । ସୁଦୃଢ଼ ପ୍ରାଚୀର ଘେର ମଧ୍ୟରେ ଥିବା କୌଣସି କିଛି ଆଉ ସେମାନଙ୍କ କବଳରୁ ରକ୍ଷା ପାଏ ନାହିଁ । ସବୁ କିଛିକୁ ସେମାନେ ଛିନ୍ନ ଭିନ୍ନ କରି ପକାନ୍ତି । ଯେଉଁଠି ଏକଦା ଲୋକେ ବସବାସ କରୁଥିଲେ, କାମ କରୁଥିଲେ ଏବଂ ଆନନ୍ଦ ମହୋତ୍ସବ କରୁଥିଲେ, ତାହା ପରିଣତ ହୁଏ ଧ୍ୱଂସ ସ୍ତୂପରେ । ବିଜେତାମାନେ ସ୍ତ୍ରୀ ପୁରୁଷ, ପିଲ ଛୁଆମାନଙ୍କୁ ଧରି ନେଇ ଯାଆନ୍ତି ଦାସଦାସୀ କରିବା ପାଇଁ ।

## ମୃତ ଲୋକ ମୁହଁରେ ଜୀବନ୍ତ କଥା ।

ରୁଷିଆର ଦକ୍ଷିଣରେ ବିଶାଳ ଷ୍ଟେପ୍ ଭୂଇଁରେ ଧାଡ଼ି ଧାଡ଼ି ହୋଇ ଉଞ୍ଚା ଢିପସବୁ ଦେଖିବାକୁ ମିଳେ । ଏଗୁଡ଼ାକ ଯେ କ'ଣ ଏବଂ କିଏ ଏସବୁ ତିଆରି କରିଥିଲ, ସେ କଥା ସ୍ଥାନୀୟ ଅଧିବାସୀମାନେ ଜାଣନ୍ତି ନାହିଁ ।

କିନ୍ତୁ ଖୁବ୍ ଜୋର ଦେଇ କହିଲେ, ଜଣେ ଦିଜଣ ବୁଢ଼ା ଲୋକ ହୁଏତ କହିବେ, ସେସବୁ ହେଉଛି 'ମାମିସ୍' ଏବଂ 'ମାମିସ୍ଙ୍କ ଝିଅମାନଙ୍କ' କବର । କିନ୍ତୁ ଏହିସବୁ ମାମିସ୍ମାନେ କିଏ ଏବଂ କେବେ ସେମାନେ ରହୁଥିଲେ, ସେ କଥା ସେମାନଙ୍କୁ ଜଣା ନାହିଁ ।

କିନ୍ତୁ ବୁଢ଼ା ଜଣଙ୍କ ଯଦି ଗପୁଡ଼ି ହୋଇଥିବ, ତେବେ ସେ ଆନନ୍ଦରେ କହିବ, ସେଠାରେ ରହୁଥିବା ଜଣେ ଜମିଦାର ଅନେକ ବର୍ଷ ଧରି ଏହିସବୁ ଢୁହକୁ ଖୋଳିଥିଲ । ସେ ଖୋଳୁଥିଲ ତା ମଧ୍ୟରେ କାଳେ ଧନରତ୍ନ ପୋତା ହୋଇଥିବ ।

କିନ୍ତୁ ସେ କିଛି ପାଇଲା ନାହିଁ । ଏହି ସମୟରେ ଆସିଲା ବିପ୍ଳବ । ଜମିଦାରର ପତନ ଘଟିଲା, ବନ୍ଦ ହୋଇଗଲା ତା'ର ସେ ଧନସଂପଦ ଖୋଳିବା ।

ତେବେ ଏହିସବୁ ବୁଢ଼ାମାନଙ୍କୁ ଜୁଦ ବିଷୟରେ ପଚାରିକି ସମୟ ନଷ୍ଟ କରିବା ଠିକ୍ ନୁହେଁ । ତମେ ଯଦି ପ୍ରକୃତରେ ସେସବୁ ସଂପର୍କରେ ଜାଣିବାକୁ ଚାହୁଁଥାଅ ତେବେ ସେସବୁକୁ ଖୋଳୁଥିବା ପ୍ରତ୍ନତତ୍ତ୍ୱବିତ୍‌ମାନଙ୍କୁ ପଚାର ।

ବୁଢ଼ା ଲୋକମାନେ କେବଳ ସେମାନଙ୍କ ଜୀବନକାଳ ମଧ୍ୟରେ ଘଟିଥିବା ଘଟଣା କଥା କହି ପାରିବେ, କିନ୍ତୁ ଶହ ଶହ ବର୍ଷ ଆଗେ ଘଟିଥିବା ଜିନିଷ ବିଷୟ ପ୍ରତ୍ନତତ୍ତ୍ୱବିତ୍‌ମାନେ କହି ପାରନ୍ତି ।

ଆମେ ଯେଉଁ ସ୍ତୂପଗୁଡ଼ିକ କଥା ଆଲୋଚନା କରୁଛେ, ସେସବୁ ହେଉଛି ପ୍ରାଚୀନ ସମାଧିସ୍ଥଳ । ଯେଉଁମାନେ ଏହି ବିସ୍ତୃତ ସମତଳ ଭୂଇଁରେ ଏକଦା ବାସ କରୁଥିଲେ ସେମାନଙ୍କ ସମାଧି ।

ପ୍ରତ୍ନତତ୍ତ୍ୱବିତ୍‌ମାନେ ସେସବୁକୁ ଖୋଳି ସେଥିରୁ କଙ୍କାଳ ବାହାର କରିଛନ୍ତି । ଏହା ଛଡ଼ା ସେମାନେ ପାଇଛନ୍ତି—ମାଟି ତିଆରି ପାଣି ମାଠିଆ, ପଥର କିମ୍ବା ବ୍ରୋଞ୍ଜ ତିଆରି ହତିଆର ଆଉ ଘୋଡ଼ାର ହାଡ଼ । ଏହିସବୁ ଜିନିଷ ସେତେବେଳେ ମୃତ ଲୋକକୁ ଦିଆଯାଉଥିଲା, ତା'ର ଦୀର୍ଘ ଯାତ୍ରା ପାଇଁ ।

ପୂର୍ବକାଳରେ ଲୋକେ ବିଶ୍ୱାସ କରୁଥିଲେ ଯେ, ମଣିଷ ମରିଗଲା ପରେ ମଧ୍ୟ ସେ ଖାଏ ଏବଂ କାମ କରେ । ସ୍ତ୍ରୀଲୋକମାନଙ୍କ ମୃତ ଆତ୍ମାର ଦରକାର ପଡ଼େ ସୂତା କଣ୍ଡା ଏବଂ ପୁରୁଷ ପାଇଁ ବର୍ଚ୍ଛା ।

ଅତି ପ୍ରାଚୀନ କାଳର ସମାଧିଗୁଡ଼ିକ ଥିଲା ଏକାରକମର । ସେତେବେଳେ ମଣିଷର ବେଶି ସଂପତ୍ତି ନଥିଲା । ତେଣୁ ସେ ମରିଗଲା ପରେ ତା'ର ଜିନିଷପତ୍ରକୁ ତା ସହିତ ସମାଧି ଦିଆ ଯାଉଥିଲା । ନିଜର ଜିନିଷ ବୋଇଲେ ସେତେବେଳେ ବେକରେ ପିନ୍ଧୁଥିବା ଡେଉଁରିଆ ଆଉ ହାତରେ ଧରୁଥିବା ବର୍ଚ୍ଛା ଛଡ଼ା ଆଉ ବା କ'ଣ ଥାଇ ପାରେ !

ଘରେ ଯାହା କିଛି ଜିନିଷପତ୍ର ଥିଲା, ସେ ସବୁ କୋଠ ସଂପତ୍ତି । କାରଣ ସେତେବେଳେ ପରିବାରର ସବୁ କାମ ଏକାଠି କରାଯାଉଥିଲା । ତେଣୁ କରି, ଅତି ପୁରାତନ ସମାଧି ଜୁଦଗୁଡ଼ିକରେ ଧନୀ ଗରିବର ତଫାତ୍ ନଥିଲା । ସମସ୍ତ ମୃତ ଲୋକ ଥିଲେ ସମାନ ।

ପରେ ମୃତ ଲୋକମାନଙ୍କ ମଧ୍ୟରେ ଧନୀ ଆଉ ଗରିବ ଦେଖିବାକୁ ମିଳିଛି ।

ଦକ୍ଷିଣ ରୁଷିଆର ଡନ୍ ନଦୀ କୂଳରେ ୟେଲିସାଭେଟୋଭ୍‌ସାୟା ନାମରେ ଗାଁଟିଏ ଅଛି । ସେଠାରେ ଏକ ଶ୍ମଶାନରେ ସମାଧି ଜୁଦସବୁ ଆବିଷ୍କୃତ ହୋଇଛି

ସେଠି ତିନି ରକମର ସମାଧି ରହିଛି : ପ୍ରଥମଟି ଧନୀ ଲୋକମାନଙ୍କର, ଦ୍ୱିତୀୟଟି ମଧ୍ୟବିତ୍ତଙ୍କର ଏବଂ ତୃତୀୟଟି ଗରିବଙ୍କର ।

ସବୁଠାରୁ ବଡ଼ କୁନ୍ଦଗୁଡ଼ିକ ମଧ୍ୟରେ ଥିବା ଗାତଗୁଡ଼ିକ ଥିଲା ବଡ଼ ବଡ଼ । ସେସବୁ ମଧ୍ୟରେ ଅଛି ଚିତ୍ର କରା ଗ୍ରୀକ୍ ଫୁଲଦାନୀ, ସୁନାର ବର୍ମ ଏବଂ ଚମତ୍କାର କାରୁକାର୍ଯ୍ୟ ଖଚିତ ଛୁରୀ ।

ଛୋଟ ଛୋଟ କୁନ୍ଦଗୁଡ଼ିକ ମଧ୍ୟରେ ସୁନା ଜିନିଷ ପ୍ରାୟ ମିଳେ ନାହିଁ ଏବଂ ଚିତ୍ରକରା ଫୁଲଦାନୀ ମଧ୍ୟ ସେସବୁଥିରେ ନାହିଁ । କିନ୍ତୁ ଏସବୁକୁ ଗରିବମାନଙ୍କ ସମାଧି ବୋଲି କହି ହେବ ନାହିଁ । କାରଣ ମୃତ ଲୋକ ଗରିବ ହୋଇଥିଲେ ତା'ର କଚ୍ଛା ବାଣ୍ଟିସ୍ ଦିଆ ଯାଇଥିଆ ନଥାନ୍ତା, କିମ୍ବା ଧାତୁ ନିର୍ମିତ ସୁନ୍ଦରିଆ ବର୍ମ ନଥାନ୍ତା ।

ଛୋଟ ଛୋଟ କୁନ୍ଦଗୁଡ଼ିକର ସଂଖ୍ୟା ବଡ଼ ବଡ଼ କୁନ୍ଦଗୁଡ଼ିକଠାରୁ ସଂଖ୍ୟାରେ ଅଧିକ । ଏସବୁ ହେଲା ଗରିବମାନଙ୍କ ସମାଧି ସ୍ତୂପ । ତା ମଧ୍ୟରେ ମୃତ ଲୋକର ଡାହାଣ ପାଖକୁ ଥୁଆ ହୋଇଛି ଏକ ବର୍ଚ୍ଛା ଏବଂ ବାଁ ପାଖରେ ଏକ ପାଣିପାତ୍ର । ତାକୁ ଶୋଷ ଲାଗିଲେ ସେଥିରେ ସେ ପାଣି ପିଇ ପାରିବ । ସମାଜରେ ସେ ଗରିବ ଥିଲା ଏବଂ ସମାଧି ସ୍ତୂପ ମଧ୍ୟରେ ବି ସେ ଗରିବ ହୋଇ ରହିଛି ।

କଥାରେ କହନ୍ତି 'ସମାଧି ଭଳି ନିରବ' । କିନ୍ତୁ ଏହିସବୁ ସମାଧି କ'ଣ ନିରବ ? ସେସବୁ କ'ଣ ସେଇ ସୁଦୂର ଅତୀତରେ ପ୍ରଥମେ ଯେତେବେଳେ ଧନୀ ଗରିବ ସୃଷ୍ଟି ହେଲେ, ସେତେବେଳର କଥା ଆମକୁ କହନ୍ତି ନାହିଁ ? ତେଣୁ ମୃତ ମଣିଷ ଜୀବନ୍ତ ମଣିଷ ସଂପର୍କରେ ଅନେକ କିଛି କହି ପାରେ ।

ଏହିସବୁ ସମାଧି ସ୍ତୂପଗୁଡ଼ିକଠାରୁ କିଛି ବାଟ ଆଗେଇ ଯାଇ ଆମେ ସେ ଲୋକ ବସତିର ଧ୍ୱଂସାବଶେଷ ନିକଟକୁ ଯିବା ଚାଲନ୍ତୁ । ସେଠାରେ ମଧ୍ୟ ଆମେ ସେ କାଳର ସଂପଦ ଆଉ ଦରିଦ୍ରତାର ଚିହ୍ନ ଦେଖିବାକୁ ପାଇବା । ଜନବସତିଟିର ଦୁଇ ପାଖରେ ଯେଉଁ ଦୁଇଟି ପାଚିରୀ ଥିଲା, ତାକୁ ପ୍ରତ୍ନତତ୍ତ୍ୱବିତ୍‌ମାନେ ଆବିଷ୍କାର କରିଛନ୍ତି । ଗୋଟିଏ ବାହାର ପାଚେରୀ, ଆରଟି ଭିତରର ପାଚେରୀ । ଭିତର ପାଚିରୀଟି ଜନବସତିର କେନ୍ଦ୍ରୀୟ ଅଂଶକୁ ଘେରିକି ରହିଥିଲା । ସେଥିରୁ ଅନେକ ମୂଲ୍ୟବାନ ଜିନିଷର ଟୁକୁରା ମିଳିଛି । ସେସବୁ ମଧ୍ୟରେ ଅଛି ଗ୍ରୀସ୍‌ରୁ ଅଣାଯାଇଥିବା ସୁନ୍ଦର ଫୁଲଦାନୀସବୁ । କିନ୍ତୁ ବାହାର ପାଚିରୀ ଆଉ ଭିତର ପାଚିରୀ ମଧ୍ୟରେ ଥିବା ସ୍ଥାନରୁ ଏପରି କୌଣସି ମୂଲ୍ୟବାନ ଜିନିଷ ମିଳି ନାହିଁ । ଯାହା କିଛି ମିଳିଛି, ସେସବୁ ମଧ୍ୟରେ ଅଛି ସାଧାରଣ ମାଟିପାତ୍ରର ଅଂଶବିଶେଷ । ଏଥିରୁ ବୁଝା ପଡ଼ୁଛି, କେନ୍ଦ୍ରୀୟ ଅଂଶଟିରେ ରହୁଥିବା ଲୋକମାନେ ଥିଲେ ବାହାର ଆଉ ଭିତର ପାଚିରୀ

ମଧ୍ୟରେ ରହୁଥିବା ଲୋକଙ୍କଠାରୁ ଅନେକ ଧନିକ । ସେମାନଙ୍କର ଏହିସବୁ ମୂଲ୍ୟବାନ ଜିନିଷପତ୍ର କିଣିବାର ସାମର୍ଥ୍ୟ ରହିଥିଲା ।

ସେମାନଙ୍କ ସମାଧି ଉପରେ ଗଢ଼ା ଯାଇଥିବା ସ୍ତୂପଗୁଡ଼ିକ ମଧ୍ୟ ଥିଲା ଅପେକ୍ଷାକୃତ ଅନେକ ବଡ଼ ବଡ଼ ।

କାର୍ଯ୍ୟତଃ ସମାଧିରୁ ଆମେ ମୃତ ଲୋକର କଥା ଜାଣି ପାରିଥାଏଁ । ଅନେକ ସମୟରେ ଅନେକ ଭୟାବହ ସତ୍ୟ ମଧ୍ୟ ଏହିସବୁ ସମାଧି ମଧ୍ୟରୁ ଆବିଷ୍କୃତ ହୋଇଛି । ବେଳେ ବେଳେ ଜୋର କରି ଦାସମାନଙ୍କୁ ମାରି ସେମାନଙ୍କ ପ୍ରଭୁ ସହିତ ସମାଧିରେ ପୋତି ଦିଆଯାଉଥିଲା । କେବେ କେବେ ମୃତ ସ୍ୱାମୀ ସହିତ ଜୀବନ୍ତ ସ୍ତ୍ରୀମାନଙ୍କୁ ମଧ୍ୟ ପୋତି ଦିଆଯାଉଥିଲା ।

ଧନୀ ଗୋତ୍ରର ମୁଖ୍ୟ, ତାପାର ନିର୍ଦ୍ଦୟ କ୍ଷମତା ସଂପର୍କରେ କୌଣସି ପୁସ୍ତକ ଯାହା କହି ପାରେ ନାହିଁ, ତାଠାରୁ ଅଧିକ ଏହିସବୁ ସମାଧି କହିଥାନ୍ତି । ସେ ମରିଗଲା ପରେ ତା'ର ସ୍ତ୍ରୀମାନଙ୍କ ସମେତ ତା'ର ଦାସମାନଙ୍କୁ ତା ସହିତ ସମାଧି ଦିଆଯାଉଥିଲା । କାରଣ ମୂଲ୍ୟବାନ ବ୍ରୋଞ୍ଜ ଆଉ ସୁନା ଅଳଙ୍କାର ଭଳି ସେମାନେ ଥିଲେ ତା'ର ସଂପତ୍ତି ।

## ନୂଆ ଧାତୁ ତିଆରି ହେଲା ।

ଏହିସବୁ ସମାଧି ବା ଧ୍ୱଂସପ୍ରାପ୍ତ ଦୁର୍ଗ ତଳେ ଅନ୍ଧକାର ମଧ୍ୟରେ ହଜାର ହଜାର ବର୍ଷ ଧରି ଯେଉଁସବୁ ଅମୂଲ୍ୟ ସଂପଦ ପୋତି ହୋଇ ରହିଥିଲା, ଏବେ ସେସବୁ ମିଉଜିଅମ୍‌ମାନଙ୍କରେ ପ୍ରଦର୍ଶିତ ହେଉଛି । ଶହ ଶହ ବର୍ଷ ଧରି ଯାହା ଆମର ଦୃଷ୍ଟି ଅନ୍ତରାଳରେ ରହି ଯାଇଥିଲା ସେସବୁକୁ ଆମେ ଦେଖି ପାରୁଛେ ଏବଂ ତଦ୍ୱାରା ଦୂର ଅତୀତକୁ ଜାଣି ପାରୁଛେ ।

ଦର୍ଶକମାନେ ପ୍ରତ୍ୟେକଟି କାଚ ବାକ୍ସ୍ ନିକଟରେ ଛିଡ଼ା ହୋଇ ସୁନା ବେଣ୍ଟର ତରବାରି, ସୁନ୍ଦର ଶିକୁଳୀ, ସୁନା ତିଆରି ବାଛୁରୀ ମୁଣ୍ଡ ଦେଇ ଗୁନ୍ଥା ମାଳ, ଷଣ୍ଢ ବା ହରିଣ ଆକୃତିର ରୂପାନିର୍ମିତ ପାତ୍ରଗୁଡ଼ିକୁ ଦେଖନ୍ତି ।

ଏହିସବୁ ଜିନିଷକୁ ତିଆରି କରିବାରେ କେତେ ଶ୍ରମ ଆଉ ନିପୁଣତା ଲାଗିଥିବ କୁହତ ?

ଅତି ସାଧାରଣ ବ୍ରୋଞ୍ଜର ଛୁରୀଟିଏ ତିଆରି କରିବାକୁ କେତେ ଦିନ ଲାଗେ !

ପ୍ରଥମେ ଖଣିଜ ଧାତୁ ସଂଗ୍ରହ କରିବାକୁ ପଡ଼ିଥିବ । ସେତେବେଳକୁ ଆଉ ରାସ୍ତା ଘାଟରେ ଖୋଜିଲେ ଖାଣ୍ଟି ତମ୍ବା ମିଳୁ ନଥିଲା । ତେଣୁ ଖଣି ଖୋଳି ଅନେକ

ତଳୁ ତମ୍ବା ବାହାର କରିବାକୁ ପଡ଼ିଥିବ । ଅନ୍ଧାରୁଆ ଖଣିର ସୁଡ଼ଙ୍ଗ ପଥ ଭିତରୁ ତମ୍ବାକୁ ଗଇନ୍ତିରେ ଭାଙ୍ଗି ଚମଡ଼ା ଖୋଳରେ ସେସବୁକୁ ମାଟି ଉପରକୁ ଆଣିବାକୁ ହୋଇଥିବ ।

ତା'ପରେ ବଡ଼ ବଡ଼ ପଥର ଖଣ୍ଡକୁ ସହଜରେ ଭାଙ୍ଗିବା ପାଇଁ ମଣିଷ ଉପାୟ ବାହାର କଲା । ମାଟି ତଳେ ସେମାନେ ନିଆଁ ଜାଳି ଦେଲେ । ପଥର ତାତିକି ଗରମ ପଡ଼ିଗଲା ପରେ ତା ଉପରେ ସେମାନେ ଥଣ୍ଡା ପାଣି ଢାଳି ଦେଉଥିଲେ । ପାଣିସବୁ ବାମ୍ଫ ହୋଇ ଯାଉଥିଲା । ସେଇ ବାମ୍ଫର ଚାପ ଫଳରେ ପଥର ଫାଟି, ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଉଥିଲା । ଏହି ଭାବେ ନିଆଁ ଏବଂ ପାଣି ସାହାଯ୍ୟ କରିଥିଲା ଖଣି ଖୋଳାଳୀମାନଙ୍କୁ ।

ସେତେବେଳେ ଖଣିସବୁ ଦେଖିବାକୁ ଥିଲା ଆଗ୍ନେୟ ଗିରି ଭଳି । ଆଗ୍ନେୟ ଗିରିର ମୁହଁ ପରି ଖଣି ମୁହଁରୁ ବାମ୍ଫ ଆଉ ଧୂଆଁ ବାହାରୁଥିଲା । ତେଣୁ କରି ଆମେ ରୋମର ଦେବତା ଭଲ୍‌କାନୋ—ଅଗ୍ନି ଦେବତାଙ୍କ ନାମ ଅନୁସାରେ ଆଗ୍ନେୟ ଗିରିକୁ ଇଂରେଜୀରେ ଭଲ୍‌କାନୋ ବୋଲି କହିଥାଏଁ ।

ଖଣିରୁ ଧାତୁ ପଥରକୁ ବାହାର କଲା ପରେ ତାକୁ ପୁଣି ତରଳେଇବାକୁ ପଡ଼ୁଥିଲା । ଏଥି ପାଇଁ ମଧ୍ୟ ଦରକାର ପଡ଼ିଥିଲା ଖୁବ୍ ବିଚକ୍ଷଣତା । ଶିତଳ



ଡଲ୍‌ମେନ୍—ବୃହତ୍ ବୃହତ୍ ଶିଳାଖଣ୍ଡମାନଙ୍କରେ ତିଆରି ସମାଧି ।

ଧାତୁକୁ ଶକ୍ତ କରିବା ପାଇଁ ଏବଂ ତରଳ ଧାତୁକୁ ଛାଞ୍ଚରେ ଢାଳିବା ତମ୍ବା ପଥର ସହିତ ଖଣିଜ ଟିଣକୁ ମଣିଷ ମିଶାଇଲା ।

ତରଳ ଧାତୁପିଣ୍ଡ ଏବଂ କାସିଟେରାଇଟ୍ ମିଶି ପ୍ରସ୍ତୁତ ହେଲା ମିଶ୍ର ତମ୍ବା ଏବଂ ଟିଣ । ଏହା ଖାଣ୍ଟି ତମ୍ବା ନୁହେଁ, ଏହାକୁ କୁହାଗଲା ବ୍ରୋଞ୍ଜ । ସ୍ୱତନ୍ତ୍ର ଗୁଣଧାରୀ ଏହା ଏକ ନୂଆ ଧାତୁ । ଏହାକୁ ମଣିଷ ତିଆରି କରିଥିଲା ।

ଏହାର ପୂର୍ବବର୍ତ୍ତୀ ଯୁଗରେ ମଣିଷ ପଥରକୁ କାଟି ଏବଂ ଘଷି ତିଆରି କରୁଥିଲା ସ୍ଥୂଳ ହତିଆରସବୁ । ଦରକାର ପଡ଼ିଲେ ଜଣେ ଅନ୍ୟ ଜଣକର କାମକୁ ଅନାୟସରେ କରି ପାରୁଥିଲା । ପ୍ରାଗୈତିହାସିକ ମଣିଷର ନୈପୁଣ୍ୟ ଥିଲା ଖୁବ୍ ସୀମିତ । ତେଣୁ ତା କାମକୁ ଶିଖିବାଟା କଷ୍ଟକର ନଥିଲା । ପ୍ରାଗୈତିହାସିକ ଉପଜାତି ମଧ୍ୟରେ ସବୁ ଲୋକେ ଥିଲେ ଶିକାରୀ । ତେଣୁ ସମସ୍ତେ ନିଜ ନିଜର ଧନୁ ଶର ତିଆରି କରି ପାରୁଥିଲେ ।

ସରୁଆ ସରୁ ଗଛର କାଣ୍ଡକୁ ବଙ୍କା କରି ଦଉଡ଼ି ଖଣ୍ଡକରେ ତା'ର ଦିଇ ଅଗକୁ ବାନ୍ଧି ଦେବା ହେଲା ଗୋଟିଏ କାମ ଏବଂ ମେଞ୍ଚାଏ ଧାତୁ ପଥରକୁ ଚକ୍ ଚକ୍ ଏକ ବ୍ରୋଞ୍ଜ ତରବାରିରେ ପରିଣତ କରିବା ଅନ୍ୟ ଏକ କାମ ।

ସାଣ୍ଢୁ ତିଆରି କରୁଥିବା ଜଣେ କାରିଗରର ନୈପୁଣ୍ୟ ଶିକ୍ଷା କରିବା ପାଇଁ ଅନେକ ବର୍ଷ ଦରକାର । ସାଣ୍ଢୁ ତିଆରି କରୁଥିବା କାରିଗର ତା'ର ପୁଅକୁ ଏ ବିଦ୍ୟା ଶିକ୍ଷା ଦେଉଥିଲା । କାରଣ ଏହି ନୈପୁଣ୍ୟ ଥିଲା ତା ଗୋତ୍ରର ସଂପତ୍ତି, ତା'ର ପୈତୃକ ସଂପଦ । ଏହି ଭଳି ଭାବେ କୁମ୍ଭାର, କମାର ଏବଂ ତମ୍ବାକାରମାନେ ଗୋଟିଏ ଜନବସତି ଗଢ଼ି ତୋଳିଥିଲେ ଏବଂ ସେମାନଙ୍କ ଖ୍ୟାତି ଚତୁର୍ଦ୍ଦିଗରେ ବ୍ୟାପି ଯାଇଥିଲା ।

# ମୋର ଏବଂ ତୁମର ।

ପ୍ରଥମେ ପ୍ରଥମେ ପ୍ରତ୍ୟେକ କାରିଗର ଆପଣା ଗୋଷ୍ଠୀ ବା ଗ୍ରାମ ପାଇଁ କାମ କରୁଥିଲେ ।

କିନ୍ତୁ କାଳ କ୍ରମେ କମାର ଏବଂ କୁମ୍ଭାରମାନେ ସେମାନଙ୍କ ଦ୍ୱାରା ତିଆରି ଜିନିଷକୁ ଅନ୍ୟ କାରିଗର ବା ଚାଷୀମାନେ ଫଳେଇଥିବା ଶସ୍ୟ ବା ବୁଣିଥିବା ଲୁଗାପଟା ଏବଂ ଅନ୍ୟାନ୍ୟ ଜିନିଷ ପାଇଁ ଅଦଳବଦଳ କରିବାକୁ ଲାଗିଲେ ।

ପ୍ରାଚୀନ ଉପଜାତି ବ୍ୟବସ୍ଥାରେ କ୍ରମେ ଫାଟ ଦେଖା ଦେବାକୁ ଆରମ୍ଭ କଲା, ଠିକ୍ ଯେମିତି ଖଣି ଭିତରେ ତତଲା ପଥର ଦିହରେ ଥଣ୍ଡା ପାଣି ପଡ଼ିଲେ ତାହା ଫାଟି ଯାଉଥିଲା ।

ପ୍ରଥମେ ଗ୍ରାମର ସମସ୍ତ ଅଧିବାସୀ ସମାନ ଥିଲେ । ଏଥର ଗୋଟିଏ ଫାଟ ସୃଷ୍ଟି ହେବା ଫଳରେ ଧନୀ ପରିବାର ଏବଂ ଗରିବ ପରିବାର ମଧ୍ୟରେ ପାର୍ଥକ୍ୟ ଦେଖା ଦେଲା । ଆଉ ଗୋଟିଏ ଫାଟ କାରିଗରଠାରୁ ଚାଷୀକୁ ଅଲଗା କରି ଦେଲା ।

କାରିଗରମାନେ ଯେତେ ଦିନ ପର୍ଯ୍ୟନ୍ତ ଗ୍ରାମ ଗୋଷ୍ଠୀ ପାଇଁ କାମ କରୁଥିଲେ, ଗ୍ରାମ ଗୋଷ୍ଠୀ ସେତେ ଦିନ ପର୍ଯ୍ୟନ୍ତ ସେମାନଙ୍କୁ ଭରଣ ପୋଷଣ କରୁଥିଲା । ସମସ୍ତେ ମିଳି ଏକାଠି କାମ କରୁଥିଲେ ଏବଂ ଯାହା ଫଳଉଥିଲେ ବା ତିଆରି କରୁଥିଲେ, ତାକୁ ଭାଗ ଭାଗ କରି ନେଉଥିଲେ ।

କିନ୍ତୁ କାରିଗର ଯେତେବେଳେ ତା'ର ହାତ ତିଆରି କେଟଲି ଏବଂ ଖଣ୍ଡାକୁ ଅନ୍ୟ ଗ୍ରାମରେ ବିକିବାକୁ ଆରମ୍ଭ କଲା, ସେସବୁର ବିନିମୟରେ ସେ ପାଇଲା ଲୁଗାପଟା ଏବଂ ଶସ୍ୟ ଆଦି ଜିନିଷ । ସେସବୁକୁ ସେ ତା'ର ଆତ୍ମୀୟମାନଙ୍କ ସହିତ ଭାଗ କରିବାକୁ ଚାହିଁଲା ନାହିଁ ।

ସେ ଭାବିଲା, ସିଏ ଏବଂ ତା'ର ପୁଅ ଅନ୍ୟମାନଙ୍କ ସାହାଯ୍ୟ ବିନା ଏସବୁ ଜିନିଷ ଉପାର୍ଜନ କରିଛନ୍ତି, ତେଣୁ ଏଥିରୁ ଅନ୍ୟମାନଙ୍କୁ ଭାଗ ଦେବ କାହିଁକି !

ଏହି ଭାବେ ମଣିଷ 'ମୋର' ଏବଂ 'ତୋର' ମଧ୍ୟରେ, ନିଜର ପରିବାର ଏବଂ ତା'ର ଆତ୍ମୀୟମାନଙ୍କ ପରିବାର ମଧ୍ୟରେ ପାର୍ଥକ୍ୟ ସୃଷ୍ଟି କଲା ।

ଲୋକେ ଏଣିକି ଛୋଟ ଛୋଟ ପରିବାର ମଧ୍ୟରେ ବାସ କରିବାକୁ ଲାଗିଲେ ।

ପ୍ରାଚୀନ ଗ୍ରୀସ୍‌ର ମେସିନିଆ ଏବଂ ଟିରିନ୍‌ରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଜନବସତିର ଧ୍ୱଂସସ୍ତୂପ ମଧ୍ୟରୁ ଏହି ପାର୍ଥକ୍ୟର ପ୍ରମାଣ ଖୋଜି ବାହାର କରିଛନ୍ତି ।

ସେଠାରେ ସବୁଠାରୁ ଧନୀ ଏବଂ ପରାକ୍ରମଶାଳୀ ପରିବାରଟି ବାସ କରୁଥିଲେ ପାହାଡ଼ ଉପରେ, ସୁଦୃଢ଼ ପାଚେରୀ ଘେର ମଧ୍ୟରେ । ଏହି ପରିବାରଟିର ଅନେକ କିଛି ଥିଲା ଯାହାକୁ ସେ ପଥର ପାଚେରୀ ମଧ୍ୟରେ ଲୁଚେଇ ରଖିବାକୁ ଚାହୁଁଥିଲା । ଉପଜାତିର ଯୋଦ୍ଧା ଦଳପତି ତା'ର ପୁଅ ସ୍ତ୍ରୀ ଏବଂ ପିଲାମାନଙ୍କୁ ନେଇ ବାସ କରୁଥିଲା ସେଥିରେ । ଚାଷୀମାନେ ଥିଲେ ଗରିବ । ସେମାନେ ସମତଳ ଭୂଇଁରେ ଛୋଟ ଛୋଟ କୁଡ଼ିଆ ଘରେ ରହୁଥିଲେ । କାରିଗରମାନେ – କୁମ୍ଭାର, କମାର ଏବଂ ତମ୍ବାକାରମାନେ – ସେମାନଙ୍କ ଚତୁର୍ପାର୍ଶ୍ୱସ୍ଥ ପାହାଡ଼ରେ ରହୁଥିଲେ ।

ଏହି ଗାଁରେ ଲୋକେ ଆଉ ସମାନ ହୋଇ କି ନଥିଲେ । ଉପଜାତିର ଧନୀ ଏବଂ ପରାକ୍ରମଶାଳୀ ଦଳପତି ବାଟରେ ଗଲାବେଳେ ଚାଷୀମାନେ ତାକୁ ଓଲଗି ହେଉଥିଲେ । କାରଣ, ସେମାନେ ବିଶ୍ୱାସ କରୁଥିଲେ, ଦେବତାମାନେ ହେଉଛନ୍ତି ଶକ୍ତିଶାଳୀ ଲୋକଙ୍କର ପୃଷ୍ଠପୋଷକ ।

ଅତ୍ୟନ୍ତ ଶୈଶବ କାଳରୁ ପ୍ରଧାନ ପୁରୋହିତ ସେମାନଙ୍କ ମୁଣ୍ଡରେ ଏହିସବୁ କଥା ପୂରେଇ ଦେଉଥିଲେ ।

ସ୍ୱାମୀମାନେ ମଧ୍ୟ କାରିଗର କିମ୍ବା ଖଣି ମଜୁରିଆମାନଙ୍କୁ 'ଭାଇ' ଆଖିରେ ଦେଖୁ ନଥିଲେ । ଦେହ ସାରା କଳା ବଇ ବଇ ହୋଇ ନିଆଁ ଆଉ ଧୂଆଁ ଭିତରୁ ସେ କେମିତି ମାଟି ତଳୁ ତମ୍ବା ବାହାର କରେ ସେ କଥା ଜାଣି ବୁଝି ପାରୁ ନଥିଲ । ଖଣି ଭିତରେ କ'ଣ ହେଉଛି ସିଏ ବା କାହିଁକି ଜାଣନ୍ତା ? ଖଣି ମଜୁରିଆ କେମିତି କେଉଁଠୁ ଏତେ ତମ୍ବା ଆଣୁଥିଲ ? ନିଶ୍ଚୟ କେହି ତାକୁ ଦେଖାଇ ଦେଉଥିଲ ତମ୍ବା କେଉଁଠି ମିଳେ ଏବଂ ଆଉ କେହି ସାହାଯ୍ୟ କରୁଥିଲ ସେସବୁକୁ କେମିତି ବାହାର କରିବାକୁ ହୁଏ । ତା'ପରେ କେହି ହୁଏତ ଅଲୌକିକ ଶକ୍ତି ବଳରେ ସେସବୁ ଧାତୁ ପଥରକୁ ତମ୍ବା ଏବଂ ବ୍ରୋଞ୍ଜ ବା ପିତ୍ତଳରେ ପରିଣତ କରିଦିଏ । ମାଟି ତଳେ ଯେଉଁମାନେ କାମ କରନ୍ତି ସେମାନଙ୍କର ହୁଏତ ଥିବେ ଅଦୃଶ୍ୟ ପୃଷ୍ଠପୋଷକମାନେ । ସେମାନଙ୍କ ସହିତ ସମତଳ ଭୂଇଁରେ ରହୁଥିବା ଲୋକେ ନମିଶିବାଟା ବୁଦ୍ଧିମାନ କଥା ।

ଖାଲି ଗ୍ରୀସ୍‌ରେ ନୁହେଁ, ପୃଥିବୀରେ ସବୁଠି ପ୍ରାଗୈତିହାସିକ ମଣିଷ ଏହିଭଳି ଭାବୁଥିଲ ।

ସେଇ ପ୍ରାଚୀନ କାଳରୁ ଯାଦୁକର-କମାରର ଗପଟି ଚଳି ଆସିଛି ।

ଆମ ଭାଷାରେ ଏଭଳି କେତେକ ଶବ୍ଦ ରହିଛି, ଯେଉଁଥିରେ ସଂପଦ ଏବଂ ଦରିଦ୍ରତା ପ୍ରକାଶ ପାଇଥାଏ । ପ୍ରାଗୈତିହାସିକ ଲୋକେ ଜାଣି ପାରୁ ନଥିଲେ, ସମାଜ କିପରି ଧନୀ ପରିବାର ଏବଂ ଗରିବ ପରିବାରରେ ଭାଗ ଭାଗ ହୋଇଗଲ । ସେମାନେ ଭାବୁଥିଲେ ମଣିଷର ଭାଗ୍ୟ ଦେବତାମାନଙ୍କ ଦ୍ୱାରା ପୂର୍ବରୁ ନିର୍ଦ୍ଧାରିତ ହୋଇଥାଏ ।

ରୁଷ୍ ଭାଷାରେ 'ବଗାତି' ବୋଲି ଗୋଟିଏ ଶବ୍ଦ ଅଛି । ତା'ର ଅର୍ଥ ହେଉଛି ଧନୀ । ଏହି ଶବ୍ଦଟି ସୃଷ୍ଟି ହୋଇଛି 'ବଗ୍' ଶବ୍ଦରୁ, ଯା'ର ଅର୍ଥ ହେଉଛି 'ଈଶ୍ୱର' । ଏହି ଶବ୍ଦଟି ରୁଷ୍ ଭାଷାରେ ସୃଷ୍ଟି ହୋଇଥିଲ ସେତିକି ବେଳେ, ଯେତେବେଳେ ଲୋକେ ବିଶ୍ୱାସ କରୁଥିଲେ ଭଗବାନ ଧନୀମାନଙ୍କ ପକ୍ଷରେ । ଦରିଦ୍ରମାନଙ୍କୁ ସେ କେବଳ ଦୁଃଖ ଯାତନା ଦେଇଥାନ୍ତି ।

## ନୂଆ ବ୍ୟବସ୍ଥାର ଆରମ୍ଭ ।

ଇତି ମଧ୍ୟରେ ମଣିଷ ଅନେକ ଦୂର ଆଗେଇ ଆସିଛି । ଏଥର ପୁଣି ତା'ର ସେହି ସୁଦୀର୍ଘ ଅତିକ୍ରାନ୍ତ ପଥ ଆଡ଼କୁ ଟିକେ ଦୃଷ୍ଟି ଫେରେଇବା ଆସନ୍ତୁ ।

ସମୟ ଥିଲା ଯେତେବେଳେ କେହି ଧନୀ ନଥିଲେ କି କେହି ଗରିବ ନଥିଲେ, ଜଣେ ଅନ୍ୟର ଦାସ କିମ୍ବା ମାଲିକ ହୋଇକି ବି ନଥିଲା ।

ପ୍ରାଗୈତିହାସିକ ଶିକାରୀମାନେ ଅତି ଦୟନୀୟ ଅବସ୍ଥାରେ ପାହାଡ଼ର ଗୁହାରେ କିମ୍ବା ମାଟି ଭିତରେ ଗାତ କରି ତା ମଧ୍ୟରେ ଖୁନ୍ଦିଖାନ୍ଦି ହୋଇ ରହୁଥିଲେ । ପଥର ଆଉ ହାଡ଼ରେ ତିଆରି ସେମାନଙ୍କର ହତିଆରଗୁଡ଼ିକ ଥିଲା ଅତ୍ୟନ୍ତ ସ୍ଥୂଳ । ବଣୁଆ ହିଂସ୍ର ଜୀବଜନ୍ତୁ, କ୍ଷୁଧା ଏବଂ ଶୀତ ଦାଉରୁ ସେମାନେ ଯେ ବଞ୍ଚି ପାରିଥିଲେ, ତା'ର କାରଣ ହେଲା, ସେମାନେ ଏକତ୍ର ବାସ କରୁଥିଲେ, ମିଳିତ ଭାବେ ଶିକାର କରୁଥିଲେ, ସେମାନଙ୍କର ସମସ୍ତ ଶକ୍ତି ସାମର୍ଥ୍ୟକୁ ଐକ୍ୟବଦ୍ଧ କରି ବିପଦରୁ ନିଜକୁ ରକ୍ଷା କରୁଥିଲେ ଏବଂ ଏକାଠି ସାମୂହିକ ବାସସ୍ଥଳୀ ତିଆରି କରି ରହୁଥିଲେ ।

ଜଣେ ମଣିଷ ପକ୍ଷରେ ଗୋଟାଏ ଅତିକାୟ ହାତୀ ବା ମାମଥ୍‌କୁ ହତ୍ୟା କରିବା ତ ଦୂରର କଥା ଗୋଟେ ଭାଲୁକୁ ମାରିବା ମଧ୍ୟ ଅସମ୍ଭବ ଥିଲା ।

ଘର ଭିତରେ ଚୁଲୀଟିଏ ପାଇଁ ବଡ଼ ପଥରଟାଏ ଟାଣି ଟାଣି ଆଣିବା ବା ପାହାଡ଼ ଗୁହାକୁ ଲାଗି ପଥରର କାନ୍ଥଟାଏ ତୋଳିବା ପାଇଁ ପଥର ଖଣ୍ଡକୁ ବହିବା – ସେ ଏକାକୀ କରି ପାରି ନଥାନ୍ତା ।

ସେତେବେଳେ ସେମାନଙ୍କର ଯାହା କିଛି ଥିଲା, ସେଥିରେ ସମସ୍ତେ ଥିଲେ ସାଧାରଣ ମାଲିକ । ପଶୁଟାଏ ଶିକାର କରି ଆଣିଲା ପରେ ବୁଢ଼ା ଲୋକମାନେ ତା'ର ମାଂସକୁ ଖଣ୍ଡ ଖଣ୍ଡ କରି କାଟି ସେଇମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ, ଯେଉଁମାନେ ତା ପଛେ ପଛେ ଧାଇଁ ତାକୁ ମାରିଥିଲେ ।

ଏହି ଭାବେ ହଜାର ହଜାର ବର୍ଷ ବିତି ଯାଇଥିଲା । ପ୍ରାଗୈତିହାସିକ ତମ୍ବୁ ଏବଂ ମାଟିତଳ ସୁଡ଼ଙ୍ଗ ବଦଳରେ ମଣିଷ ତିଆରି କଲା ଘର ଏବଂ ପଥର ଓ ହାଡ଼ ହତିଆର ବଦଳରେ ଧାତୁ ନିର୍ମିତ ହତିଆର ।

ଲୋକେ ମାଟିକୁ ଚାଷ କରିବାକୁ ଆରମ୍ଭ କଲେ, ପ୍ରଥମେ କୋଦାଳରେ ହାଣି, ପରେ କାଠ ଲଙ୍ଗଳରେ ହଳ କରି । ଘୋଡ଼ା, ଗାଈ ଏବଂ ମେଣ୍ଢାକୁ ସେମାନେ ପୋଷ ମନେଇଲେ । କମାରଶାଳାରେ ଲୁହାକୁ ହାତୁଡ଼ିରେ ପିଟିବାର ଶବ୍ଦ ଶୁଣିବାକୁ ମିଳିଲା । କୁମ୍ଭାରର ଚକ ଘୂରିବାକୁ ଲାଗିଲା । କ୍ରମଶଃ ଦେଖା ଦେବାକୁ ଲାଗିଲା ଶ୍ରମ ବିଭାଜନର ପ୍ରକ୍ରିୟା । କମାର ତା'ର ଟାଙ୍ଗିଆ ବା ଦାଆ ବଦଳରେ ପାଇଲା ଶସ୍ୟ । ତେଣୁ ତାପକ୍ଷରେ ଜମି ଚାଷ କରିବାର ଦରକାର ହେଲା ନାହିଁ । ଚାଷୀ ତା'ର ଶସ୍ୟ ବଦଳରେ ମେଣ୍ଢା ଲୋମ ପାଇଗଲା ବେଳେ ତା ପକ୍ଷରେ ମେଣ୍ଢା ପଲଟାଏ ରଖିବାର ଆବଶ୍ୟକତା ବା କ'ଣ ?

ଏହିପରି ପ୍ରଥମେ ନୌକା ଏବଂ ତା'ପରେ ପାଲ ବନ୍ଧା ନୌକାର ଆବିର୍ଭାବ ଘଟିଲା । ଲୋକେ ସେସବୁ ସାହାଯ୍ୟରେ ଗୋଟିଏ ଗାଁରୁ ଅନ୍ୟ ଗାଁକୁ ଯାଇ ପାରିଲେ । ସେଥିରେ ଶସ୍ୟ, ପଶୁ ଲୋମ, କୁରାଢ଼ି ଏବଂ ମାଟିପାତ୍ରସବୁ ବୋଝେଇ କରି ଦୂର ଅଞ୍ଚଳକୁ ବୋହି ନିଆଗଲା । ଦୂର ଦୂରାନ୍ତର 'ଆଗନ୍ତୁକମାନେ' ଦସ୍ୟୁରେ ପରିଣତ ହେଲେ । କାରଣ ଦସ୍ୟୁଗିରି ଏବଂ ବିନିମୟ ଚାଲିଥିଲା ଏକସଙ୍ଗରେ ।

ପୂର୍ବେ କେହି ତା'ର ଆତ୍ମୀୟମାନଙ୍କଠାରୁ ଧନୀ ନଥିଲେ, ସମସ୍ତେ ଥିଲେ ସମାନ ଭାବେ ଗରିବ ।

କିନ୍ତୁ ସମୟ ବିତି ଚାଲିବା ସଙ୍ଗେ ସଙ୍ଗେ ପାହାଡ଼ ଉପରେ ଥିବା ଗରିବ ଲୋକଙ୍କ କୁଡ଼ିଆ ଘରସବୁ ଉପରେ ମୁଣ୍ଡଟେକି ଉଠିଲା ଉଚ୍ଚା ଉଚ୍ଚା ପଥର ପାଚେରୀ । ଏହିସବୁ ପାଚେରୀ ଧନୀ ଏବଂ ଶକ୍ତିଶାଳୀ ପରିବାରଗୁଡ଼ିକର ଘର ଘେରି ପାଖରେ ତିଆରି ହୋଇଥିଲା । ଧନୀଲୋକଙ୍କର ଭଣ୍ଡାରସବୁ ଶସ୍ୟରେ ଉଚ୍ଛୁଳି ପଡ଼ିଲା । ବର୍ଷକୁ ବର୍ଷ ସେମାନଙ୍କ ସଂପତ୍ତି ବଢ଼ି ଚାଲିଲା, ବହୁ ଗୁଣିତ ହେଲା ।

ଧନୀଲୋକମାନେ ଗୋଷ୍ଠୀର କ୍ଷମତାକୁ ଦଖଲ କରି ନେଲେ, ଯେଉଁମାନେ ତୁଳନାତ୍ମକ ଭାବେ ଗରିବ ଥିଲେ, ସେମାନଙ୍କ ଉପରେ ଆଧିପତ୍ୟ ବିସ୍ତାର କଲେ । ଗରିବ ଲୋକେ କ୍ରମଶଃ ଅଧିକରୁ ଅଧିକ ସେମାନଙ୍କ ଧନୀ ପ୍ରତିବେଶୀଙ୍କ ନିକଟରେ ସାହାଯ୍ୟ ପାଇଁ ହାତ ପାତିବାକୁ ଲାଗିଲେ । କିନ୍ତୁ ଏହି ସାହାଯ୍ୟର ମୂଲ୍ୟ ଥିଲା ଅନେକ ବେଶି । କାରଣ, କଠିନ ଶୀତ ଋତୁରେ ଧନୀ ଲୋକଠାରୁ ସେ ଯେଉଁ ଶସ୍ୟ କରଜ ନେଉଥିଲା, ତାକୁ ସୁଝିବା ପାଇଁ ଗରିବ ଲୋକକୁ ବର୍ଷ ପରେ ବର୍ଷ ଧନୀ ପାଖରେ ଖଟିବାକୁ ପଡ଼ୁଥିଲା ।

ଏହି ଭାବେ କେତେକ ଲୋକ ଅନ୍ୟମାନଙ୍କୁ କ୍ରୀତ ଦାସରେ ପରିଣତ କଲେ ।

କିନ୍ତୁ ମଣିଷକୁ କ୍ରୀତ ଦାସ କରିବାରେ ଏହାହିଁ ଏକମାତ୍ର ପଥ ନଥିଲା । ଯୁଦ୍ଧରେ ବନ୍ଦୀ ହେଉଥିବା ଲୋକେ ଏବଂ ସ୍ୱାଧୀନ ଲୋକେ କ୍ରୀତ ଦାସରେ ମଧ୍ୟ ପରିଣତ ହେଉଥିଲେ ।

ସମୟ ଥିଲା, ଯେତେବେଳେ ସମସ୍ତେ କାମ କରୁଥିଲେ । କିନ୍ତୁ କାଳ କ୍ରମେ କେତେକ ଲୋକ ଏକେବାରେ କାମ କଲେ ନାହିଁ ଏବଂ ଅନ୍ୟମାନଙ୍କୁ ଚାବୁକରେ ପିଟି କାମ କରାଗଲା ।

ଏକଦା ସବୁ କିଛିର ମାଲିକ ଥିଲେ ସମସ୍ତେ, ଉଭୟ ଶିକାରର ହତିଆର ଏବଂ ମରା ହୋଇ ଥିବା ଶିକାର ଥିଲା ସମସ୍ତଙ୍କ ସଂପତ୍ତି । କିନ୍ତୁ, କ୍ରମଶଃ ଦାସମାଲିକମାନେ, ବିରାଟ ବିରାଟ ଭୂଖଣ୍ଡ, ପଶୁପଲ ଏବଂ କର୍ମଶାଳାର ମାଲିକ ବନି ଗଲେ ।

କ୍ରୀତଦାସମାନେ ସେମାନଙ୍କ ଜମିକୁ ଚାଷ କରି ଦେଲେ, ପଶୁପଲକୁ ଚରେଇଲେ ଏବଂ କର୍ମଶାଳାରେ କାମ କଲେ ।

ଏକଦା, ଏକା ଗୋଷ୍ଠୀ ମଧ୍ୟରେ ବାସ କରୁଥିବା ଲୋକେ ପରସ୍ପର ମଧ୍ୟରେ ଲଢ଼େଇ କରୁ ନଥିଲେ । ସେମାନେ ଶାନ୍ତିରେ ବାସ କରୁଥିଲେ । ରୁଷ୍ ଭାଷାରେ 'ମିର୍' ଶବ୍ଦଟି ଉଭୟ 'ଶାନ୍ତି' ଏବଂ 'ଗୋଷ୍ଠୀ' ପାଇଁ ବ୍ୟବହୃତ ହୋଇଥାଏ ।

କିନ୍ତୁ ଦାସ ପ୍ରଥା ଦେଖାଦେବା ସଙ୍ଗେ ସଙ୍ଗେ ପ୍ରତ୍ୟେକ ଗ୍ରାମ ଏବଂ ସହରରେ ଲଢ଼େଇ ଦେଖା ଦେଲା ।

ଦାସମାଲିକମାନେ ଦାସମାନଙ୍କୁ ତୁଚ୍ଛ କରି ଦେଖିଲେ ଏବଂ ଦାସମାନେ ମଧ୍ୟ ସେମାନଙ୍କୁ ଘୃଣା କଲେ ।

ଦାସମାନେ ଖସି ପଳେଇ ଯିବାକୁ ସ୍ୱପ୍ନ ଦେଖିଲା ବେଳେ ଦାସମାଲିକମାନେ ସେମାନଙ୍କ ସଂପତ୍ତି, ଜୀବନ୍ତ କଥାକୁହା ଯନ୍ତ୍ରକୁ ନ ଛାଡ଼ିବାକୁ ଦୃଢ଼ସଂକଳ୍ପ ଥିଲେ । ଦାସମାଲିକାନାଯୁକ୍ତ ରାଷ୍ଟ୍ର ସଶସ୍ତ୍ର ସେନାବାହିନୀ ସାହାଯ୍ୟରେ ସ୍ୱାଧୀନ ନାଗରିକମାନଙ୍କର ସଂପତ୍ତିକୁ ରକ୍ଷା କଲା । ଦାସମାନେ ସେମାନଙ୍କ ମାଲିକମାନଙ୍କ ବିରୁଦ୍ଧରେ ମେଳି ବାନ୍ଧିଲେ, ସେମାନଙ୍କୁ ଛାଟ ମାରି ବଶମନା ଯାଉଥିଲା ଏବଂ ନିର୍ଘାତ ଦଣ୍ଡ ଦିଆଯାଉଥିଲା ।

ଏହି ଭାବେ ପ୍ରାଚୀନ ଗୋଷ୍ଠୀ ବ୍ୟବସ୍ଥା ଜାଗାରେ ନୂଆ ଏକ ବ୍ୟବସ୍ଥା, ଦାସମାଲିକାନା ବ୍ୟବସ୍ଥା ଦେଖା ଦେଲା ।

# ଦ୍ୱାଦଶ ଅଧ୍ୟାୟ

## ବିଜ୍ଞାନର ସୂତ୍ରପାତ ।

ଏଭଳି ଏକ ସମୟ ଥିଲା ମଣିଷ ଯେତେବେଳେ ସମସ୍ତ ଦୁନିଆକୁ ଏକ ରହସ୍ୟ ବୋଲି ମନେ କରୁଥିଲା । ଦୁନିଆକୁ ସେ ବୁଝି ପାରୁ ନଥିଲା, ସବୁ କିଛି ତାକୁ ଅଜଣା ଅଜ୍ଞାତ ମନେ ହେଉଥିଲା ।

ତା'ର ପ୍ରତିଟି ପଦକ୍ଷେପ, ତା ହାତର ପ୍ରତ୍ୟେକଟି କାର୍ଯ୍ୟ ବହୁ ଅଦୃଶ୍ୟ ଶକ୍ତିକୁ କାର୍ଯ୍ୟରେ ଲଗାଉଥିଲା । ସେସବୁ ତା ପକ୍ଷରେ କେତେବେଳେ ବିପଦର କାରଣ ହେଉଥିଲେ ତ ଆଉ କେତେବେଳେ ଶୁଭଙ୍କର ହେଉଥିଲେ ।

ମଣିଷର ଅଭିଜ୍ଞତା ସେତେବେଳେ ଏତେ କମ୍ ଥିଲା ଏବଂ ନିଜକୁ ଏତେ ଅସହାୟ ମନେ କରୁଥିଲା ଯେ, ରାତିର ଅନ୍ଧାର ପରେ ଆଉ ଥରେ ଦିନ ଆସିବ କି ନାହିଁ ବା ଶୀତ ପରେ ବସନ୍ତ ଆସିବ କି ନାହିଁ, ସେ ନିଶ୍ଚିତ ରୂପେ ଜାଣି ପାରୁ ନଥିଲା ।

ତେଣୁ ଆକାଶରେ ଆଉ ଥରେ ସୂର୍ଯ୍ୟ ଉଦୟ ହେବା ପାଇଁ ଲୋକେ ମନ୍ତ୍ରପାଠ ଏବଂ ପୂଜା କରୁଥିଲେ । ମିଶରର ଲୋକେ ମନେ କରୁଥିଲେ, ସେ ଦେଶର ରାଜା ଫାରାଓ ହେଉଛନ୍ତି ସୂର୍ଯ୍ୟର ପ୍ରତିମୂର୍ତ୍ତି । ସୂର୍ଯ୍ୟ ପ୍ରତିଦିନ ତା'ର ଆବର୍ତ୍ତନ ସଂପୂର୍ଣ୍ଣ କରିବା ପାଇଁ ସେ ମନ୍ଦିର ଘରି ପାଖରେ ଥରେ ଲେଖାଏଁ ପ୍ରତିଦିନ ପରିକ୍ରମା କରୁଥିଲେ ।

ହେମନ୍ତ କାଳରେ ମିଶରର ଲୋକେ "ସୂର୍ଯ୍ୟଙ୍କ ସହଚର" ଉତ୍ସବ ପାଳନ କରୁଥିଲେ । ସେମାନେ ଭାବୁଥିଲେ ଶୀତ କାଳରେ ଦୁର୍ବଳ ସୂର୍ଯ୍ୟକୁ ତା ଯାତ୍ରା ପଥରେ ସାହାଯ୍ୟ କରିବା ପାଇଁ ଦଳେ ସହଚର ଦରକାର ।

କିନ୍ତୁ ମଣିଷ ଯେତେ ଶ୍ରମ କଲା, ସେତେ ବେଶି ସେ ପ୍ରକୃତି ଏବଂ ପଦାର୍ଥରାଜିର ବିଭିନ୍ନ ଗୁଣ ଆଉ ଧର୍ମକୁ ବୁଝି ପାରିଲା ।

ଯେଉଁ ଆଦିମ କାରିଗର ଜଣକ ପ୍ରଥମେ ଏକ ଅରଣି ପଥରକୁ ଶାଉଁଳିଆ କରି ଶାଣ ଦେଉଥିଲା ସିଏ ହିଁ ପ୍ରଥମ କରି ଜାଣିଥିଲା ତା'ର ଗୁଣାଗୁଣ ସମ୍ବନ୍ଧରେ । ସେ ଜାଣି ନେଇଥିଲା, ପଥର ହେଉଛି କଠିନ ଏବଂ ତାକୁ ଆଉ ଖଣ୍ଡେ ପଥରରେ ପିଟିଲେ ତାହା ଭାଙ୍ଗି ଯାଏ, ଆଉ ଭାଙ୍ଗିବା ବେଳେ ପଥର ଚିତ୍କାର କରି

କହାକହି କରେ ନାହିଁ । କିନ୍ତୁ ପୃଥିବୀରେ ତ ଅନେକ ରକମର ପଥର ଅଛି । ଏ ପଥର ସିନା ଭାଙ୍ଗିଲ ବେଳେ କାନ୍ଦିଲ ନାହିଁ, ଅନ୍ୟ ପଥର କ'ଣ ଏହି ଭଳି ଚୁପ୍ ରହିବ ? ଏଭଳି ଚିନ୍ତା କଲେ ଆମକୁ ହସ ଲଗେ, କିନ୍ତୁ ଆଦିମ ମଣିଷ କେବେ ହେଲେ ସେସବୁକୁ ହାସ୍ୟକର ମନେ କରୁ ନଥିଲ ।

ସେତେବେଳେ ସେ ପ୍ରକୃତିର ବିଭିନ୍ନ ଗ୍ଭଲି ଚଳନର କୌଣସି ସୂତ୍ର ବା ନିୟମ କିପରି ଆବିଷ୍କାର କରିବାକୁ ହୁଏ ଜାଣି ନଥିଲ । ତେଣୁ କରି ଜୀବନଟା ତାକୁ ଲଗୁଥିଲ ଅନିୟମରେ ଭରପୁର । ସେ ଦେଖୁଥିଲ ଦୁଇଟା ପଥର କେବେ ଏକା ଭଳି ନୁହଁ । ସେଥିରୁ ତା'ର ଧାରଣା ହେଉଥିଲ ବିଭିନ୍ନ ପଥରର ଗୁଣ ମଧ୍ୟ ଭିନ୍ନ ଭିନ୍ନ । ତେଣୁ ସେ ଅରଣି ପଥରରେ ଯେତେବେଳେ କୋଦାଳ ତିଆରି କରୁଥିଲ, ସେ ଚେଷ୍ଟା କରୁଥିଲ ଠିକ୍ ତା'ର ପୁରୁଣା କୋଦାଳ ଭଳି କରିବାକୁ । ତଦ୍ୱାରା ସେ ପୂର୍ବର କୋଦାଳ ଭଳି ମାଟିକୁ ଖୋଳି ପାରିବ ।

ଏହି ଭାବେ ବିତିଗଲ ହଜାର ହଜାର ବର୍ଷ । ନାନା ରକମର ପଥରରେ କାମ କରି ମଣିଷ ପଥରମାନଙ୍କ ସଂପର୍କରେ ଏକ ସାଧାରଣ ଜ୍ଞାନ ଲଭ କଲ । ଯେହେତୁ ସବୁ ପଥର କଠିନ, ତେଣୁ ସେ ନିଶ୍ଚିତ ହୋଇ କହିଲ ପଥର ହେଉଛି କଠିନ । କୌଣସି ପଥର କଥା କୁହେ ନାହିଁ, ତେଣୁ ସେ କହିଲ ପଥର କଥା କହି ପାରେ ନାହିଁ ।

ଏହି ଭାବରେ ବିଜ୍ଞାନର ପ୍ରଥମ ଦାନା, ପଦାର୍ଥଗୁଡ଼ିକ ସଂପର୍କରେ ଅବଧାରଣା ମଣିଷ ମନରେ ସୃଷ୍ଟି ହେଲ ।

କାରିଗର ଯେତେବେଳେ କହୁଥିଲ ଅରଣି ପଥର ହେଉଛି କଠିନ, ତା ଅର୍ଥ ନୁହଁ ଯେ, ସେ ଯେଉଁ ଅରଣି ପଥରଟିକୁ ନେଇ କାମ କରୁଛି ସେଇଟି କେବଳ କଠିନ । ସେ ପ୍ରତିଟି ଅରଣି ପଥର ଖଣ୍ଡ ସଂପର୍କରେ କହୁଥିଲ ।

ତେଣୁ ସେ ପ୍ରକୃତିରେ କେତେକ ନିୟମ, ଜଗତରେ ପ୍ରତିଷ୍ଠିତ କେତେକ ବିଧି କଥା କହୁଥିଲ ।

"ଶୀତ ପରେ ବସନ୍ତ ଆସେ", ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଶୀତ ପରେ ବସନ୍ତ ନଆସି ହେମନ୍ତ ବା ଅନ୍ୟ କୌଣସି ଋତୁ ଆସି ପାରେ ନାହିଁ । କିନ୍ତୁ ଆମର ପୂର୍ବପୁରୁଷମାନଙ୍କ ପକ୍ଷରେ ଏହି ଋତୁ ପରିବର୍ତ୍ତନ ସଂପର୍କରେ ଜ୍ଞାନଟା ଥିଲ ହଜାର ହଜାର ବର୍ଷର ଅଭିଜ୍ଞତା ଫଳରେ ମିଳିଥିବା ଏକ ବିରାଟ ବୈଜ୍ଞାନିକ ଆବିଷ୍କାର । ଲେକେ ବର୍ଷ ଗଣନା କରିବାକୁ ଶିଖିଥିଲେ ସେତିକିବେଳେ, ଯେତେବେଳେ ସେମାନେ ଅନୁଭବ କଲେ ଯେ, ଶୀତ ଏବଂ ଗ୍ରୀଷ୍ମ ଏମିତି ଆକସ୍ମିକ ଭାବେ ଆସି ଯାଏ ନାହିଁ । ଋତୁସବୁ ଆସିଥାଏ ଏକ ନିୟମ

ଅନୁଯାୟୀ, ଅର୍ଥାତ୍ ଶୀତ ପରେ ବସନ୍ତ, ବସନ୍ତ ପରେ ଗ୍ରୀଷ୍ମ ଏବଂ ତା'ପରେ ବର୍ଷା ।

ମିଶରର ଲୋକେ ନୀଳ ନଦୀର ବନ୍ୟା ଜଳକୁ ପର୍ଯ୍ୟବେକ୍ଷଣ କରି ଏହି ଆବିଷ୍କାର କରିଥିଲେ । ଗୋଟିଏ ବନ୍ୟାରୁ ଆଉ ଗୋଟିଏ ବନ୍ୟା ପର୍ଯ୍ୟନ୍ତ ସମୟକୁ ସେମାନେ ବର୍ଷେ ବୋଲି ଗଣନା କରୁଥିଲେ ।

ନଦୀକୁ ସେମାନେ ଦେବତା ବୋଲି ମନେ କରୁଥିବାରୁ କେବଳ ମୁଖ୍ୟ ପୁରୋହିତମାନେ ହିଁ ନଦୀର ଗତିବିଧିକୁ ଲକ୍ଷ୍ୟ କରୁଥିଲେ । ଏବେବି ନୀଳ ନଦୀ ତୀରରେ ଦବି ଯାଇଥିବା ବହୁ ମନ୍ଦିର ଦେହରେ ନଦୀ ଜଳର ଉଚ୍ଚତା ମାପିବାର ସବୁ ଦାଗମାନ ଦେଖିବାକୁ ମିଳେ ।

ଜୁଲାଇ ମାସର ଦାରୁଣ ଗ୍ରୀଷ୍ମ ତାପରେ ଜମିସବୁ ଯେତେବେଳେ ଫାଟିକି ଆଁ କରେ, ଚାଷୀମାନେ ଅଧୀର ଆଗ୍ରହରେ ଅପେକ୍ଷା କରି ରହନ୍ତି ନୀଳ ନଦୀର ହଳଦିଆ ପଟୁପାଣି କେବେ ଜଳସେଚନ ପ୍ରଣାଳୀ ମଧ୍ୟକୁ ପ୍ରବେଶ କରିବ । ଏଥର କ'ଣ ବନ୍ୟା ହେବ. ନାହିଁ ନା କ'ଣ ? ଦେବତାମାନେ ଯଦି ଲୋକଙ୍କ ଉପରେ ରାଗି ଯାଆନ୍ତି ଏବଂ ସେମାନଙ୍କ କ୍ଷେତକୁ ଯଦି ପାଣି ନ ଦିଅନ୍ତି, ତେବେ କ'ଣ ହେବ !

ନଦୀକୁ ସନ୍ତୁଷ୍ଟ କରିବା ପାଇଁ ଚାରି ଆଡ଼ୁ ଉପଢୌକନ ଏବଂ ବଳି ଧରି ଲୋକେ ମନ୍ଦିରକୁ ଛୁଟୁଥିଲେ । ଗରିବ ଚାଷୀମାନେ ସେମାନଙ୍କର ଶେଷ ଶସ୍ୟତକ ଧରି ପୁରୋହିତ ପାଖକୁ ଦୌଡ଼ନ୍ତି ଏବଂ ଦେବତାମାନଙ୍କୁ ଭକ୍ତି ପ୍ରାର୍ଥନା କରିବାକୁ ଅନୁରୋଧ କରନ୍ତି ।

ପ୍ରତିଦିନ ବଡ଼ିଭୋରୁ ପୁରୋହିତମାନେ ନଦୀ ତୀରକୁ ଯାଇ ଲକ୍ଷ୍ୟ କରନ୍ତି ନଦୀର ଜଳ ଉପରକୁ ଉଠୁଛି କି ନାହିଁ ।

ପ୍ରତିଦିନ ସଂଧ୍ୟାରେ ସେମାନେ ମନ୍ଦିର ଛାତ ଉପରକୁ ଉଠି ତାରାମାନଙ୍କୁ ଦେଖନ୍ତି । ନକ୍ଷତ୍ରଖଚିତ ଆକାଶ ଥିଲା ସେମାନଙ୍କର ଦିନ ପଞ୍ଜିକା ।

ତା'ପରେ ଦିନେ ପୁରୋହିତମାନେ ଗାମ୍ଭୀର୍ଯ୍ୟ ସହକାରେ ଘୋଷଣା କରନ୍ତି : "ଦେବତାମାନେ ତମମାନଙ୍କ ଉପରେ ସନ୍ତୁଷ୍ଟ ହୋଇଛନ୍ତି, ଆଜିଠୁଁ ତିନି ଦିନ ମଧ୍ୟରେ ତମର ବିଲବାଡ଼ିକୁ ଜଳ ଆସିଯିବ ।"

ଖୁବ୍ ଧୀରେ ଧୀରେ ଲୋକେ ସେମାନଙ୍କ ଚାରିପାଖର ଅଦ୍ଭୁତ ଜଗତକୁ ଆୟତ୍ତ କଲେ । ସେ ଜଗତ ହେଉଛି ଜ୍ଞାନର ଜଗତ, ପରୀକାହାଣୀ ବା ଭୋଜବାଜିର ଜଗତ ନୁହେଁ । ମନ୍ଦିରର ଛାତଗୁଡ଼ିକ ଥିଲା ପ୍ରଥମ ମାନମନ୍ଦିର, ଗ୍ରହନକ୍ଷତ୍ର ପର୍ଯ୍ୟବେକ୍ଷଣ କରିବାର କ୍ଷେତ୍ର । କୁମ୍ଭାର ଏବଂ କମାରମାନଙ୍କର ଶାଳା

ଥିଲ ପ୍ରଥମ ଗବେଷଣାଗାର । ସେସବୁ ଜାଗାରେ ପ୍ରଥମ ପରୀକ୍ଷାଗୁଡ଼ିକ କରାଯାଇଥିଲ ।

ଲୋକେ ପର୍ଯ୍ୟବେକ୍ଷଣ ଏବଂ ଗଣନା ଶିଖିଲେ ଏବଂ ଯାହାସବୁ ଦେଖୁଥିଲେ ସେଥିରୁ ସିଦ୍ଧାନ୍ତ ଟାଣିଲେ ।

ଆଧୁନିକ ବିଜ୍ଞାନ ସହିତ ସେକାଳର ବିଜ୍ଞାନର କିଛି ସାମଞ୍ଜସ୍ୟ ନଥିଲ କହିଲେ ଚଳେ । ବିଜ୍ଞାନ ଥିଲ ଅନେକ ପରିମାଣରେ ଉନ୍ମୁକ୍ତ ଆକାଶ ଭଳି । ଆକାଶ ଏବଂ ପୃଥିବୀକୁ ଅନୁଧ୍ୟାନ କରିବା ସଙ୍ଗେ ସଙ୍ଗେ ସେମାନେ ଆକାଶ ଏବଂ ପୃଥିବୀର ଦେବତାମାନଙ୍କୁ ପୂଜା କରୁଥିଲେ । ଘନ ଅନ୍ଧତାର କୁହୁଡ଼ି ଦୂର ହେବାକୁ ଆରମ୍ଭ କରିଥିଲ ।

## ଦେବତାମାନେ ସ୍ୱର୍ଗକୁ ଗ୍ଲଲିଗଲେ ।

ପରୀକାହାଣୀର କୁହୁଡ଼ି ମଧ୍ୟରୁ ବିଭିନ୍ନ ବସ୍ତୁର ପ୍ରକୃତ ରୂପ କ୍ରମଶଃ ମଣିଷ ଆଗରେ ପ୍ରକାଶ ପାଇବାକୁ ଲଗିଲ ।

ଏଭଳି ସମୟ ଥିଲ, ଯେତେବେଳେ ପ୍ରାଗୈତିହାସିକ ମଣିଷ ଭାବୁଥିଲ ସବୁଠି— ପଥର, ଗଛ, ଜୀବଜନ୍ତୁଙ୍କ ମଧ୍ୟରେ ଭୂତ ପ୍ରେତମାନେ ରହିଛନ୍ତି ।

କିନ୍ତୁ କ୍ରମଶଃ ସେସବୁ ଅନ୍ଧବିଶ୍ୱାସ ଦୂର ହୋଇଗଲ ।

ପ୍ରତିଟି ଜନ୍ତୁ ମଧ୍ୟରେ ଏକ ଭୂତ ରହିଛି, ସେ କଥା ମଣିଷ ଆଉ ଭାବିଲ ନାହିଁ । ପୂର୍ବେ ତା ମନରେ ଯେଉଁସବୁ ଜୀବଜନ୍ତୁ ଭୂତ ପ୍ରେତ ଥିଲେ, ସେମାନଙ୍କ ସ୍ଥାନରେ ଦେଖା ଦେଲା ଏକ ବଣ ଦେବତା । ସେ ଦେବତା ଜଙ୍ଗଲର ଅତି ଗଭୀର ପ୍ରଦେଶରେ ବାସ କରେ ବୋଲି ସେ ବିଶ୍ୱାସ କଲ ।

ଗ୍ଲଷୀମାନେ ଆଉ ବିଶ୍ୱାସ କଲେ ନାହିଁ ଯେ, ପ୍ରତିଟି ଶସ୍ୟ କେଣ୍ଡା ଭିତରେ ଦେବତାମାନେ ରହିଛନ୍ତି । ତା ମନରେ ସମସ୍ତ ଶସ୍ୟ ଦେବତା ମିଶି ଜଣେ କୃଷୀ ଦେବୀରେ ପରିଣତ ହେଲେ । ସେ ଦେବୀ ହେଲେ ଫଳନ ଦେବୀ ବା ଲକ୍ଷ୍ମୀ । ସିଏହିଁ ସବୁ କିଛିର ବୃଦ୍ଧି ପାଇଁ ଦାୟୀ ।

ଆଗର ଭୂତ ପ୍ରେତଙ୍କ ସ୍ଥାନକୁ ନୂଆ ଦେବଦେବୀମାନେ ଦଖଲ କରି ନେଲେ । ସେମାନେ ଆଉ ସାଧାରଣ ମଣିଷଙ୍କ ସହିତ ବସବାସ କରି ପାରିଲେ ନାହିଁ । ସ୍ଥାନର ଅଲୋକ ମଣିଷର ଆବାସଠାରୁ ସେମାନଙ୍କୁ ଦୂରେଇ ଦେଲ । ସେମାନେ ଏପରିସବୁ ଜାଗାରେ ଯାଇଁ ରହିଲେ, ଯେଉଁଠିକି ମଣିଷ କେବେ ଯାଉ ନଥିଲ । ସେସବୁ ଜାଗା ହେଉଛି ଅନ୍ଧକାରମୟ ଗଭୀର ଅରଣ୍ୟ ବା ଗଛବୃଛ ତଳା ପର୍ବତର ଶୀର୍ଷ ଦେଶ ।

କିନ୍ତୁ ସମୟ ଆସିଲା, ମଣିଷ ସେଠି ବି ଯାଇ ପହଞ୍ଚିଗଲା । ଜ୍ଞାନର ଆଲୋକରେ ଗହନ ଅରଣ୍ୟ ମଧ୍ୟ ଉଦ୍‌ଭାସିତ ହୋଇ ଉଠିଲା ଏବଂ ପର୍ବତର ଉପତ୍ୟକାମାନଙ୍କରେ ଯେଉଁ ଗଭୀର କୁହୁଡ଼ି ଜମିଥିଲା, ସିଏବି ମିଳେଇଗଲା ।

ତେଣୁ ଦେବଦେବୀମାନେ ସେସବୁ ଆସ୍ଥାନ ଛାଡ଼ି ପୁଣି ନୂଆ ଜାଗାକୁ ପଳାଇ ଗଲେ । ସେମାନେ ଏବେ ଆକାଶ ଉପରେ ସ୍ୱର୍ଗରେ କିମ୍ବା ସମୁଦ୍ରର ତଳ ଦେଶରେ ବା ପାତାଳ ପୁରରେ ରହୁଛନ୍ତି ।

ଏଣିକି ଦେବତାମାନେ ପୃଥିବୀକୁ ଖୁବ୍ କମ୍ ଆସୁଛନ୍ତି । ବଂଶ ପରାକ୍ରମେ କେତେ ଲୋକକଥା, କେତେ ଉପାଖ୍ୟାନ ସବୁ ଚଳି ଆସିଛି – ଦେବତାମାନେ ସ୍ୱର୍ଗରୁ ମର୍ତ୍ତ୍ୟକୁ ଆସିଥାନ୍ତି ଯୁଦ୍ଧରେ ଅଂଶଗ୍ରହଣ କରିବା ପାଇଁ ବା କୌଣସି ଦୁର୍ଗକୁ ଘେରଉ କରିବା ପାଇଁ ।

ହାତରେ ତରବାରି ଏବଂ ବର୍ଚ୍ଛା ଧରି ଦେବତାମାନେ ମର୍ତ୍ତ୍ୟବାସୀ ମଣିଷମାନଙ୍କର କଳି କଜିଆରେ ହସ୍ତକ୍ଷେପ କରନ୍ତି । କୌଣସି ଏକ ନିଷ୍ପତ୍ତିମୂଳକ ମୁହୂର୍ତ୍ତରେ ସେମାନେ କୃଷ୍ଣ ମେଘର ଆଢ଼ୁଆଳରେ ନେତାକୁ ଲୁଚାଇ ରଖନ୍ତି ଏବଂ ଉପରୁ ବଜ୍ର ନିକ୍ଷେପ କରି ଶତ୍ରୁକୁ ନିଧନ କରନ୍ତି । କିନ୍ତୁ କାହାଣୀ ଲେଖକମାନେ କହନ୍ତି ଏହା ଅନେକ, ଅନେକ କାଳ ପୂର୍ବେ ଘଟିଥିଲା ।

ଏହି ଭାବେ ମଣିଷର ଅଭିଜ୍ଞତା କ୍ରମଶଃ ଗଭୀର ହେଉଛି ଏବଂ ତା'ର ଜ୍ଞାନର ପରିଧି ବିସ୍ତୃତ ହେବା ସଙ୍ଗେ ସଙ୍ଗେ ଦେବତାମାନେ ମଣିଷକୁ ସ୍ଥାନ ଛାଡ଼ି ଦେଇ ଆହୁରି ଦୂରକୁ, ବର୍ତ୍ତମାନଠାରୁ ଭବିଷ୍ୟତକୁ ଏବଂ ଜଗତକୁ ଛାଡ଼ି ଜଗତ ବାହାରକୁ ଚାଲି ଯାଉଛନ୍ତି ।

ଏବେ ଦେବଦେବୀମାନଙ୍କର ପୂଜା ପାଠ ଆଉ ଚଳୁନି । ପୂର୍ବେ ପ୍ରତ୍ୟେକ ଲୋକ "ଅଘଟଣ ଘଟାଇ ପାରୁଥିଲା" ଏବଂ ମନ୍ତ୍ରପାଠ କରୁଥିଲା । ସେତେବେଳେ ସେସବୁ ଥିଲା ସହଜ । ଦୃଷ୍ଟାନ୍ତ ସ୍ୱରୂପ, ବର୍ଷା କରାଇବାକୁ ହେଲେ ମୁହଁରେ ପାଣି ନେଇ ଏକ ବିଶେଷ ନୃତ୍ୟ ସହିତ କୁଳୁକୁଳୁ କରି ଉପରକୁ ଫୋପାଡ଼ି ଦେଲେ ହେଲା । ମେଘକୁ ଦୂରେଇ ଦେବା ପାଇଁ ଛାତ ଉପରକୁ ଉଠି ଯାଇ ପବନ ଭଳି ହାତକୁ କରିବାକୁ ହୁଏ ।

ଏକଥା ସମସ୍ତଙ୍କୁ ଜଣା ଯେ, ଏହି ଭଳି କରି କେହି ବର୍ଷା କରାଇ ପାରିବ ନାହିଁ କି ମେଘକୁ ଦୂରେଇ ଦେଇ ପାରିବ ନାହିଁ । ତେଣୁ ମଣିଷ ଭାବିଲା ଏପରି ସହଜ ଉପାୟରେ ଦେବତାମାନେ ତା ପ୍ରାର୍ଥନା ଶୁଣୁ ନାହାନ୍ତି । ଏହି ସମୟରେ ଦେବତା ଆଉ ମଣିଷ ମଧ୍ୟରେ ପୁରୋହିତମାନେ ମଧ୍ୟସ୍ଥ ହିସାବରେ ଦେଖା ଦେଲେ ।

ସେମାନେ ସବୁ ପ୍ରକାରର ରୋଗବିଦ୍ୟା, ପୂଜା ପାଠ ଏବଂ ଦେବତାମାନଙ୍କ ଗୋପନ କଥା ଜାଣିଥାନ୍ତି ବୋଲି ବାହାନା କଲେ ।

ଆଗେ ଗୁଣିଆ ଶିକାର ନାଚର ଏକମାତ୍ର ପରିଚାଳକ ଥିଲା । ସେ କିନ୍ତୁ ତା କୁଳର ଅନ୍ୟମାନଙ୍କ ଅପେକ୍ଷା ଭୂତପ୍ରେତଙ୍କର ଅଧିକ ନିକଟରେ ନଥିଲା ।

ଏବେ କିନ୍ତୁ ଏ ପୁରୋହିତମାନେ ସଂପୂର୍ଣ୍ଣ ଅଲଗା ମର୍ଯ୍ୟାଦା ଲାଭ କଲେ । ସେ ପବିତ୍ର ଉଦ୍ୟାନରେ, ଦେବତାମାନଙ୍କର ନିକଟରେ ବାସ କଲେ । ସେ ମନ୍ଦିରର ଛାତ ଉପରକୁ ଚଢ଼ି ତାରାମାନଙ୍କ ଦେହରେ ଦେବତାମାନଙ୍କ ଇଚ୍ଛାକୁ ପଢ଼ିଲେ । ସିଏହିଁ କେବଳ ସେସବୁକୁ ପଢ଼ି ପାରୁଥିଲେ । ଯୁଦ୍ଧ ହେବା ପୂର୍ବରୁ ସେ ଭବିଷ୍ୟତ୍‌ବାଣୀ କରି କହିଲେ, ଜୟ ହେବ କି ପରାଜୟ ହେବ । ଶେଷରେ ପୁରୋହିତମାନେ ଜନସାଧାରଣ ଏବଂ ଦେବତାମାନଙ୍କ ମଧ୍ୟରେ ମଧ୍ୟସ୍ଥରେ ପରିଣତ ହେଲେ ।

କିନ୍ତୁ ଦେବତାମାନେ କ୍ରମଶଃ ମଣିଷ ପାଖରୁ ଦୂରକୁ ଘୁଞ୍ଚି ଘୁଞ୍ଚି ଗଲେ । ଦେବତାମାନଙ୍କ ଆଖିରେ ସବୁ ଲୋକ ସମାନ – ଏହା ଅତୀତର କଥାରେ ପରିଣତ ହେଲା । ଏବେ ଲୋକେ ନିଜ ଜୀବନରୁ ଅନୁଭବ କଲେ, ସେମାନଙ୍କ ପରିବେଶକୁ ଦେଖିଲେ ଯେ, ଆଗକାର ସେ ସମାନତା ଆଉ ନାହିଁ । ପୁରୋହିତମାନେ କିନ୍ତୁ ବୁଝାଇଲେ, "ଯାହା ଅଛି, ତାହାହିଁ ହେବା ଉଚିତ । ମଣିଷ ସବୁ କିଛି ଦେବତାମାନଙ୍କ ହାତରେ ଛାଡ଼ି ଦେବା ଦରକାର । ରାଜା ଏବଂ କୁଳପତିମାନେ ରାଜତ୍ୱ କଲା ପରି ଜଗତକୁ ଶାସନ କରନ୍ତି ଦେବତାମାନେ ।" କିନ୍ତୁ ପୁରୋହିତମାନଙ୍କର ଏହିସବୁ ଉପଦେଶକୁ ସମସ୍ତେ ନତମସ୍ତକରେ ମାନି ନେଉ ନଥିଲେ । ସେତେବେଳେ ବି କେତେକ ଲୋକ ଥିଲେ, ଯେଉଁମାନେ ଦେବତାମାନଙ୍କ ଇଚ୍ଛା ନିକଟରେ ନତିସ୍ୱୀକାର କରୁ ନଥିଲେ ।

ଉପଯୁକ୍ତ ସମୟରେ ଗ୍ରୀସ୍‌ର କବି ପ୍ରଶ୍ନ କରିଥିଲେ : ସତ୍ ଲୋକମାନେ ଯେଉଁଠି ଦୁଃଖ ପାଆନ୍ତି ଏବଂ ପାପୀମାନେ ଆନନ୍ଦିତ ହୁଅନ୍ତି ଏବଂ ପିତାମାନଙ୍କର ପାପ ପାଇଁ ସନ୍ତାନମାନେ ଶାସ୍ତି ପାଆନ୍ତି ସେତେବେଳେ ସେଠି ଜିୟୁସ୍ ବା ଦେବରାଜଙ୍କର ନ୍ୟାୟ କାହିଁ । ସେ କହିଥିଲେ ଆଶା ଦେବୀଙ୍କ ପାଖରେ ପ୍ରାର୍ଥନା କରିବା ଛଡ଼ା ଅନ୍ୟ ଉପାୟ ନାହିଁ, ସିଏହିଁ ହେଉଛନ୍ତି ଏକମାତ୍ର ଦେବୀ, ଯିଏକି ଲୋକଙ୍କ ମଧ୍ୟରେ ଏବେବି ରହିଛନ୍ତି । ଆଉ ସବୁ ଦେବଦେବୀ ଚାଲିଗଲେଣି ଅଲିମ୍ପସ୍ ପାହାଡ଼କୁ ।

ଦିଗନ୍ତ ପ୍ରସାରିତ ହେଉଛି ।

ପ୍ରାଗୈତିହାସିକ ମଣିଷ ସତ୍ୟ ଏବଂ କଳ୍ପନା ମଧ୍ୟରେ, ଜ୍ଞାନ ଏବଂ କୁସଂସ୍କାର ମଧ୍ୟରେ କୌଣସି ପାର୍ଥକ୍ୟ ଦେଖୁ ନଥିଲା ।

ଦୁଧରୁ ଲହୁଣି ଅଲଗା ହେଲା ଭଳି କୁସଂସ୍କାରଠାରୁ ଜ୍ଞାନକୁ ପୃଥକ୍ ହେବା ପାଇଁ ଲାଗିଥିଲା ହଜାର ହଜାର ବର୍ଷ ।

ଯେଉଁସବୁ ପୁରାଣ ଆଉ ଗାଥା ଆମମାନଙ୍କ ହାତରେ ଆସି ପଡ଼ିଛି ତାକୁ ଭିତ୍ତି କରି କୁଳ ବା କୁଳପତିର ଇତିହାସକୁ ଉପକଥାରୁ, ଅପ୍ରାକୃତ ଦେବତା ଏବଂ ପ୍ରକୃତ ବୀରମାନଙ୍କ ମଧ୍ୟରୁ ବାଛିବା କଠିନ । ସେଇ ପରି ଉପକଥାର ଭୂଗୋଳରୁ ଆଦିମ ଯୁଗର ପ୍ରକୃତ ଗ୍ରହନକ୍ଷତ୍ର ସମ୍ବନ୍ଧରେ ଧାରଣା କରିବା କଷ୍ଟକର ।

ଗ୍ରୀକ୍‌ମାନେ ମାନବ ସମାଜକୁ ଦାନ କରିଛନ୍ତି ଦୁଇଟି ମହାକାବ୍ୟ – "ଇଲିୟାଡ୍" ଏବଂ "ଓଡେସି" । ଏହି ଦୁଇଟି ଗ୍ରନ୍ଥରୁ ଆମେ ସେମାନଙ୍କର ପ୍ରାଚୀନ ଗୀତ ଏବଂ ଲୋକ ଗାଥାର ନମୁନା ପାଇ ଥାଉଁ । ସେଇସବୁ ଉପାଖ୍ୟାନ ମଧ୍ୟରେ ଅଛି ଗ୍ରୀକ୍ ସେନାବାହିନୀ କିପରି ଟ୍ରୟ ନଗରୀ ଅବରୋଧ କରି ଧ୍ୱଂସ କଲେ, ଏବଂ ଗ୍ରୀକ୍ କୁଳର ଜଣେ କୁଳପତି ଓଡିସିଅସ୍ (ଉଲିସିସ୍) ବହୁ ଦିନ ଧରି ନାନା ସମୁଦ୍ର ବକ୍ଷରେ ଭାସିଭାସି ଶେଷରେ ନିଜ ଦେଶ ଇଥାକାକୁ ଫେରି ଆସିଲେ । ଟ୍ରୟ ନଗରୀର ଯୁଦ୍ଧରେ ଦେବତାମାନେ ବି ମଣିଷ ସହିତ କାନ୍ଧ ମିଳେଇ ଲଢ଼େଇ କରିଥିଲେ । ଦଳେ ଦେବତା ଟ୍ରୟବାସୀଙ୍କ ପକ୍ଷରେ ଲଢ଼ିଥିଲେ ଏବଂ ଆଉ ଦଳେ ଗ୍ରୀକ୍‌ମାନଙ୍କୁ ସାହାଯ୍ୟ କରିଥିଲେ । କୌଣସି ଦେବତାର ଆଶ୍ରିତ କୌଣସି ବୀର ମୃତ୍ୟୁ ମୁଖରେ ପଡ଼ିବାର ଦେଖା ଗଲେ ସେମାନେ ତାକୁ ରଣଭୂଇଁରୁ ଘେନି ଯାଉଥିଲେ । ଅଲିମ୍ପସ୍ ପର୍ବତ ଉପରେ ଆନନ୍ଦ ଉତ୍ସବରେ ମତରହି ସେମାନେ ଆଲୋଚନା କରୁଥିଲେ, ଆଉ ବେଶି ଦିନ ଯୁଦ୍ଧ ଚାଲୁ ରଖିଲେ ଭଲ ହେବ କି ଖରାପ ହେବ, କିମ୍ବା ଯୁଦ୍ଧରତ ପକ୍ଷମାନଙ୍କ ମଧ୍ୟରେ ମିଳାମିଶା କରି ଦିଆଯିବ ।

ଏହିସବୁ ଅତୀତର ଲୋକ କାହାଣୀରେ ସତ୍ୟ ଆଉ ରୂପକଥାର ଅପୂର୍ବ ମିଳନ ଘଟିଛି । କିନ୍ତୁ ଏଥିରେ କେଉଁଠି କଳ୍ପନା ଶେଷ ହୋଇଛି ଏବଂ କେଉଁଠୁ ସତ୍ୟ ଆରମ୍ଭ ହୋଇଛି ? ଗ୍ରୀକ୍‌ମାନେ କ'ଣ ସତରେ ଟ୍ରୟ ନଗରୀ ଅବରୋଧ କରିଥିଲେ ? ଟ୍ରୟ ନାମକ ଏକ ନଗରୀ ସତରେ କ'ଣ କେବେ ଥିଲା ?

ବହୁ ଦିନ ଧରି ପଣ୍ଡିତମାନଙ୍କ ଭିତରେ ଏହି କଥା ନେଇ ତର୍କ ବିତର୍କ ଚାଲିଥିଲା । ଅବଶେଷରେ ଜଣେ ପୁରାଣ ବିଶାରଦ ଏହି ସନ୍ଦେହର ଅବସାନ

ଘଟାଇ ଥିଲେ । "ଇଲିୟାଡ୍"ରେ ଦିଆ ଯାଇଥିବା ନିର୍ଦ୍ଦେଶକୁ ଅନୁସରଣ କରି ପ୍ରତ୍ନତତ୍ତ୍ୱବିତ୍‌ମାନେ ଏସିଆ ମାଇନରକୁ ଯାତ୍ରା କଲେ । ଟ୍ରୟ ନଗରୀ ଯେଉଁଠି ଅବସ୍ଥିତ ଥିଲା ବୋଲି ବର୍ଣ୍ଣିତ ହୋଇଛି, ସେଇଠି ଟ୍ରୟର ଧ୍ୱଂସସ୍ତୂପ ଖୋଳା ଗଲା ।

"ଓଡେସି" ମହାକାବ୍ୟରେ ମଧ୍ୟ ସତ୍ୟ ନିହିତ ଅଛି । ଭୂଗୋଳବିତ୍‌ମାନେ ୟୁଲିସିସ୍‌ଙ୍କ ଯାତ୍ରାପଥକୁ ମାନଚିତ୍ରରେ ଅନୁସରଣ କରି ଶେଷକୁ ପ୍ରମାଣ କରିଛନ୍ତି । ତୁମ ମାନଚିତ୍ରରେ ଦେଖ, ପଦ୍ମଭୁକ୍ ଦେଶଟି ହେଉଛି ଇୟୋଲସ ଦ୍ୱୀପ । ସିଲା ଏବଂ ଚେରିବ୍‌ଡିସ୍ ମଧ୍ୟରେ ଗଲା ବେଳେ ୟୁଲିସିସ୍‌ଙ୍କ ଜାହାଜଟି ଭାଙ୍ଗି ଯିବାର ଉପକ୍ରମ ଦେଖା ଦେଇଥିଲା ।

ପଦ୍ମଭୁକ୍ ଦେଶଟି ହେଉଛି ପ୍ରକୃତରେ ଆଫ୍ରିକାର ତ୍ରିପୋଲି ଉପକୂଳ । ଇୟୋଲସ ଦ୍ୱୀପ ହେଉଛି ଆଧୁନିକ ଲିପସର୍କ ଦ୍ୱୀପ । ସିଲା ଏବଂ ଚେରିବ୍‌ଡିସ୍ ହେଉଛି ସିସିଲି ଏବଂ ଇଟାଲି ମଧ୍ୟବର୍ତ୍ତୀ ପ୍ରଣାଳୀ ।

"ଓଡେସି" ଯେପରି ସବୁଟା ଯାକ ରୂପକଥା ନୁହଁ, ସେମିତି "ଓଡେସି"ରୁ ଯଦି ତୁମେ ପ୍ରାଚୀନ ଦୁନିଆର ଭୂଗୋଳ ଅଧ୍ୟୟନ କରିବାକୁ ଯିବ ତେବେ ବିରାଟ ଭୁଲ କରିବ ।

ଏହି ପ୍ରଥମ ଦୁଃସାହିକ ଅଭିଯାନ ଏବଂ ଭ୍ରମଣ ବୃତ୍ତଟିରେ ଭୂଗୋଳକୁ ସଜେଇ ଦିଆ ଯାଇଛି ରୂପକଥାର ପୋଷାକରେ । ପର୍ବତ ସବୁକୁ ଦୈତ୍ୟ ବୋଲି ଏବଂ ଦ୍ୱୀପରେ ବାସ କରୁଥିବା ଅସଭ୍ୟ ଲୋକଙ୍କୁ ଏକଆଖିଆ ନରଖାଦକ ରାକ୍ଷସ ବୋଲି ବର୍ଣ୍ଣନା କରାଯାଇଛି ।

ସେ ଯୁଗରେ ମଣିଷ କେବଳ ସେମାନଙ୍କ ଜନ୍ମ ସ୍ଥାନର ଆଖପାଖ ଜାଗାର ଖବର ଜାଣୁଥିଲା । ଯେଉଁମାନେ ବ୍ୟବସାୟ ବାଣିଜ୍ୟ କରୁଥିଲେ ସେମାନଙ୍କୁ ସମୁଦ୍ରରେ ବୋଇତ ବା ଜାହାଜ କରି ଯିବାକୁ ହେଉଥିଲା । କିନ୍ତୁ ଉପକୂଳ ଛାଡ଼ି ବେଶି ଦୂର ଯିବାକୁ ସେମାନଙ୍କର ସାହସ ପାଉ ନଥିଲା । କାରଣ ସମୁଦ୍ରର ଭୟଙ୍କର ରୂପ ଦେଖି ସେମାନେ ଭୟଭୀତ ହୋଇ ପଡ଼ୁଥିଲେ । ସେତେବେଳେ କୌଣସି ଦିଗ୍‌ନିର୍ଣ୍ଣୟ ଯନ୍ତ୍ର ବା ମାନଚିତ୍ର ନଥିବାରୁ ଖୋଲା ସମୁଦ୍ର ଉପରେ ସୂର୍ଯ୍ୟ ଏବଂ ନକ୍ଷତ୍ର ଦେଖି ସେମାନେ ବଡ଼ କଷ୍ଟରେ ଯାଉଥିଲେ । କୌଣସି ଉଚ୍ଚ ପର୍ବତ ଚୂଡ଼ା ବା କୂଳରେ ଥିବା ଉଚ୍ଚା ଗଛ ସେମାନଙ୍କୁ ବତୀ ଖୁଣ୍ଟର କାମ ଦେଉଥିଲା ।

ସମୁଦ୍ର ଗର୍ଭରେ ହଜାର ହଜାର ଆପଦ ବିପଦ ଛପି ରହିଛି । ସାମାନ୍ୟ ପବନରେ ଚଉଡ଼ା ମୋଟାପେଟିଆ ବୋଇତ ଢେଉ ଦେହରେ ପିଟି ହୋଇ ଦୋହଲି ଯାଉଥିଲା । ବୋଇତର ବଡ଼ ବଡ଼ ପାଲଗୁଡ଼ିକ ସମ୍ଭାଳିବା ମଧ୍ୟ ଥିଲା କାଠିକର ପାଠ । ପବନ ମଧ୍ୟ ମଣିଷକୁ ମାନୁ ନଥିଲା ଏବଂ ବୋଇତଗୁଡ଼ିକୁ କାଠ ଟୁକୁରା ଭଳି ଢେଉରେ ନଚେଇ ନଚେଇ ଖେଳୁଥିଲା ।

ଶେଷରେ କୌଣସିମତେ ବୋଇତଟି ଯାଇ ଲଗୁଥିଲା କୂଳରେ । ଶାନ୍ତ କ୍ଲାନ୍ତ ନାବିକମାନେ ବୋଇତକୁ ଟାଣିଟାଣି କୂଳର ମାଟିକୁ ଆଣୁଥିଲେ । ତା'ପରେ ଶୁଖିଲା ମାଟି ଉପରେ ବିଶ୍ରାମ ନେଉଥିଲେ । କିନ୍ତୁ ଏହି ବିଶ୍ରାମଟା ସେମାନଙ୍କ ପକ୍ଷରେ ଆନନ୍ଦକର ନଥିଲା । ସମୁଦ୍ରଠାରୁ ସେ ଅଜଣା ଦେଶଟା ଥିଲା ଆହୁରି ଭୟାବହ । ନାବିକମାନଙ୍କର ଭୟ, ନରଭକ୍ଷୀ ରାକ୍ଷସମାନେ ସେମାନଙ୍କୁ ମାଡ଼ି ବସିବେ । ଅନ୍ୟାନ୍ୟ ନାବିକମାନଙ୍କଠାରୁ ସେମାନେ ଅସଭ୍ୟ ମଣିଷଙ୍କ ସଂପର୍କରେ ଏହିଭଳି ଗପ ଶୁଣିଥାନ୍ତି । ଯେକୌଣସି ନୂଆ ଜନ୍ତୁଟିଏ ଦେଖିଲେ ସେମାନେ ଭୟାକୁଳ ହୋଇ ତାକୁ ଦୈତ୍ୟ ଦାନବ ବୋଲି ଭାବୁଥିଲେ । ତେଣୁ ସେମାନେ ସ୍ଥଳ ଭାଗର ବେଶି ଅଭ୍ୟନ୍ତରକୁ ଯିବାକୁ ସାହସ କରୁ ନଥିଲେ ।

ତା ସତ୍ତ୍ୱେ ପ୍ରତ୍ୟେକଟି ସମୁଦ୍ର ଯାତ୍ରା ମଣିଷ ମନର ଦିଗରେଖାକୁ ପ୍ରସାରିତ କରିଛି, ତା ଆଖିରେ ଅଜଣା ପୃଥିବୀର ସୀମା ବଢ଼ି ଯାଇଛି ଏବଂ ରୂପକଥାରେ ଥିବା ଦେଶମାନଙ୍କର ସୀମାରେଖା ଆହୁରି ଆହୁରି ପଛକୁ ଅପସରି ଯାଇଛି । ସବୁଠାରୁ ଦୁଃସାହସୀ ନାବିକମାନେ ସମୁଦ୍ରର ସୀମା ପର୍ଯ୍ୟନ୍ତ ଯାଉଥିଲେ, ତା'ପରେ ପଡ଼ୁଥିଲା ମହାସାଗର । ମହାସାଗରର ଶେଷ ଅଛି ବୋଲି ତା'ର କଳ୍ପନା ପାଉ ନଥିଲା, ସେ ଭାବୁଥିଲା ବିଶ୍ୱ ବ୍ରହ୍ମାଣ୍ଡ ଭଳି ସେଟା ମଧ୍ୟ ସୀମାହୀନ । ସେମାନେ ସମୁଦ୍ର ଯାତ୍ରାରୁ ଫେରି ଆସି ବନ୍ଧୁବାନ୍ଧବଙ୍କୁ କହୁଥିଲେ, ସେମାନେ ପୃଥିବୀର ଶେଷ ପ୍ରାନ୍ତକୁ ଯାଇଥିଲେ ଏବଂ ପୃଥିବୀର ସମସ୍ତ ସ୍ଥଳ ଭାଗ ବିରାଟ ମହାସାଗର ଦ୍ୱାରା ଘେରି ଆଡ଼ୁ ବେଢ଼ି ହୋଇ ରହିଛି ।

ଏହାର ହଜାର ହଜାର ବର୍ଷ ପରେ ଲୋକେ ୟୁରୋପରୁ ଭାରତ, ଚୀନରୁ ୟୁରୋପକୁ ଯାଇଥିଲେ । ମହାସାଗର ପାରିହୋଇ ନାବିକମାନେ ଆର ପାରିରେ ସ୍ଥଳ ଭାଗ ଏବଂ ସେଥିରେ ଲୋକେ ବାସ କରୁଛନ୍ତି ବୋଲି ଜାଣିଲେ ।

ତଥାପି, ରୂପକଥାର ସେହିସବୁ ରୂପକଳ୍ପର ପ୍ରଭାବ ପୃଥିବୀର ବିଜ୍ଞାନ ଉପରେ ଆହୁରି ବହୁକାଳ ପର୍ଯ୍ୟନ୍ତ ରହିଥିଲା ।

ଆମେରିକା ଆବିଷ୍କାରକ କ୍ରିଷ୍ଟୋଫର କଲମ୍ବସ୍ ଆନ୍ତରିକ ଭାବେ ବିଶ୍ୱାସ କରୁଥିଲେ ଯେ, ପୃଥିବୀର କୌଣସି ପ୍ରାନ୍ତରେ ଏକ ବିରାଟ ଉଚ୍ଚ ପର୍ବତ ଅଛି ଏବଂ ତା'ରି ଚୂଡ଼ାରେ ସ୍ୱର୍ଗରାଜ୍ୟ ଅବସ୍ଥିତ । ସେ ସ୍ପେନ୍‌ର ରାଣୀଙ୍କୁ ଚିଠି ଲେଖି ଜଣାଇଥିଲେ, ସେଇ ସ୍ୱର୍ଗରାଜ୍ୟର ଅତି ନିକଟକୁ ଯାଇ ତା'ର ପାର୍ଶ୍ୱବର୍ତ୍ତୀ ଅଞ୍ଚଳକୁ ଆବିଷ୍କାର କରିବାକୁ ତାଙ୍କର ଇଚ୍ଛା ଅଛି ।

ଏପରିକି ୧୯ଶ ଶତାବ୍ଦୀରେ ରୁଷିଆର ୟୁରୋପୀୟ ଅଂଶରେ ବାସ କରୁଥିବା ଲୋକଙ୍କର ଦୃଢ଼ ବିଶ୍ୱାସ ଥିଲା, ୟୁରାଲ ପର୍ବତର ଆର ପାରିରେ ରହୁଥିବା ଲୋକେ

ଶୀତ କାଳଟା ସାରା ଭାଲୁ ପରି ଶୋଇକି ରହନ୍ତି । ଏକ ପୁରାତନ ହସ୍ତଲିପି ମଧ୍ୟ ଆମର ହସ୍ତଗତ ହୋଇଛି, ତା'ର ନାମ ହେଉଛି "ପୂର୍ବାଞ୍ଚଳର ଅଜଣା ଲୋକ" । ସେଥିରେ ଏଭଳିସବୁ ଲୋକଙ୍କ କଥା ବିଶଦ ଭାବେ ବର୍ଣ୍ଣିତ ହୋଇଛି, ଯେଉଁମାନଙ୍କର ମୁହଁ ମୁଣ୍ଡ ଉପରେ ଥାଏ ଏବଂ ଆଉ କେତେକଙ୍କର ମୁଣ୍ଡ ନଥାଏ । ଆଖିଗୁଡ଼ାକ ଛାତି ଉପରେ ।

ଏସବୁ ଶୁଣିଲେ ବା ପଢ଼ିଲେ ଆମକୁ ବଡ଼ ହାସ୍ୟକର ମନେ ହୁଏ । କିନ୍ତୁ ଏବେବି ଲେଖକମାନେ ବୈଜ୍ଞାନିକ କଳ୍ପ କାହାଣୀ ଲେଖିଲା ବେଳେ ଭୟଙ୍କର ରାକ୍ଷସ ରହୁଥିବା ମହାକାଶର ଅଜ୍ଞାତ ଜଗତ ସଂପର୍କରେ ବର୍ଣ୍ଣନା କରିଥାନ୍ତି ।

ପୃଥିବୀ ପୃଷ୍ଠ ସଂପର୍କରେ ଏବେ ବ୍ୟାପକ ଭାବେ ଅନୁଧ୍ୟାନ କରାଗଲାଣି ଏବଂ ଜାଣି ହେଲାଣି । ଏହିସବୁ ଲେଖକମାନେ ସେମାନଙ୍କ ପୁସ୍ତକର ଚରିତ୍ରଗୁଡ଼ିକୁ ପୃଥିବୀର ଅଭ୍ୟନ୍ତରକୁ ଏବଂ ଗ୍ରହଗ୍ରହାନ୍ତରକୁ ପଠାଉଛନ୍ତି ।

## ପ୍ରଥମ ଗାୟକ ।

ପ୍ରତିଟି ଶତାବ୍ଦୀ ବିତି ଗଲିବା ସଙ୍ଗେ ସଙ୍ଗେ ମଣିଷ ଜୀବନ ଆଉ ଜଗତର ରହସ୍ୟ ଏବଂ ଅଜ୍ଞାତ କାରଣଗୁଡ଼ିକୁ ଅଧିକରୁ ଅଧିକ ଜାଣି ପାରିଲା । କାରିଗରମାନେ କ୍ରମେ ନିଜର ଶକ୍ତି ଉପରେ ଅଧିକ ଆସ୍ଥାବାନ ହେଲେ ଏବଂ ଦେବତାମାନଙ୍କୁ କମ୍ ପ୍ରାର୍ଥନା କଲେ । ସୂର୍ଯ୍ୟୋଦୟ ସାଥେ ସାଥେ କୁହୁଡ଼ିର ପରଦା ଉଠିଗଲା ଭଳି ମଣିଷ ଜୀବନରୁ ଯାଦୁବିଦ୍ୟା ଏବଂ ମନ୍ତ୍ରତନ୍ତ୍ରର ପ୍ରଭାବ କଟିବାକୁ ଲାଗିଲା ।

ମଣିଷର ବିଭିନ୍ନ ଆଗ୍ରହ ପରମ୍ପରା, ପୂଜା ପାଠ, ନାଚ ଗୀତ ଉପରେ ଜାଦୁବିଦ୍ୟାର ଏକ ବିରାଟ ପ୍ରଭାବ ଥିଲା । କିନ୍ତୁ ମଣିଷର କ୍ରମଜାଗ୍ରତ ମନ ସେସବୁକୁ ନିଜ ଘରୁ ତଡ଼ିବା ସାଙ୍ଗେ ସାଙ୍ଗେ ସେସବୁଥିରୁ ମଧ୍ୟ ହଟେଇ ଦେଲା ।

ଯାଦୁକରୀ ମନ୍ତ୍ରତନ୍ତ୍ର, ନାଚ ଗୀତରୁ ଯାଦୁର ଅଂଶ ତକ ଶୀଘ୍ର ଉଭେଇ ଗଲା । ରହିଗଲା କେବଳ ସାଧାରଣ ଗୀତ ଏବଂ ନୃତ୍ୟ ।

ଗ୍ରୀସ୍‌ର ଲୋକ ଫଳ ଦେବତା ଡିଓନିସସ୍‌ଙ୍କର ପୂଜା ଉତ୍ସବ ଏବଂ ଖେଳ କସରତର ଆୟୋଜନ କରୁଥିଲେ । ସେମାନଙ୍କର ବିଶ୍ୱାସ ଥିଲା ଡିଓନିସସ୍ ତାଙ୍କୁ ଅଙ୍ଗୁର ଦାନ କରନ୍ତି । ଏହିସବୁ ନାଚ ଗୀତ ଖେଳ କସରତ ପ୍ରଥମେ ଥିଲା ପବିତ୍ର ଆଉ ଯାଦୁକରୀ । ସେସବୁ ମାଧ୍ୟମରେ ଗ୍ରୀକ୍ ଲୋକେ ଡିଓନିସସ୍‌ଙ୍କ ମୃତ୍ୟୁ ଏବଂ ପୁନର୍ଜନ୍ମ ଲାଭ ଏବଂ ଶୀତକାଳ ପରେ ସେ କିପରି ଆଉ ଥରେ ପୃଥିବୀକୁ ଫଳ

ଫୁଲରେ ସଜ୍ଜିତ କରି ଲୋକଙ୍କୁ ଶସ୍ୟ, ଫଳ ଏବଂ ମଦ୍ୟ ଦାନ କରାନ୍ତି ଆଦି ପ୍ରଦର୍ଶନ କରୁଥିଲେ ।

ଏହି ଭୋଜି ଉତ୍ସବ ବେଳେ ମୂକ ଅଭିନେତାମାନେ ଜୀବଜନ୍ତୁଙ୍କ ମୁଖା ପିନ୍ଧି ଗାଁର ମନ୍ଦିର ଘୂରି ପାଖରେ ନାଚୁଥିଲେ ।

ପ୍ରଥମେ ଜଣେ ଲୋକ ଡିଓନିସସ୍‌ଙ୍କ ଦୁଃଖ କାହାଣୀ ଗୀତ ଆକାରରେ ଗାଇ ଘୂଲେ ଏବଂ ଅନ୍ୟମାନେ ତା ସହିତ ଦୋହା ଦିଅନ୍ତି ।

ପୁରାକାଳର ସେଇ ସମ୍ମୋହନ କ୍ରୀଡ଼ା ଅନେକାଂଶରେ ଥିଲା ସାଧାରଣ ଖେଳ କୌତୁକ ଭଳି । ଏଥିରେ ଆମେ ଭବିଷ୍ୟତର ମୂକାଭିନେତା ଏବଂ ପ୍ରଥମ ଗାୟକମାନଙ୍କୁ ଦେଖିବାକୁ ପାଉଥାଏଁ । ଏହି ପ୍ରଥମ ଗାୟକ କେବଳ ଦେବଦେବୀଙ୍କର ଦୁଃଖ ବର୍ଣ୍ଣନା କରୁ ନଥିଲେ, ସେସବୁକୁ ଅଙ୍ଗଭଙ୍ଗି କରି ପ୍ରକାଶ କରୁଥିଲେ । ଆକାଶକୁ ହାତ ବଢ଼େଇ ଅନୁନୟ ବିନୟ କରେ ଏବଂ ଛାତିକୁ ପିଟେ ।

ଦେବତାଙ୍କ ପୁନର୍ଜନ୍ମ ପରେ ଶୋକାତୁରମାନେ ଆନନ୍ଦରେ ଉଲ୍ଲସିତ ହୋଇ ଉଠିଥିଲେ, ପରସ୍ପରକୁ ଥଟ୍ଟା ତାମସା କରି ଚିହାଇବାକୁ ଲାଗିଲେ ।

ଏହାର ବହୁ ଶତାବ୍ଦୀ ପରେ ଏହିସବୁ ଯାଦୁକରୀ କାଣ୍ଡରୁ ଯାଦୁର ସମସ୍ତ ପ୍ରଭାବ କୁଆଡ଼େ ଉଭେଇ ଗଲା ।

କିନ୍ତୁ ସେସବୁ କ୍ରିୟାକଳାପ ରହିଗଲା । ପୂର୍ବ ପରି ଲୋକେ ଖେଳିଲେ, ଗୀତ ଗାଇଲେ ଏବଂ ନାଚିଲେ । ସେମାନେ ଦେବତାମାନଙ୍କର ଦୁଃଖ ଯାତନାକୁ ପ୍ରଦର୍ଶନ କରିବା ପରିବର୍ତ୍ତେ, ମଣିଷର ଦୁଃଖ ଯାତନାକୁ ପ୍ରଦର୍ଶନ କଲେ । ସେମାନଙ୍କର ସେହିସବୁ ଅଭିନୟ ଦେଖି ଦର୍ଶକମାନେ ହସିଲେ, କାନ୍ଦିଲେ, ସାହସ ଏବଂ ଦୁଃସାହସୀ କାର୍ଯ୍ୟକୁ ପ୍ରଶଂସା କରିବା ସଙ୍ଗେ ସଙ୍ଗେ ନିର୍ବୋଧତା ଆଉ କୁକର୍ମକୁ ବ୍ୟଙ୍ଗ ବିଦ୍ରୂପ କଲେ ।

ଏହି ଭାବେ ପୁରାକାଳର ସେଇ ମିଳିତ କଣ୍ଠଶିଳ୍ପୀ ପରିଣତ ହେଲା ବିୟୋଗାନ୍ତକ ଶିଳ୍ପୀରେ, ଆନନ୍ଦୋତ୍‌ଫୁଲ୍ଲ ମୂକାଭିନେତାମାନେ ହାସ୍ୟରସ ଅଭିନେତା, ଜୋକର ଏବଂ ପ୍ଲିସେଲସ୍‌ରେ ।

ପ୍ରଥମ ଗାୟକ ଜଣକ ଖାଲି ପ୍ରଧାନ ଅଭିନେତା ନଥିଲେ । ସେ ଥିଲେ ବାସ୍ତବରେ ପ୍ରଥମ ଗାୟକ । ଗୀତ ଆରମ୍ଭରେ ସେ ଅନ୍ୟମାନଙ୍କ ସହିତ ମିଳିତ ଭାବେ ଗାଉଥିଲେ । କିନ୍ତୁ ପରେ, କ୍ରମଶଃ ସେ ଏକା ଏକା ଗାଇଲେ ।

ସମୟ ଆସିଲା, ଯେତେବେଳେ ପୂଜା ପାଠଠାରୁ ସଂଗୀତ ଅଲଗା ହୋଇଗଲା । ଗାୟକ ପବିତ୍ର କ୍ରୀଡ଼ା ବେଳେ କୁଳପତି ଏବଂ ତାଙ୍କ ଯୋଦ୍ଧାମାନଙ୍କ ଆସନ ପାଖରେ ଛିଡ଼ା ହୋଇ ଗାଉଥିଲା । ଗୀତ ଗାଇବା ସଙ୍ଗେ ସଙ୍ଗେ ସେ ତାଙ୍କର ବେହେଲା

ବଜାଉଥିଲେ ବେଳେ ବେଳେ ନାଚୁଥିଲେ, ପ୍ରାଚୀନ ପ୍ରଥା ଅନୁଯାୟୀ ଶବ୍ଦ, ଗୀତ ଏବଂ ଅଭିନୟକୁ ମିଳେଇକି । ସେ ଉଭୟ ପ୍ରଥମ ଗାୟକ ହିସାବରେ ଏବଂ ତା'ପରେ ମିଳିତ ସଂଗୀତରେ ଗାଉଥିଲେ ।

କିନ୍ତୁ, ତାଙ୍କ ଗୀତର ବିଷୟ ବସ୍ତୁ କ'ଣ ଥିଲା ? ସେ ଦେବଦେବୀ, ବୀର ପୁରୁଷ ଏବଂ ତା କୁଳର ମୁଖିଆଙ୍କ ଜୟଗାନ କରୁଥିଲେ । ଯୁଦ୍ଧରେ ନିହିତ ହୋଇଥିବା ବୀର ଏବଂ ଯେଉଁସବୁ ଭାଇମାନଙ୍କ ମୃତ୍ୟୁର ପ୍ରତିଶୋଧ ନେବାକୁ ହେବ ସେମାନଙ୍କ ବୀରତ୍ୱର କାହାଣୀ ଗାଉଥିଲେ ।

ଏସବୁ ଗାନ ଠିକ୍ ସ୍ତବ ସ୍ତୁତି ନୁହେଁ କି ମନ୍ତ୍ରତନ୍ତ୍ର ନୁହେଁ । ମଣିଷର ବୀରତ୍ୱର ଗାଥା ଗାଇ ଅନ୍ୟକୁ ଅନୁପ୍ରାଣିତ କରିବା ଥିଲା ଏହି ଗୀତର ଉଦ୍ଦେଶ୍ୟ ।

ତାହେଲେ, ପ୍ରେମ, ବସନ୍ତ ଏବଂ ବିଷାଦ ସଂଗୀତ ଆସିଲା କେଉଁଠୁ ? ସେସବୁ ଗାନ ଦିନେ ବିବାହ ଉତ୍ସବ, ଶବସତ୍କାର, ଫସଲ କଟା ବା ଅଙ୍ଗୁର ତୋଳା ବେଳେ ଅନୁଷ୍ଠିତ ଉତ୍ସବ ବା କ୍ରିୟାନୁଷ୍ଠାନର ଅଂଶ ବିଶେଷ ଥିଲା । ତା'ପରେ ଦୁଇ ଦଳରେ ବିଭକ୍ତ ହୋଇ ଲୋକେ ମିଳିତ କଣ୍ଠରେ ଗାଇଲେ, ଦଳେ ଗୀତ ମାଧ୍ୟମରେ ପ୍ରଶ୍ନ କଲେ, ଆଉ ଦଳେ ଗୀତ ମାଧ୍ୟମରେ ତା'ର ଉତ୍ତର ଦେଲେ ।

ଚରଖାରେ ସୂତା ବୁଣିଲା ବେଳେ କିଶୋରୀମାନେ ସେସବୁ ଗୀତକୁ ମନେ ପକାଇ ଗାଉଥିଲେ, ମା ଶିଶୁକୁ ଖୁଆଇଲା ବେଳେ ସେସବୁକୁ ଗାଇ ଶୁଣାଉଥିଲା ।

ଆଜିକାଲି ବସନ୍ତ-ସଂଗୀତ ବସନ୍ତ କାଳରେ ବା ପ୍ରେମ ସଂଗୀତ କେବଳ ବିବାହ ସମୟରେ ବୋଲା ଯାଏ ନାହିଁ ।

କିଏ ତେବେ ସେସବୁ ବୀରତ୍ୱ ଆଉ ପ୍ରେମର ଗୀତ ରଚନା କରିଥିଲା ?

ସେ କଥା ଆମେ କହି ପାରିବା ନାହିଁ । ପ୍ରଥମ ଖଣ୍ଡା ଏବଂ ପ୍ରଥମ ଚରଖାଟି କିଏ ତିଆରି କରିଥିଲା ଆମେ କ'ଣ କହି ପାରିବା ? ଏସବୁ ଜଣେ ଜଣେ ଲୋକର ସୃଷ୍ଟି ନୁହେଁ । ଶହ ଶହ ବଂଶଧର ଆମର ସେଇସବୁ ହତିଆର, ଗୀତ ଏବଂ ଶବ୍ଦରାଜିକୁ ତିଆରି କରିଥିଲେ । ଗାୟକ ଯେଉଁ ଗୀତ ଗାଉଥିଲା, ତାକୁ ସେ ନିଜେ ରଚନା କରି ନଥିଲା । ସେ ଯାହା ଶୁଣିଥିଲା ଅନ୍ୟଠାରୁ ତାକୁ ସେ ଅନ୍ୟମାନଙ୍କୁ ଶୁଣାଉଥିଲା । ଏହି ଭାବେ ସେସବୁ ଗାୟକଠାରୁ ଗାୟକ ପାଖକୁ ଯାଇ ବହୁ ଗାଥାରେ ପରିଣତ ଏବଂ ପରିବର୍ତ୍ତିତ ହେଉଥିଲା । ନଦୀ ଯେପରି ନାନା ଛୋଟ ଛୋଟ ଜଳ ସ୍ରୋତର ସମଷ୍ଟି ଦ୍ୱାରା ପରିପୁଷ୍ଟ ହୁଏ ସେଇ ଭାବେ ମହାକାବ୍ୟସବୁ ପ୍ରଥମ ଗୀତଗୁଡ଼ିକରୁ ଗଢ଼ି ଉଠିଛି ।

ଆମେ କହିଥାଏଁ ହୋମର ରଚନା କରିଥିଲେ "ଇଲିୟାଡ୍" ମହାକାବ୍ୟ । କିନ୍ତୁ ସେ ହୋମର କିଏ ? ଆମେ କେବଳ ତାଙ୍କୁ ଜାଣିଛେ ଲୋକ ଗାଥା ମଧ୍ୟରୁ । ହୋମର ଯେଉଁସବୁ ବୀରମାନଙ୍କୁ ମହାନ୍ କରି ଚିତ୍ରଣ କରିଛନ୍ତି, ସେମାନେ ଯେମିତି ଲୋକ କଥାର ନାୟକ, ହୋମର ମଧ୍ୟ ତଦ୍ରୂପ ।

ସାହସୀ ବୀରମାନଙ୍କୁ ନେଇ ଯେତେବେଳେ ପ୍ରଥମ ଗୀତଗୁଡ଼ିକ ରଚିତ ହେଲା, ସେତେବେଳେ ଗାୟକ ତା'ର କୂଳ ଏବଂ ଉପଜାତି ସହିତ ନିବିଡ଼ ଭାବେ ସଂଯୁକ୍ତ ଥିଲା । ଲୋକେ ଏକାଠି ମିଶି ସବୁକିଛି କରୁଥିଲେ ଏବଂ ଗୀତସବୁର ରଚନାରେ ପୁରୁଷ ପୁରୁଷର ମିଳିତ ଉଦ୍ୟମ ନିହିତ ଥିଲା ।

କୌଣସି ଗାୟକ ନିଜକୁ କୌଣସି ଗୀତର ରଚୟିତା ବୋଲି ମନେ କରୁ ନଥିଲା । ଏପରିକି ସେ ସେଥିରେ କିଛି ବଦଳାବଦଳି ବା ତାକୁ ଉନ୍ନତ କରୁଥିଲେ ମଧ୍ୟ ତାହା ପୂର୍ବବର୍ତ୍ତୀ ବଂଶଧରଙ୍କଠାରୁ ତା ନିକଟକୁ ଆସିଥିଲା ।

କିନ୍ତୁ ସମୟ କ୍ରମେ ମଣିଷ 'ମୋର', 'ତୋର' ମଧ୍ୟରେ ପ୍ରଭେଦ ଅନୁଭବ କଲା । କୂଳ ପ୍ରଥା ଭାଙ୍ଗି ପଡ଼ିଲା ଏବଂ ପୂର୍ବର ସେ ଐକ୍ୟ ଆଉ ରହିଲା ନାହିଁ । କାରିଗରମାନେ ନିଜର ଇଚ୍ଛା ଅନୁଯାୟୀ କାମ କଲେ । ଗୋଷ୍ଠୀ ବା କୂଳର ଅନୁଗତ ଏକ ହତିଆର ବୋଲି ସେ ନିଜକୁ ମନେ କଲା ନାହିଁ ।

ଏହାର ଅନେକ ଶତାବ୍ଦୀ ପରେ ଗ୍ରୀକ୍ କବି ଥିଓଜ୍ନସ୍ ଲେଖିଥିଲେ :

"ମୋ ହାତର ଛାପ ମୁଁ ଆଙ୍କିଛି ମୋ କବିତା ପଂକ୍ତିରେ
ଏ ହେଉଛି ମୋ ସୃଷ୍ଟିର ଫଳ
କେହି ତାକୁ ଗ୍ରେରାଇ ପାରିବ ନାହିଁ
କରିବ ନି ଅଦଳବଦଳ ।
ସମସ୍ତେ କହିବେ, ଏ ହେଉଛି
ମେଗାରାର କବି ଥିଓଜ୍ନସ୍‌ର ଗାଥା ।"

ଗୋଷ୍ଠୀ ପ୍ରଥା ସମୟରେ କେହି ଏପରି ଲେଖି ପାରି ନଥାନ୍ତା ।

କ୍ରମଶଃ ମଣିଷ ଅଧିକରୁ ଅଧିକ 'ମୁଁ' ଶବ୍ଦଟିକୁ ବ୍ୟବହାର କରିବାକୁ ଲାଗିଲା । ମଣିଷ ଯେ ନିଜେ କିଛି କରୁ ନି ଆଉ କୌଣସି ଶକ୍ତି ତା ହାତରେ ସବୁ କିଛି କରାଇ ନେଉଛି – ସେ ଯୁଗ ଅତୀତ ମଧ୍ୟରେ ଅନେକ ଦିନରୁ ହଜି ଯାଇଥିଲା । ଏଠାରେ କବି ଯଦିଓ କହିଛନ୍ତି ଯେ, ବାଣୀ ଦେବୀ ତାଙ୍କୁ ଉଦ୍ଦୀପିତ କରିଛନ୍ତି, ତାଙ୍କର ଏ କବିତା ଦେବଦତ୍ତ, ତଥାପି ସେ ନିଜକୁ କେବେ ହେଲେ ବାଦ୍ ଦେଇ ନାହାନ୍ତି ।

"ଦେବତାଏ ପ୍ରତିଶ୍ରୁତି ଦେଇଛନ୍ତି
ମୋତେ କେହି ପାସୋରିବେ ନାହିଁ ।"

ଉପରୋକ୍ତ ପଂକ୍ତି ଦୁଇଟି ହେଉଛି ପ୍ରାଚୀନ ଗ୍ରୀକ୍ ନାରୀ କବି ସାଫୋଙ୍କର ରଚନା । ଏଥିରେ ଅତୀତ ଆଉ ବର୍ତ୍ତମାନର ଆଭିମୁଖ୍ୟ ସନ୍ନିଶ୍ରିତ ହୋଇଛି । ତାଙ୍କର ବିଶ୍ୱାସ, ବାଣୀ ଦେବୀ ତାଙ୍କୁ ଏହି କାବ୍ୟ ପ୍ରତିଭା ଦାନ କରିଛନ୍ତି । ଖଣି ଶ୍ରମିକ ପାହାଡ଼ ମଧ୍ୟରେ ଲୁହା ପଥର ପାଇଲା ଭଳି ସେ ନିଜେ ସେ ପ୍ରତିଭାକୁ ତାଙ୍କ ଭାଷା ମଧ୍ୟରେ ପାଇ ନାହାନ୍ତି । କିନ୍ତୁ ସେଇ ପଂକ୍ତିଗୁଡ଼ିକ ମଧ୍ୟରେ ଆମେ କବିଣୀଙ୍କର ସ୍ରଷ୍ଟା ହିସାବରେ ଗର୍ବର ପରିଚୟ ପାଇଥାଏ । ସେ ଜାଣିଥିଲେ ତାଙ୍କ ନାମ ଅମର ହୋଇ ରହିବ ।

ଏହି ଭାବରେ ମଣିଷ ବଡ଼ ହୋଇଛି । ଏବଂ ସେ ଯେତେ ଉପରକୁ ଉଠିଛି ତା'ର ଦିଗ୍‌ବଳୟ ସେତେ ପ୍ରସାରିତ ହୋଇଛି ।

ପ୍ରାଗୈତିହାସିକ ମଣିଷ ସଂପର୍କରେ ବର୍ଣ୍ଣିତ ଏହି ପୁସ୍ତକଟିକୁ ତୁମେମାନେ ଇତି ମଧ୍ୟରେ ପଢ଼ି ଦେଇଛ । ପୁସ୍ତକଟି ତୁମକୁ ନେଇ ପହଞ୍ଚାଇ ଦେଇଛି ଦାସମାଲିକାନା ପ୍ରଥାର ଆରମ୍ଭ କାଳରେ । ଏହି ପୁସ୍ତକର ଦ୍ୱିତୀୟ ଏବଂ ତୃତୀୟ ଭାଗ ଇତିମଧ୍ୟରେ ସଂକଳିତ ହୋଇ ପ୍ରକାଶ ପାଇଛି । ସେ ଦୁଇଟିରେ ତୁମେମାନେ ପଢ଼ିବାକୁ ପାଇବ ବିଶାଳ ବିଶାଳ ଦାସମାଲିକାନାଯୁକ୍ତ ଦେଶ କିପରି ଗଠିତ ହେଲା । ଦାସମାନେ ସେମାନଙ୍କ ମାଲିକମାନଙ୍କ ବିରୁଦ୍ଧରେ କିପରି ଲଢୁଥିଲେ, ଏବଂ ଶେଷକୁ ଦାସ ପ୍ରଥା ଉପରେ ପ୍ରତିଷ୍ଠିତ ସମାଜ ବ୍ୟବସ୍ଥାଟା କିପରି ଭାଙ୍ଗି ପଡ଼ିଲା ।

ଏହି ପୁସ୍ତକଗୁଡ଼ିକୁ ଲେଖିବା ପୂର୍ବରୁ ଆମକୁ ଅନେକ ପୁସ୍ତକ ପଢ଼ିବାକୁ ପଡ଼ିଥିଲା ।

ପୃଥିବୀରେ ଜୀବଜନ୍ତୁମାନେ ବଦଳି ବଦଳି, ବିକାଶ ଲାଭ କରି ଶେଷରେ ମଣିଷର କିପରି ଆବିର୍ଭାବ ଘଟିଲା ସେ ସଂପର୍କରେ ଆମେ ଜାଣିବାକୁ ପାଇଥିଲୁ ଚାର୍ଲସ୍ ଡାରଉଇନ୍ ଏବଂ ତାଙ୍କର ଅନୁଗାମୀ ଭ୍ଲାଦିମିର୍ କୋଭାଲେଭ୍‌ସ୍କି ଏବଂ କ୍ଲିମେଣ୍ଟ ତିମିରିୟାଜେଭ୍‌ଙ୍କ ରଚନାବଳୀରୁ ।

ଫ୍ରେଡେରିକ୍ ଏଙ୍ଗେଲସ୍‌ଙ୍କ ପୁସ୍ତକଗୁଡ଼ିକୁ ପଢ଼ି ଆମେ ଜାଣିଲୁ ବାନରକୁ ଶ୍ରମ ମଣିଷରେ ପରିଣତ କଲା ।

ଇଭାନ୍ ପାଭ୍‌ଲଭ୍ ଆମକୁ ଶିକ୍ଷା ଦେଲେ , ପ୍ରାଗୈତିହାସିକ ମଣିଷ କିପରି ଚିନ୍ତା କରିବାକୁ ଏବଂ କଥା କହିବାକୁ ଶିଖିଲା ।

କାର୍ଲ ମାର୍କସ୍, ଫ୍ରେଡେରିକ୍ ଏଙ୍ଗେଲସ୍ ଏବଂ ଭ୍ଲାଦିମିର୍ ଲେନିନ୍‌ଙ୍କ ରଚନାଗୁଡ଼ିକ ଆମ ଆଗରେ ମଣିଷ ସମାଜର ହଜାର ହଜାର ବର୍ଷର ବିକାଶର ମହା ସରଣୀକୁ ଉନ୍ମୋଚନ କରିଦେଲା ।

ଏହା ଛଡ଼ା ଆମକୁ ବହୁ ପ୍ରକୃତି ବିଜ୍ଞାନୀ, ଐତିହାସିକ ଏବଂ ଆବିଷ୍କାରମାନଙ୍କ ଦ୍ୱାରା ରଚିତ ପୁସ୍ତକାବଳୀ ପଢ଼ିବାକୁ ହୋଇଛି ।

ତୁମେ ଯଦି ମଣିଷଜାତିର ଇତିହାସକୁ ଆହୁରି ଅଧିକ ଜାଣିବାକୁ ଚାହୁଁଥାଅ ତେବେ ଆମ ଭଳି ତୁମକୁ କରିବାକୁ ହେବ । ଜ୍ଞାନର ସେହି ପ୍ରଥମ ଉତ୍ସଗୁଡ଼ିକୁ, ଅର୍ଥାତ୍ ପୃଥିବୀରେ ଜୀବନ ଏବଂ ମଣିଷ ସମାଜର ବିକାଶ ଧାରାକୁ ଅଧ୍ୟୟନ କରିଥିବା ବିଜ୍ଞାନୀମାନଙ୍କର ଗ୍ରନ୍ଥରାଜିକୁ ପଢ଼ିବାକୁ ହେବ ।

ଆମର ଲକ୍ଷ୍ୟ, ତୁମମାନଙ୍କୁ ବିଜ୍ଞାନର ଦ୍ୱାର ଦେଶରେ ପହଞ୍ଚାଇ ଦେବା ଏବଂ କହିବା : "ଏଥର ଭିତରକୁ ଯାଅ !"

ଇଲିନ୍

ସେଗାଲ୍

## ପାଠକମାନଙ୍କ ପ୍ରତି

ଏହି ପୁସ୍ତକ ବିଷୟରେ ଆପଣମାନଙ୍କର ମତାମତ ଏବଂ ପ୍ରସ୍ତାବ ଜଣାଇଲେ "ରାଦୁଗା" ପ୍ରକାଶନ ବାଧିତ ହେବ । ଆମର ଆଶା ଅଛି ଯେ, ଆପଣଙ୍କ ମାତୃଭାଷାରେ ପ୍ରକାଶିତ ରୁଷ୍ ଏବଂ ସୋଭିଏତ୍ ସାହିତ୍ୟ ଜରିଆରେ ଆମର ଜନଗଣଙ୍କର ସଂସ୍କୃତି ଏବଂ ଜୀବନଧାରା ବିଷୟରେ ଆପଣମାନେ ଗଭୀର ପରିଚୟ ପାଇ ପାରିବେ ।

ଆମର ଠିକଣା – "ରାଦୁଗା" ପ୍ରକାଶନ, ୧୭, ଜୁବଭ୍‌ସ୍କି ବୁଲ୍‌ଭାର, ମସ୍କୋ, ସୋଭିଏତ୍ ୟୁନିଅନ୍ ।

ଭୂତୋକର ଚତୁର୍ଥ ସ୍ତରାୟୁ
ପରବର୍ତ୍ତୀ କାଳ




ହୋମୋ (ମନୁଷ୍ୟ) ଇରେକ୍ଟସ | ପ୍ରାରମ୍ଭିକ ସାପିଏନସ୍ ମଣିଷ | ସୋଲୋ ନଦୀ କୂଳର ମଣିଷ | ରୋଡେସିଆ ମଣିଷ | ନିଆଣ୍ଡେର ଥାଲ୍ ମଣିଷ | କ୍ରୋ-ମାଗ୍ନନର ଲୋକେ, ଉପର ଗୁହା ଏବଂ ବସ୍କୋପ୍ | ଆଧୁନିକ ମଣିଷ : ହୋମୋ ସାପିଏନସ୍

"ଦି ୟୁନେସ୍କୋ କରିଏର" ପତ୍ରିକା, ୧୯୭୨, ଅଗଷ୍ଟ-ସେପ୍ଟେମ୍ବର ସଂଖ୍ୟା, ଆର କାଲିଗେରଙ୍କ ଦ୍ୱାରା ଅଙ୍କିତ ।

